# ଜଙ୍ଗଲ, ପରିବେଶ ଓ ମାନବ ଜୀବନ



ଶ୍ରୀ ବିଜୟ କେତନ ପଟ୍ଟନାୟକ

# ଜଙ୍ଗଲ, ପରିବେଶ
# ଓ
# ମାନବ ଜୀବନ

ଶ୍ରୀ ବିଜୟ କେତନ ପଟ୍ଟନାୟକ, ଆଇ.ଏଫ୍.ଏସ୍.
ମୁଖ୍ୟ ବନ ସଂରକ୍ଷକ, ଓଡ଼ିଶା

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ଡି.ଟି.ପି. : ଗ୍ରାଫ୍ ଏନ୍ ଗ୍ରାଫିକ୍ସ, ଓଡ଼ିଆ ବଜାର, କଟକ

ମୁଦ୍ରଣ : ତପନ କୁମାର ମହାପାତ୍ର
ଅପ୍ରତିମା ଅଫ୍‌ସେଟ୍ ପ୍ରିଣ୍ଟର୍ସ
ଶ୍ରୀନିବାସ, ସୂତାହାଟ, କଟକ -୧

ପ୍ରଥମ ସଂସ୍କରଣ : ଏପ୍ରିଲ୍, ୨୦୦୦

ମୂଲ୍ୟ : ଟ ୬୦.୦୦
ସାଦା ବନ୍ଧେଇ ଟ ୫୦.୦୦

# ସୂଚୀପତ୍ର

# ଓଡ଼ିଶାର ଅରଣ୍ୟ ସମ୍ପଦ

ଭାରତ ଉପ-ମହାଦେଶର ପୂର୍ବ ଉପକୂଳରେ ଅବସ୍ଥିତ ଓଡ଼ିଶା ତା'ର ସ୍ୱତନ୍ତ୍ର ଭୌଗୋଳିକ ଅବସ୍ଥିତି, ପ୍ରାକୃତିକ ପରିବେଷ୍ଟନୀ, ଦିଗନ୍ତବିସ୍ତାରୀ ପାହାଡ଼, ପର୍ବତ, ଉପତ୍ୟକା, ନଦୀ, ନାଳ, ଅବବାହିକା ଏବଂ ୪୮୦ କିଲୋମିଟର ପରିବ୍ୟାପ୍ତ ସମୁଦ୍ର ଉପକୂଳ ଯୋଗୁଁ ବିବିଧ ବର୍ଣ୍ଣାଢ଼୍ୟ ତଥା ଆକର୍ଷଣୀୟ ଅରଣ୍ୟ ସଂପଦରେ ପରିପୂର୍ଣ୍ଣ । ପୂର୍ବଘାଟ ପର୍ବତମାଳା ଦକ୍ଷିଣରୁ ଉତ୍ତରକୁ ବିସ୍ତାରିତ ହୋଇ ବିହାରର ଛୋଟନାଗପୁର ମାଳ ଅଞ୍ଚଳରେ ମିଶିଯାଇଛି । ଏହି ପ୍ରାକୃତିକ ବିବିଧତା, ଓଡ଼ିଶାର ଅରଣ୍ୟରେ ଥିବା ଉଦ୍ଭିଦ ତଥା ପ୍ରାଣୀ ସମ୍ପଦକୁ ସମୃଦ୍ଧ କରିଛି । ଅରଣ୍ୟ ସଂପଦରେ ପରିପୂର୍ଣ୍ଣ ଓଡ଼ିଶା, ଦେଶର ଅନ୍ୟତମ ପ୍ରଦେଶ । ଆୟତନ ଦୃଷ୍ଟିରୁ ସମଗ୍ର ଦେଶର ଶତକଡ଼ା ୭.୪୧ ଭାଗ ଜଙ୍ଗଲ ଆମ ରାଜ୍ୟରେ ଅବସ୍ଥିତ ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରୂପେ ଘୋଷିତ ହୋଇଥିଲା । କିନ୍ତୁ ଦେଶ ସ୍ୱାଧୀନ ହେବାର ପରବର୍ଷ ୧୯୪୮ ମସିହାରେ ୨୫ଟି ଗଡ଼ଜାତ ରାଜ୍ୟର ମିଶ୍ରଣ ହେଲା ପରେହିଁ, ଓଡ଼ିଶାରେ ଜଙ୍ଗଲର ଆୟତନ ଆଶାତୀତ ବୃଦ୍ଧି ପାଇଲା । କେବଳ ସଂରକ୍ଷିତ ଜଙ୍ଗଲ ଓ ଚିହ୍ନଟ ହୋଇଥିବା ରକ୍ଷିତ ଜଙ୍ଗଲର ଆୟତନ ୭,୪୪୩ ବର୍ଗ କିଲୋମିଟରରୁ ୨୬,୩୩୨ ବର୍ଗ କିଲୋମିଟରକୁ ବୃଦ୍ଧି ପାଇଲା । ପରେ ପରେ ୧୯୫୨ ମସିହାରେ ଜମିଦାରୀ ପ୍ରଥା ଉଚ୍ଛେଦ ହେବା ପରେ ଅଞ୍ଚଳ ଶାସନାଧୀନରେ ଥିବା ଅଧିକରୁ ଅଧିକ ଜଙ୍ଗଲ ୧୯୫୭-୫୮ ମସିହାରେ ରାଜ୍ୟ ଜଙ୍ଗଲ ବିଭାଗ ନିୟନ୍ତ୍ରଣକୁ ଆସିଲା । ଏହି ଉପାୟରେ ଆସିଥିବା ପୂର୍ବ ଜମିଦାରୀ ଜଙ୍ଗଲର ଆୟତନ ପ୍ରାୟ ୨୦,୦୦୦ ବର୍ଗ କିଲୋମିଟର ହେବ । ଏହିପରି ଭାବେ ଗଡ଼ଜାତ ଜଙ୍ଗଲ, ଜମିଦାରୀ ଜଙ୍ଗଲକୁ ମିଶାଇ ଷଷ୍ଠ ଦଶକରେ ଆମ ରାଜ୍ୟରେ ଥିବା ଜଙ୍ଗଲର ଆୟତନ ୬୭,୪୬୧ ବର୍ଗ କିଲୋମିଟର ଥିଲା । ଯାହାକି ରାଜ୍ୟର ମୋଟ ଭୌଗୋଳିକ ଆୟତନର ଶତକଡ଼ା ୪୩ ଭାଗ । କିନ୍ତୁ ବିଗତ ଦଶକରେ ରାଜ୍ୟ ବନ ବିଭାଗ ରେକର୍ଡ଼ରେ ଜଙ୍ଗଲର ପରିମାଣ ୫୭,୧୮୪ ବର୍ଗ କିଲୋମିଟର; ଅର୍ଥାତ୍ ଭୌଗୋଳିକ ଆୟତନର ଶତକଡ଼ା ୩୬.୭୩ ଭାଗ ଦର୍ଶାଯାଇଛି । ତନ୍ମଧ୍ୟରୁ :

ସଂରକ୍ଷିତ ଜଙ୍ଗଲ (Reserve Forest) = ୨୭,୦୮୭ ବର୍ଗ କି.ମି.

ରକ୍ଷିତ ଜଙ୍ଗଲ (Protected Forest) :

(କ) ଚିହ୍ନଟ ହୋଇଥିବା ରକ୍ଷିତ ଜଙ୍ଗଲ = ୧୬,୧୧୩ ବର୍ଗ କି.ମି.

(ଖ) ଚିହ୍ନଟ ହୋଇ ନ ଥିବା ରକ୍ଷିତ ଜଙ୍ଗଲ = ୧୩,୯୬୭ ବର୍ଗ କି.ମି.

ଅନ୍ୟାନ୍ୟ ଜଙ୍ଗଲ (Unclassed Forest) = ୧୭ ବର୍ଗ କି.ମି.

ମୋଟ ଜଙ୍ଗଲ = ୫୭,୧୮୪ ବର୍ଗ କି.ମି.

ଭାରତୀୟ ଜଙ୍ଗଲ ସର୍ବେକ୍ଷଣ ବିଭାଗ, ସାଟେଲାଇଟ୍ ଫଟୋଚିତ୍ର ଅନୁଶୀଳନରୁ ପ୍ରତି ଦୁଇ ବର୍ଷ ବ୍ୟବଧାନରେ ବିଭିନ୍ନ ରାଜ୍ୟର ଜଙ୍ଗଲର ଆୟତନ ସଂପର୍କରେ ତଥ୍ୟ ପ୍ରକାଶ କରି ଆସୁଛନ୍ତି । ୧୯୯୭ ମସିହାରେ ପ୍ରକାଶିତ ସର୍ବଶେଷ ସର୍ଭେ ରିପୋର୍ଟ ମୁତାବକ ସଂପ୍ରତି ଆମ ରାଜ୍ୟରେ ୪୬,୯୪୧ ବର୍ଗ କିଲୋମିଟର ଅଞ୍ଚଳରେ ଜଙ୍ଗଲ ରହିଛି । ତନ୍ମଧ୍ୟରୁ :

ଘଞ୍ଚ ଜଙ୍ଗଲ (ଶତକଡ଼ା ୪୦ ଭାଗରୁ ଅଧିକ ସାନ୍ଦ୍ରତା) – ୨୬,୧୦୧ ବର୍ଗ କି.ମି.

ଖୋଲା ଜଙ୍ଗଲ (ଶତକଡ଼ା ୧୦ ରୁ ୪୦ ଭାଗ ସାନ୍ଦ୍ରତା) – ୨୦,୬୨୯ ବର୍ଗ କି.ମି.

ଲୁଣା ଜଙ୍ଗଲ – ୨୧୧ ବର୍ଗ କି.ମି.

ମୋଟ ଜଙ୍ଗଲର ଆୟତନ – ୪୬,୯୪୧ ବର୍ଗ କି.ମି.

ଭାରତରେ ସମଗ୍ର ଭୂଭାଗର ଶତକଡ଼ା ୧୯.୨୭ ଭାଗ ଜଙ୍ଗଲରେ ଆଚ୍ଛାଦିତ ଥିଲାବେଳେ, ଓଡ଼ିଶାରେ ଏହାର ପରିମାଣ ୩୦.୧ ଭାଗ । କେବଳ ଉତ୍ତର-ପୂର୍ବାଞ୍ଚଳ ରାଜ୍ୟ ଯଥା ଅରୁଣାଚଳ ପ୍ରଦେଶ, ନାଗାଲାଣ୍ଡ, ମିଜୋରାମ, ମେଘାଳୟ, ମଣିପୁର, ତ୍ରିପୁରା ପ୍ରଭୃତିକୁ ଛାଡ଼ିଦେଲେ, ଅରଣ୍ୟ ସଂପଦ ଦୃଷ୍ଟିରୁ ଓଡ଼ିଶା ଅନ୍ୟମାନଙ୍କ ଅପେକ୍ଷା ଅଧିକ ବିତ୍ତଶାଳୀ । ଓଡ଼ିଶା ଦିନେ ଆପଣାର ନିରନ୍ଧ୍ର, ନିବୁଜ ଓ ଘଞ୍ଚ ଜଙ୍ଗଲପାଇଁ ପ୍ରସିଦ୍ଧ ଥିଲା । ଏବେ ଘଞ୍ଚ ଜଙ୍ଗଲର ଆୟତନ ମାତ୍ର ଶତକଡ଼ା ୧୬ରୁ ୧୭ ଭାଗ । ଭାରତୀୟ ସର୍ବେକ୍ଷଣ ସଂସ୍ଥାଦ୍ୱାରା ପ୍ରକାଶିତ ଏହି ରିପୋର୍ଟରୁ ରାଜ୍ୟର କେଉଁ ଜିଲ୍ଲାରେ କେତେ ପରିମାଣରେ ଘଞ୍ଚ ଜଙ୍ଗଲ ବା ଖୋଲା ଜଙ୍ଗଲ ରହିଛି ଏବଂ ୧୯୯୫ ସର୍ଭେ ରିପୋର୍ଟ ତୁଳନାରେ ଏହା ବୃଦ୍ଧି ପାଇଛି ବା ହ୍ରାସ ପାଇଛି, ତା'ର ଏକ ତଥ୍ୟଭିତ୍ତିକ ଅନୁଶୀଳନ ପାଇଁ ସାରଣୀ-୧ ଦ୍ରଷ୍ଟବ୍ୟ ।

୧୯୯୫ ମସିହାର ସର୍ଭେ ରିପୋର୍ଟ ସହ ୧୯୯୭ ରିପୋର୍ଟକୁ ତୁଳନା କଲେ ଜଣାଯାଏ, ଦୁଇ ବର୍ଷ ଭିତରେ ୧୬୬ ବର୍ଗ କିଲୋମିଟର ପରିମିତ ଜଙ୍ଗଲ ଆମ ରାଜ୍ୟରେ ହ୍ରାସ ପାଇଛି । ଘଞ୍ଚ ଜଙ୍ଗଲର ଆୟତନ ୧,୦୬୨ ବର୍ଗ କି.ମି. କମିଯାଇଥିବା ବେଳେ, ଖୋଲା ଜଙ୍ଗଲ ଓ ଲୁଣା ଜଙ୍ଗଲର ଆୟତନ ଯଥାକ୍ରମେ ୮୮୦ ଓ ୧୬ ବର୍ଗ କି.ମି. ବଢ଼ିଛି । ଯେଉଁ ଜିଲ୍ଲାମାନଙ୍କରେ ଜଙ୍ଗଲର ଆୟତନରେ ଅବକ୍ଷୟ ଘଟିଛି ସେଗୁଡ଼ିକ ହେଲା– ମୟୂରଭଞ୍ଜ, କେଉଁଝର, ମାଲ୍‌କାନଗିରି ଓ କୋରାପୁଟ । ସଂପ୍ରତି ଆୟତନ ଦୃଷ୍ଟିରୁ ଫୁଲବାଣୀ ଜିଲ୍ଲା ଓ ତା' ତଳକୁ ଗଜପତି ଜିଲ୍ଲାରେ ଅଧିକ ଜଙ୍ଗଲ ରହିଛି । ବିଗତ କିଛିବର୍ଷଧରି କ୍ରମାଗତ ଭାବେ ଆଦିବାସୀ ଅଧ୍ୟୁଷିତ ଜିଲ୍ଲାମାନଙ୍କରେ ଜଙ୍ଗଲର ଆୟତନ ଯେପରି ବିପଜ୍ଜନକ ଭାବେ ହ୍ରାସ ପାଇ ଚାଲିଛି, ତାହା ନିଶ୍ଚିତ ଭାବେ ଉଦ୍‌ବେଗଜନକ ।

ଓଡ଼ିଶାର ଅରଣ୍ୟ ମୁଖ୍ୟତଃ କ୍ରାନ୍ତୀୟ ବା ଗ୍ରୀଷ୍ମମଣ୍ଡଳୀୟ । ଉଦ୍ଭିଦ ଜଗତର ସ୍ଥିତି ଓ ପ୍ରକୃତିକୁ ଲକ୍ଷ୍ୟ ରଖି ଆମର ଅରଣ୍ୟ ସଂପଦକୁ ମୁଖ୍ୟତଃ ଚାରୋଟି ଉପବିଭାଗରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ହେଉଛି :

(୧) କିଞ୍ଚିତ୍ ଚିରହରିତ୍ ଅରଣ୍ୟ

(୨) ଆର୍ଦ୍ର ପତ୍ରଝଡ଼ା ଜଙ୍ଗଲ

(୩) ଶୁଷ୍କ ପତ୍ରଝଡ଼ା ଜଙ୍ଗଲ

(୪) ସନ୍ତସନ୍ତିଆ କୁଆରିଆ ଜଙ୍ଗଲ ବା ଲୁଣା ଜଙ୍ଗଲ

ଏଥିମଧ୍ୟରୁ ସନ୍ତସନ୍ତିଆ କୁଆରିଆ ଜଙ୍ଗଲ ବା ଲୁଣା ଜଙ୍ଗଲ ଯାହାକି ହେନ୍ତାଳ ବନ ନାମରେ ପରିଚିତ, ତାହା ଅନ୍ୟ ତିନି ପ୍ରକାର ଜଙ୍ଗଲଠାରୁ ସଂପୂର୍ଣ୍ଣ ଭିନ୍ନ । କାରଣ ଅନ୍ୟ ତିନି ଜାତୀୟ ଜଙ୍ଗଲରେ ପ୍ରଧାନ ବା ମୁଖ୍ୟ ଗଛ ଓ ତା'ର ସହଯୋଗୀ ଗଛ ପ୍ରାୟ ଏକା ପ୍ରକାରର । ରାଜ୍ୟରେ ଥିବା ଜଙ୍ଗଲର ମୁଖ୍ୟ ଭାଗ ବା ଅଧିକାଂଶ ଶୁଷ୍କ ପତ୍ରଝଡ଼ା ଜଙ୍ଗଲ । ତା' ପଛକୁ ଆର୍ଦ୍ର ପତ୍ରଝଡ଼ା ଜଙ୍ଗଲ । ଚିରହରିତ୍ ଅରଣ୍ୟ ଓ ସନ୍ତସନ୍ତିଆ କୁଆରିଆ ଜଙ୍ଗଲର ପରିମାଣ, ଉପରୋକ୍ତ ଦୁଇ ପ୍ରକାରର ଜଙ୍ଗଲ ତୁଳନାରେ ଯଥେଷ୍ଟ କମ୍ ।

ଓଡ଼ିଶାର ଜଙ୍ଗଲରୁ ମିଳୁଥିବା କାଷ୍ଠ ସମ୍ପଦର ମୁଖ୍ୟ ଆକର୍ଷଣ ହେଉଛି ଶାଳଗଛ । ଶତକଡ଼ା ୩୩ ଭାଗରୁ ଅଧିକ ଜଙ୍ଗଲରେ ଶାଳହିଁ ମୁଖ୍ୟ ଓ ପ୍ରଧାନ ଗଛ । କେବଳ ଉପକୂଳବର୍ତ୍ତୀ ଅଞ୍ଚଳ ଓ ଲୁଣା, ସନ୍ତସନ୍ତିଆ ଅଞ୍ଚଳକୁ ଛାଡ଼ିଦେଲେ ଅନ୍ୟ ସବୁ ଜଙ୍ଗଲରେ ଊଣା ଅଧିକେ ଶାଳ ଗଛ ଦେଖିବାକୁ ମିଳେ । ଆମ ଜଙ୍ଗଲର ଅନ୍ୟ ମୂଲ୍ୟବାନ୍ ଗଛଗୁଡ଼ିକ ହେଲା – ପିଆଶାଳ, ବାନ୍ଧଣ, ଅସନ, କୁରୁମ, ଶିଶୁ, କସି, କେନ୍ଦୁ, ହଳଦୁ, ଧଉଡ଼ା ଓ ଜଗଡ଼ା । ଓଡ଼ିଶାର ଅରଣ୍ୟରେ ମିଳୁଥିବା ଅନ୍ୟତମ ଗଛ ହେଉଛି ଶାଗୁଆନ । ଦକ୍ଷିଣ ଓଡ଼ିଶାରେ ଅର୍ଥାତ୍ ମାଲ୍‌କାନଗିରି, ଝରିଗାଁ, ଉମରକୋଟ (ନବରଙ୍ଗପୁର), ଖଡ଼ିଆଳ (ନୂଆପଡ଼ା) ଓ ବଲାଙ୍ଗୀର ଅଞ୍ଚଳରେ ସାଗୁଆନ ଜଙ୍ଗଲ ଆପେ ଆପେ ଅର୍ଥାତ୍ ପ୍ରାକୃତିକ ଉପାୟରେ ସୃଷ୍ଟି ହୋଇଥାଏ । ଦକ୍ଷିଣ ଓଡ଼ିଶାହିଁ ବାସ୍ତବରେ ଭାରତୀୟ ଜଙ୍ଗଲରେ ଦେଖିବାକୁ ମିଳୁଥିବା ଦୁଇଟି ପ୍ରଧାନ ଗଛ ଶାଳ ଓ ସାଗୁଆନର ମିଳନ ସ୍ଥଳ । ଦକ୍ଷିଣ ଭାରତରେ ଶାଳ ଗଛ ଦେଖିବାକୁ ମିଳେନାହିଁ । ସେହିପରି ଏହାର ଉତ୍ତରକୁ ମଧ୍ୟ ପ୍ରାକୃତିକ ସାଗୁଆନ ଜଙ୍ଗଲ ଦେଖାଯାଏନାହିଁ । ଯଦିଓ ଏକାଧିକ ସୁବିସ୍ତୃତ ସାଗୁଆନ ପ୍ଲାଣ୍ଟେସନ୍ ହିମାଳୟର ପାଦଦେଶଯାଏଁ ଦେଖିବାକୁ ମିଳେ ।

ଲଘୁ ବନଜାତ ଦ୍ରବ୍ୟରେ ପରିଗଣିତ ବାଉଁଶ ମଧ୍ୟ ଓଡ଼ିଶାର ଜଙ୍ଗଲରେ ପ୍ରଚୁର ପରିମାଣରେ ମିଳିଥାଏ । ଅପେକ୍ଷାକୃତ ଶୁଷ୍କ ଅଞ୍ଚଳରେ ଶାଳିଆ ଓ ସୁନ୍ଦରକଣି ବାଉଁଶ ମିଳୁଥିବା ବେଳେ, ଆର୍ଦ୍ର ପତ୍ରଝଡ଼ା ଜଙ୍ଗଲରେ ବା ସ୍ୱଳ୍ପ ଚିରହରିତ୍ ଜାତୀୟ ଅରଣ୍ୟରେ ଭାବା ବାଉଁଶ ମିଳେ । ବିଶେଷକରି ଜଙ୍ଗଲରେ ଶାଳ ଓ ସାଗୁଆନ ଗଛ ସହ ସହଯୋଗୀ ଗଛ ଭାବେ ବାଉଁଶ ଦେଖିବାକୁ ମିଳେ । ଉପକୂଳବର୍ତ୍ତୀ ଅଞ୍ଚଳରେ ଝାଉଁ ଜଙ୍ଗଲ ବହୁଳ ଭାବେ ଦେଖାଯାଏ । ଜାଳେଣି ହିସାବରେ ବ୍ୟବହୃତ ହେଉଥିବା ଏହି ଗଛଟି ଆଠ ଦଶ ବର୍ଷ ଭିତରେ ଅମଳକ୍ଷମ ହେଉଥିବାରୁ ଯଥେଷ୍ଟ ଲାଭଦାୟକ ହୋଇଥାଏ । ଉପକୂଳବର୍ତ୍ତୀ ଅଞ୍ଚଳର ଚାଷୀମାନେ ପ୍ରାୟତଃ ବାଲିଆ ଜମିରେ ଝାଉଁ ଗଛ ଚାଷ କରିଥା'ନ୍ତି । ଏହି ପ୍ରକାର ଜଙ୍ଗଲରେ ଦେଖିବାକୁ ମିଳୁଥିବା ଅନ୍ୟ ଗଛ ହେଲା କରଞ୍ଜ ଓ ପୋଲାଙ୍ଗ । ଏହି ଗଛର ମଞ୍ଜିରୁ ତୈଳ ନିଷ୍କାସନ କରାଯାଇଥାଏ । ଜଙ୍ଗଲ ବିଭାଗ ତରଫରୁ ସଂକଳନ କରାଯାଇଥିବା ଏକ ରିପୋର୍ଟରୁ ଜଣାପଡ଼େ ଆମ ରାଜ୍ୟର ଅରଣ୍ୟରେ ୧୬,୯୪୩ ବର୍ଗ କି.ମି. ପରିମିତ ଶାଳ ଜଙ୍ଗଲ ରହିଛି । ୨,୦୩୦ ବର୍ଗ କି.ମି. ଅଞ୍ଚଳରେ ସାଗୁଆନ ଜଙ୍ଗଲ, ୨୧,୦୨୪ ବର୍ଗ କି.ମି. ଅଞ୍ଚଳରେ ମିଶ୍ରିତ ଜଙ୍ଗଲ ରହିଛି । ଶାଳ ଓ ସାଗୁଆନ

## ସାରଣୀ - ୧

| କ୍ର. ନମ୍ବର | ଜିଲ୍ଲାର ନାମ | ଭୌଗୋଳିକ ଆୟତନ (ବର୍ଗ କି.ମି.) | ଘଞ୍ଚ ଜଙ୍ଗଲର ଆୟତନ (ବର୍ଗ କି.ମି.) | ଖୋଲା ଜଙ୍ଗଲର ଆୟତନ (ବର୍ଗ କି.ମି.) |
|---|---|---|---|---|
| ୧ | ୨ | ୩ | ୪ | ୫ |
| ୧ | ଅନୁଗୁଳ | ୬,୨୩୨ | ୧,୬୨୦ | ୮୯୧ |
| ୨ | ଢେଙ୍କାନାଳ | ୪,୫୯୫ | ୬୪୮ | ୪୩୩ |
| ୩ | ବାଲେଶ୍ୱର | ୩,୬୩୪ | ୧୭୫ | ୧୨୮ |
| ୪ | ଭଦ୍ରକ | ୨,୬୭୭ | - | - |
| ୫ | ବଲାଙ୍ଗୀର | ୬,୫୬୯ | ୪୧୩ | ୪୫୨ |
| ୬ | ସୋନପୁର | ୨,୩୪୪ | ୧୬୦ | ୧୬୦ |
| ୭ | ସମ୍ବଲପୁର | ୬,୬୯୮ | ୨,୨୦୨ | ୯୭୦ |
| ୮ | ବରଗଡ଼ | ୫,୮୩୪ | ୪୮୦ | ୪୪୪ |
| ୯ | ଦେଓଗଡ଼ | ୪,୫୯୫ | ୬୪୮ | ୪୩୩ |
| ୧୦ | ବୌଦ୍ଧ | ୩,୪୪୪ | ୮୯୨ | ୪୧୭ |
| ୧୧ | ଫୁଲବାଣୀ | ୭,୬୫୦ | ୨,୪୦୩ | ୨,୭୧୪ |
| ୧୨ | କଟକ | ୩,୭୩୩ | ୩୭୨ | ୧୮୩ |
| ୧୩ | ଜଗତସିଂହପୁର | ୧,୯୭୩ | - | ୧୮ |
| ୧୪ | ଯାଜପୁର | ୨,୨୦୦ | ୧୨୪ | ୧୫୮ |
| ୧୫ | କେନ୍ଦ୍ରାପଡ଼ା | ୨,୫୪୮ | - | ୧୪ |
| ୧୬ | ଗଞ୍ଜାମ | ୮,୭୦୬ | ୧,୨୧୫ | ୯୪୫ |
| ୧୭ | ଗଜପତି | ୩,୮୫୦ | ୬୭୯ | ୧,୭୭୧ |
| ୧୮ | ଝାରସୁଗୁଡ଼ା | ୨,୨୦୦ | ୧୨୪ | ୧୫୮ |
| ୧୯ | ସୁନ୍ଦରଗଡ଼ | ୯,୭୧୨ | ୨,୬୩୪ | ୧,୩୭୭ |
| ୨୦ | କଳାହାଣ୍ଡି | ୮,୩୬୪ | ୧,୦୦୦ | ୯୧୯ |
| ୨୧ | ନୂଆପଡ଼ା | ୩,୪୦୮ | ୫୯୨ | ୫୫୧ |
| ୨୨ | କେନ୍ଦୁଝର | ୮,୩୦୩ | ୧,୭୩୯ | ୧,୮୦୪ |
| ୨୩ | ଖୋର୍ଦ୍ଧା | ୨,୮୮୯ | ୧୩୭ | ୧୮୪ |
| ୨୪ | ପୁରୀ | ୩,୦୫୧ | ୫୮ | ୫୮ |
| ୨୫ | ନୟାଗଡ଼ | ୪,୨୪୨ | ୧,୦୩୧ | ୬୦୯ |
| ୨୬ | ମୟୂରଭଞ୍ଜ | ୧୦,୪୧୮ | ୩,୨୭୩ | ୬୧୫ |
| ୨୭ | କୋରାପୁଟ | ୭,୮୯୭ | ୫୦୪ | ୮୪୦ |
| ୨୮ | ନବରଙ୍ଗପୁର | ୫,୨୯୪ | ୮୧୩ | ୪୧୦ |
| ୨୯ | ରାୟଗଡ଼ା | ୭,୫୮୦ | ୯୭୨ | ୧,୭୨୯ |
| ୩୦ | ମାଲକାନଗିରି | ୬,୧୯୦ | ୧,୦୧୯ | ୧,୨୬୬ |
| | | ୧,୫୫,୭୦୭ | ୨୬,୧୦୧ | ୨୦,୬୨୯ |

| ଲୁଣା ଜଙ୍ଗଲ (ବର୍ଗ କି.ମି.) | ମୋଟ ଜଙ୍ଗଲର ଆୟତନ (ବର୍ଗ କି.ମି.) | ୧୯୯୫ ସର୍ଭେ ରିପୋର୍ଟ ସହ ତୁଳନା (ବଢ଼ିଛି +, କମିଛି -) | ଭୌଗୋଳିକ ଆୟତନର ଅନୁପାତ (%) |
|---|---|---|---|
| ୬ | ୭ | ୮ | ୯ |
| - | ୨,୫୧୧ | +୬୯ | ୪୦.୩ |
| - | ୧,୦୮୧ | +୨୯ | ୨୩.୫ |
| ୩ | ୩୦୬ | - | ୮.୪ |
| ୧୭ | ୧୭ | -୦୨ | ୦.୬ |
| - | ୮୬୫ | +୪୬ | ୧୩.୨ |
| - | ୩୨୦ | +୧୨ | ୧୩.୭ |
| - | ୩,୧୭୧ | -୦୮ | ୪୭.୪ |
| - | ୯୨୪ | +୧୦ | ୧୫.୯ |
| - | ୧,୦୮୧ | +୨୯ | ୨୩.୫ |
| - | ୧,୩୦୯ | +୦୧ | ୩୮.୦ |
| - | ୫,୧୧୭ | +୧୨୮ | ୬୬.୮ |
| - | ୫୫୫ | +୧୫ | ୧୪.୯ |
| ୧୦ | ୨୮ | -୦୩ | ୧.୪ |
| - | ୨୮୨ | -୦୨ | ୧୨.୮ |
| ୧୮୧ | ୧୯୫ | -୦୩ | ୭.୭ |
| - | ୨,୧୬୦ | -୦୪ | ୨୪.୮ |
| - | ୨,୪୫୦ | +୦୨ | ୬୩.୬ |
| - | ୨୮୨ | -୦୨ | ୧୨.୮ |
| - | ୪,୦୧୧ | -୦୨ | ୪୧.୩ |
| - | ୧,୯୧୯ | -୦୫ | ୨୨.୯ |
| - | ୧,୧୪୩ | -୦୨ | ୩୩.୫ |
| - | ୩,୫୪୩ | -୧୪୮ | ୪୨.୭ |
| - | ୩୧୭ | +୨୩ | ୧୧.୦ |
| - | ୧୧୬ | -୦୬ | ୩.୮ |
| - | ୧,୬୪୦ | +୩୭ | ୩୮.୭ |
| - | ୩,୮୫୨ | -୨୦୬ | ୩୭.୦ |
| - | ୧,୩୪୪ | -୫୧ | ୧୭.୦ |
| - | ୧,୨୨୩ | -୨୧ | ୨୩.୧ |
| - | ୨,୭୦୧ | +୧୩ | ୩୫.୬ |
| - | ୨,୨୮୫ | -୯୪ | ୩୬.୯ |
| ୨୧୧ | ୪୬,୯୪୧ | -୧୬୬ | ୩୦.୧ |

ଗଛ ସହ ମିଶି ରହିଥିବା ଜଙ୍ଗଲର ଆୟତନ ପ୍ରାୟ ୧୬,୬୯୪ ବର୍ଗ କି.ମି. । ବିଗତ କିଛି ବର୍ଷ ହେଲା ରାଜ୍ୟର ବାଉଁଶ ଉତ୍ପାଦନ ପ୍ରାୟ ୨ ଲକ୍ଷରୁ ୨ ଲକ୍ଷ ୪୦ ହଜାର ସେଲ୍ ୟୁନିଟ୍‌ରେ (୧ ସେଲ୍ ୟୁନିଟ୍ = ୨୪୦୦ ମିଟର ଲମ୍ବ ଶାଳିଆ ବାଉଁଶ) ସ୍ଥିର ରହିଛି ।

ରାଜ୍ୟରେ ଜଙ୍ଗଲ ସମ୍ପଦର ଦ୍ରୁତ ଅବକ୍ଷୟକୁ ଲକ୍ଷ୍ୟରଖି, ରାଜ୍ୟ ସରକାର ୧୯୯୮ ମସିହାରେ ପ୍ରାକ୍ତନ ବଲାଙ୍ଗୀର, କଳାହାଣ୍ଡି ଓ ଫୁଲବାଣୀ ଭଳି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାମାନଙ୍କରେ ବ୍ୟବସାୟିକ ଭିତ୍ତିରେ କାଠକଟା ବନ୍ଦପାଇଁ ନିର୍ଦ୍ଦେଶ ଦେଇଥିଲେ । ପରେ ପରେ ୧୯୯୦ ମସିହାରେ ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ମଧ୍ୟ ବ୍ୟବସାୟିକ ଭିତ୍ତିରେ କାଠ ଅମଳ ବନ୍ଦ କରାଗଲା । ପୁନଶ୍ଚ ଜଙ୍ଗଲ ସଂରକ୍ଷଣ ଉଦ୍ଦେଶ୍ୟରେ ୧୯୯୨ ମସିହାରେ ସାରା ଓଡ଼ିଶାରେ କଞ୍ଚା ବା ଠିଆ ହୋଇଥିବା ଗଛ କାଟିବା ନିଷିଦ୍ଧ କରିଦିଆଗଲା । କେବଳ ବନ୍ୟା, ବାତ୍ୟା ତଥା ପ୍ରାକୃତିକ ବିପର୍ଯ୍ୟୟରେ ଉପୁଡ଼ିପଡ଼ିଥିବା ଏବଂ ଧରାପଡୁଥିବା ଚୋରା କାଠ ଅମଳ କରାଯାଇ ଓଡ଼ିଶା ବନ ଉନ୍ନୟନ ନିଗମ ଜରିଆରେ ବିକ୍ରି କରାଯାଉଛି । ତେଣୁ ରାଜ୍ୟରେ କଞ୍ଚାକାଠ ଉତ୍ପାଦନ ଓ କାଠ ତଥା ଜାଳେଣିକାଠରୁ ମିଳୁଥିବା ରାଜସ୍ୱ ବର୍ଷକୁ ବର୍ଷ କମିଯାଉଛି । ଏକଦା ରାଜ୍ୟରେ କାଠ ଉତ୍ପାଦନ ୧ ଲକ୍ଷ ଘନଫୁଟ ବା ତହିଁରୁ ଅଧିକ ହେଉଥିବାବେଳେ, ବର୍ତ୍ତମାନ ତାହା କମିଯାଇ ୨୫,୦୦୦ ରୁ ୩୦,୦୦୦ ଘନଫୁଟରେ ପହଞ୍ଚିଛି ।

ରାଜ୍ୟରେ ମିଳୁଥିବା ଅଣକାଷ୍ଠ ଜାତୀୟ ପଦାର୍ଥ ବା ଲଘୁ ବନଜାତ ଦ୍ରବ୍ୟ ମଧ୍ୟରେ କେନ୍ଦୁପତ୍ର ଅନ୍ୟତମ । ଓଡ଼ିଶା ବ୍ୟତୀତ ମଧ୍ୟପ୍ରଦେଶ, ବିହାର, ମହାରାଷ୍ଟ୍ର, ଆନ୍ଧ୍ର ଏବଂ ଗୁଜୁରାଟରେ ମଧ୍ୟ କିଛି ପରିମାଣରେ କେନ୍ଦୁପତ୍ର ଉତ୍ପାଦିତ ହୋଇଥାଏ । ସାରା ଭାରତରେ କେନ୍ଦୁପତ୍ର ଉତ୍ପାଦନର ପରିମାଣ ୩୦ ଲକ୍ଷ କ୍ୱିଣ୍ଟାଲ୍ ହୋଇଥିଲା ବେଳେ କେବଳ ଓଡ଼ିଶାରେ ଏହି ପତ୍ର ୪.୫ ଲକ୍ଷ କ୍ୱିଣ୍ଟାଲ୍‌ରୁ ୫ ଲକ୍ଷ କ୍ୱିଣ୍ଟାଲ୍ ପର୍ଯ୍ୟନ୍ତ ଉତ୍ପାଦିତ ହୋଇଥାଏ । ଅର୍ଥାତ୍ ଦେଶର ମୋଟ ଉତ୍ପାଦନର ୧୬,୧୭ ଭାଗ ଆମ ରାଜ୍ୟରୁହିଁ ମିଳିଥାଏ । ବଲାଙ୍ଗୀର, ସମ୍ବଲପୁର, ସୁନ୍ଦରଗଡ଼ ଆଦି ପଶ୍ଚିମାଞ୍ଚଳ ଜିଲ୍ଲାମାନଙ୍କରୁ ମିଳୁଥିବା କେନ୍ଦୁପତ୍ରର ମାନ ଯଥେଷ୍ଟ ଅଧିକ । ଏଥିରୁ ଅଧିକାଂଶ ଶ୍ରୀଲଙ୍କା ଓ ପାକିସ୍ତାନକୁ ରପ୍ତାନୀ ହୋଇଥାଏ । ୧୯୭୨ ମସିହାରେ କେନ୍ଦୁପତ୍ର ଜାତୀୟକରଣ ହେଲା ପରଠାରୁ, ରାଜ୍ୟ ରାଜସ୍ୱର ଏକ ବଡ଼ ଅଂଶ ଏହି କେନ୍ଦୁପତ୍ର କାରବାରରୁ ହିଁ ମିଳିଥାଏ । କେନ୍ଦୁପତ୍ର ଜାତୀୟକରଣର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ପତ୍ର ତୋଳାଳିମାନଙ୍କୁ ଉଚିତ ପାରିଶ୍ରମିକ ଦେବା ଓ ସରକାରଙ୍କ ରାଜସ୍ୱ ବୃଦ୍ଧି ଘଟାଇବା ।

ଜଙ୍ଗଲ ଆମର ଜାତୀୟ ସଂପତ୍ତି । ଏହା ଏକ ଖୋଲା ଗନ୍ତାଘର ବା ମୁକ୍ତ ରାଜକୋଷ କହିଲେ ଅତ୍ୟୁକ୍ତି ହେବ ନାହିଁ । ପରିବେଶ ସୁରକ୍ଷା, ଜଳ ସଂରକ୍ଷଣ, ଜୀବଜନ୍ତୁଙ୍କୁ ଆଶ୍ରୟସ୍ଥଳୀ ପ୍ରଦାନ ଆଦି ସିଧାସଳଖ ଆର୍ଥିକ ଦୃଷ୍ଟିକୋଣରୁ ହିସାବ ହୋଇପାରୁନଥିବା କେତେକ ଉପକାରକୁ ଛାଡ଼ିଦେଲେ, କାଠଗଣ୍ଡି, ଜାଳକାଠ, ବାଉଁଶ, କେନ୍ଦୁପତ୍ର, ଶାଳମଞ୍ଜି, ମହୁଲ, ଝୁଣା, ମହୁ ଆଦି ଅନ୍ୟାନ୍ୟ ଅନେକ ଲଘୁ ବନଜାତ ଦ୍ରବ୍ୟ ଆମର ଅରଣ୍ୟରୁ ଯଥେଷ୍ଟ ପରିମାଣରେ ଉତ୍ପାଦିତ ହୋଇଥାଏ । ରାଜ୍ୟ ରାଜକୋଷକୁ ଏକ ବଡ଼ଧରଣର ରାଜସ୍ୱ ଜଙ୍ଗଲରୁ ପ୍ରତିବର୍ଷ ମିଳିଥାଏ । ୧୯୯୨ ମସିହା ପରଠାରୁ ଜଙ୍ଗଲରୁ କଞ୍ଚା ଗଛ କାଟିବା ସମଗ୍ର ରାଜ୍ୟରେ ନିଷିଦ୍ଧ ହୋଇଥିବା

ପରିପ୍ରେକ୍ଷୀରେ କାଠ ଓ ଜାଳକାଠ ବିକ୍ରୟରୁ ରାଜସ୍ୱ କମିଯାଇଥିବା ବେଳେ, ଜାତୀୟକରଣ ହୋଇଥିବା କେନ୍ଦୁପତ୍ର ଓ ବାଉଁଶ ଆଦି ବିକ୍ରୟରୁ ଅଧିକ ରାଜସ୍ୱ ଆଦାୟ ହେଉଛି ।

ବିଗତ ବର୍ଷମାନଙ୍କରେ ଜଙ୍ଗଲ ସମ୍ପଦ ବିକ୍ରୟରୁ ରାଜ୍ୟକୁ ମିଳିଥିବା ରାଜସ୍ୱର ଏକ ପରିସଂଖ୍ୟାନ ତଳେ ଦିଆଗଲା ।

ଚଳିତ ୧୯୯୮-୯୯ ଆର୍ଥିକ ବର୍ଷରେ ଜଙ୍ଗଲ ସମ୍ପଦରୁ ୧୧୫ କୋଟି ଟଙ୍କା ରାଜସ୍ୱ ମିଳିବାର ଅଟକଳ ଧାର୍ଯ୍ୟ କରାଯାଇଛି ।

**ସାରଣୀ – ୨**

| ରାଜସ୍ୱ ବର୍ଷ | ରାଜସ୍ୱ ଆଦାୟର ପରିମାଣ (କୋଟି) | | | | |
|---|---|---|---|---|---|
| | କାଷ୍ଠ ଓ ଜାଳକାଠ | ବାଉଁଶ | କେନ୍ଦୁପତ୍ର | ଅନ୍ୟାନ୍ୟ | ମୋଟ ରାଜସ୍ୱ |
| ୧୯୯୦-୯୧ | ୨୧.୧୦ | ୬.୩୨ | ୭୬.୮୫ | ୪.୭୮ | ୧୦୯.୦୫ |
| ୧୯୯୧-୯୨ | ୧୮.୧୫ | ୭.୦ | ୫୧.୫୭ | ୮.୦ | ୮୪.୭୨ |
| ୧୯୯୨-୯୩ | ୧୦.୪୦ | ୧୦.୦ | ୭୮.୨୬ | ୫.୩୪ | ୧୦୪.୦୦ |
| ୧୯୯୩-୯୪ | ୮.୩୩ | ୯.୬୫ | ୭୫.୩୫ | ୫.୯୭ | ୯୯.୩୦ |
| ୧୯୯୪-୯୫ | ୧୭.୩୯ | ୮.୯୧ | ୮୪.୧୬ | ୮.୨୧ | ୧୧୮.୬୭ |
| ୧୯୯୫-୯୬ | ୯.୮୦ | ୧୦.୦୬ | ୪୩.୫୮ | ୩.୨୦ | ୬୬.୬୫ |
| ୧୯୯୬-୯୭ | ୧୧.୭୪ | ୮.୭୪ | ୪୭.୮୬ | ୮.୨୮ | ୭୬.୬୨ |
| ୧୯୯୭-୯୮ | | | | | |

ଅନ୍ୟ ଯେଉଁ ସବୁ ସମ୍ପଦରେ ଆମ ରାଜ୍ୟର ଅରଣ୍ୟ ସମୃଦ୍ଧ, ସେଗୁଡ଼ିକ ହେଲା– ଔଷଧୀୟ ବୃକ୍ଷ, ଅର୍କିଡ୍ ଏବଂ ସର୍ବୋପରି ଆକର୍ଷଣୀୟ ବନ୍ୟପ୍ରାଣୀ ସମ୍ପଦ । ଓଡ଼ିଶାର ଅରଣ୍ୟ ସମ୍ପଦ ବିଷୟରେ ଆଲୋଚନା ଏ ସମସ୍ତ ସମ୍ପଦର ପର୍ଯ୍ୟାଲୋଚନା ବ୍ୟତୀତ ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ । ନୂତନ ଜାତୀୟ ଜଙ୍ଗଲ ନୀତିରେ ସ୍ପଷ୍ଟ କରିଦିଆଯାଇଛି କେବଳ ରାଜସ୍ୱ ଆଦାୟ ଜଙ୍ଗଲ ସମ୍ପଦ ସୁବିନିଯୋଗର ଏକମାତ୍ର ଉଦ୍ଦେଶ୍ୟ ନୁହେଁ । ଜଙ୍ଗଲ ନିକଟରେ ବସବାସ କରୁଥିବା ଜନସାଧାରଣ ତଥା ଜଙ୍ଗଲ ଉପରେ ନିର୍ଭର କରି ଚଳୁଥିବା ବନବାସୀମାନଙ୍କର ଜଙ୍ଗଲ ସମ୍ପଦ ବିନିଯୋଗ ଉପରେ ପ୍ରାଥମିକ ଅଧିକାର ରହିଛି । ବର୍ଷକୁ ବର୍ଷ କ୍ରମାଗତ ଜଙ୍ଗଲ କ୍ଷୟ ହେଉଥିବା ପରିପ୍ରେକ୍ଷୀରେ, ଏହାର ସୁରକ୍ଷା, ପରିଚାଳନା ତଥା ସୁବିନିଯୋଗ ନିମନ୍ତେ ପ୍ରତ୍ୟକ୍ଷ ଭାବେ ସ୍ଥାନୀୟ ଜନସାଧାରଣଙ୍କୁ ସଂଶ୍ଳିଷ୍ଟ କରିବାପାଇଁ ବିଶେଷ ଭାବେ ପଦକ୍ଷେପ ନିଆଯାଉଛି ।



# ଜଙ୍ଗଲ ବିନା ଜୀବନ

'ଜଳ ବିନା ମୀନ' ଯେପରି 'ଜଙ୍ଗଲ ବିନା ଜୀବନ' ମଧ୍ୟ ସେପରି । ମାଛଟିକୁ ପାଣିରୁ କାଢ଼ି ବାହାରେ ରଖିଦେଲେ, କିଛି ସମୟ ଛଟପଟ ହୋଇ ମାଛ ଯେପରି ମରିଯାଏ, ସେହିପରି ଜଙ୍ଗଲ ପଦା ହୋଇଗଲେ, ବୃକ୍ଷଲତା ଶୂନ୍ୟ ନଣ୍ଡା ମରୁଭୂମିରେ ଜୀବଜଗତ ମଧ୍ୟ ସନ୍ତୁଳିତ ହୋଇ ବିଲୟ ହୋଇଯିବାର ସମ୍ଭାବନା ଅଛି । ଅତୀତରେ ଅନେକ ସଭ୍ୟତା ଏପରି ଲୋପ ପାଇଯାଇଛି । ବିଲୟ ହୋଇଥିବା ମେସୋପଟାମିଆର ସଭ୍ୟତା ଏହାର ଏକ ଦୃଷ୍ଟାନ୍ତ । ଉପରୁ ମହାକାଶଯାନରୁ ଲକ୍ଷ୍ୟକଲେ, ଆମ ପୃଥିବୀ ଏକ ନୀଳ ରଙ୍ଗର କ୍ଷୁଦ୍ର ପେଣ୍ଡୁଭଳି ପ୍ରତୀୟମାନ ହୁଏ । ଏହି ନୀଳ ରଙ୍ଗ ବର୍ଣ୍ଣ ବିଭ୍ରାନ୍ତି ନୁହେଁ । ବରଂ ଭୂପୃଷ୍ଠରେ ଏହା ଜୀବନର ସଂକେତ । ବିଶ୍ୱବ୍ରହ୍ମାଣ୍ଡର ଏକ କ୍ଷୁଦ୍ର ଅଂଶ ଆମର ଏହି ସୌରଜଗତ । ତା' ଭିତରେ କ୍ଷୁଦ୍ରାତିକ୍ଷୁଦ୍ର ଆମର ଏଇ ପୃଥିବୀ । ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଓ ସବୁଜିମାରେ ଆଚ୍ଛାଦିତ ଆମର ଏଇ ପୃଥିବୀ; ଯେଉଁଠି କେବଳ ଜୀବଜଗତ ତିଷ୍ଠି ରହିଛି । ସୌରଜଗତର ଅନ୍ୟ କେଉଁ ଗ୍ରହରେ ଏ ପର୍ଯ୍ୟନ୍ତ 'ଜୀବନ'ର ସଂକେତ ବା ସୂଚନା ମିଳିନାହିଁ ।

କଥିତଅଛି, ସଭ୍ୟତାର ସୃଷ୍ଟି ଓ ବିକାଶ ଅରଣ୍ୟରୁ ଆରମ୍ଭ ହୋଇଛି ଏବଂ ତା'ର ପରିସମାପ୍ତି ଘଟିବ ମରୁଭୂମିରେ । ଆଦିମ ମନୁଷ୍ୟ ଅରଣ୍ୟରୁ ଫଳ ମୂଳ ସଂଗ୍ରହକରି ଓ ଜୀବଜନ୍ତୁ ଶିକାରକରି ଜୀବନଧାରଣ କରୁଥିଲା । ଧୀରେ ଧୀରେ ଜଙ୍ଗଲ କାଟି ସଫାକରି ଚାଷବାସ କଲା । କ୍ରମଶଃ ପୃଥିବୀ ଓ ତା'ର ପ୍ରାକୃତିକ ସଂପଦ ଉପରେ ମନୁଷ୍ୟ ଅକଳନୀୟ ନିୟନ୍ତ୍ରଣ ହାସଲକଲା । ଯେଉଁଠି ଜଙ୍ଗଲ ଥିଲା, ତାକୁ ସଫାକରି ମନୁଷ୍ୟ ବାସଗୃହ ନିର୍ମାଣ କଲା, ଚାଷଜମି ପ୍ରସ୍ତୁତକଲା । ଜଙ୍ଗଲ କଟାଯାଇ କଳକାରଖାନା, ନଦୀବନ୍ଧ ଓ ରାସ୍ତାଘାଟ ନିର୍ମାଣ କରାଗଲା । ସବୁଜ ଜଙ୍ଗଲ ପରିବର୍ତ୍ତେ କଂକ୍ରିଟ୍ ଜଙ୍ଗଲ ଚାରିଆଡ଼େ ଗଢ଼ିଉଠିଲା ।

ଜଙ୍ଗଲ ବିନା ଜୀବନ ଦୁର୍ବିସହ । ଯେପରି ଦୁଧ, ଦହି, ଘିଅ, ମହୁ ଓ ଶାକର ଆଦି ପାଞ୍ଚଟି ଅମୃତ ମିଶି 'ପଞ୍ଚାମୃତ' ତିଆରି ହୋଇଥାଏ, ସେହିପରି ସୃଷ୍ଟିର ପାଞ୍ଚଗୋଟି ମୌଳିକ ଉପାଦାନ ଯଥା– ଜଳ, ବାୟୁ, ମାଟି, ଉଦ୍ଭିଦଜଗତ ଓ ପ୍ରାଣୀଜଗତ ମିଶି ପରିବେଶ ପଞ୍ଚାମୃତର ସୃଷ୍ଟି । ଏମାନେ ପରସ୍ପର ସହିତ ଅତି ନିବିଡ଼ଭାବେ ସଂପୃକ୍ତ ଓ ପ୍ରତ୍ୟେକଟି 'ଜୀବନ' କଡ଼ିର ଗୋଟିଏ ଗୋଟିଏ ଅଂଗ । ମୌଳିକ ଉତ୍ପାଦନକାରୀ ହିସାବରେ ବୃକ୍ଷ ତଥା ଉଦ୍ଭିଦଜଗତ ଜୀବନ ରକ୍ଷାକାରୀ ବ୍ୟବସ୍ଥାରେ ଭାରସାମ୍ୟ ଆଣିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥା'ନ୍ତି ।

ଉଦାହରଣସ୍ୱରୂପ 'ପବନ' ବା ବାୟୁକୁ ନିଆଯାଉ । ଜୀବଜଗତ ବଂଚିରହିବାପାଇଁ ବାୟୁ ଏକାନ୍ତ ଆବଶ୍ୟକ । ପ୍ରାଣୀଜଗତ ତା'ର ନିଃଶ୍ୱାସରେ ବିଶୁଦ୍ଧ ଅମ୍ଳଜାନ ଗ୍ରହଣ କରିଥାଏ ଓ ପ୍ରଶ୍ୱାସରେ ଦୂଷିତ ଅଙ୍ଗାରକାମ୍ଳ ଛାଡ଼ିଥାଏ । କଳକାରଖାନାରୁ ବାହାରୁଥିବା ଦୂଷିତ ଅଙ୍ଗାରକାମ୍ଳ ବାଷ୍ପ ମଧ୍ୟ ବାୟୁମଣ୍ଡଳକୁ ପ୍ରଦୂଷିତ କରୁଛି । ସହରାଞ୍ଚଳମାନଙ୍କରେ ଗାଡ଼ି, ମଟର, ଯାନବାହନ

ସଂଖ୍ୟା ଦିନକୁଦିନ ବଢ଼ିଚାଲିଛି । ଗାଡ଼ି ମଟରରୁ ନିଷ୍କାସିତ ଗ୍ୟାସ୍ ମଧ୍ୟ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ପରିମାଣ ଅନବରତ ବୃଦ୍ଧିକରୁଛି । ବୈଜ୍ଞାନିକମାନଙ୍କ ମତରେ, ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ପରିମାଣ କ୍ରମଶଃ ବୃଦ୍ଧିପାଉଥିବା ଲକ୍ଷ୍ୟ କରାଯାଉଛି । ଗଛଲତାର ସବୁଜ ପତ୍ର ଏହି ଦୂଷିତ ଅଙ୍ଗାରକାମ୍ଳକୁ ବ୍ୟବହାରକରି ସୂର୍ଯ୍ୟକିରଣ ସାହାଯ୍ୟରେ ଶର୍କରାଜାତୀୟ ଖାଦ୍ୟ ପ୍ରସ୍ତୁତ କରିଥାଏ ଏବଂ ପରିବର୍ତ୍ତେ ବିଶୁଦ୍ଧ ଅମ୍ଳଜାନ ବାୟୁମଣ୍ଡଳକୁ ଛାଡ଼ିଥାଏ । ଏହାବ୍ୟତୀତ ଗଛଲତାର ପତ୍ର ଆମର ଫୁସ୍‌ଫୁସ୍ ପରି ବାୟୁକୁ ଛାଣି ପରିଷ୍କାର କରିଥାଏ । କଳକାରଖାନା ଥିବା ଅଞ୍ଚଳରେ ବା ଅଧିକତର ଯାନବାହନ ଚଳାଚଳ କରୁଥିବା ରାସ୍ତା କଡ଼ରେ ବୃକ୍ଷଲତାର ସବୁଜ ବଳୟ ଘେରିରହିଥିଲେ, ବାୟୁରେ ମିଶିଥିବା ଧୂଳି ଓ ଧୂମକଣିକା ପତ୍ରରେ ଛାଣିହୋଇ ରହିଯାଏ । ଏହାହିଁ ଉଦ୍ଭିଦଜଗତର କରାମତି ।

ଜୀବନର ଅନ୍ୟ ଏକ ଉପାଦାନ 'ଜଳ' । ସେଥିପାଇଁ କୁହାଯାଏ, 'ଜଳହିଁ ଜୀବନ' । ଅତୀତରେ ଅଧିକାଂଶ ସଭ୍ୟତା ତଥା ଜନବସତି ନଦୀକୂଳରେହିଁ ଗଢ଼ିଉଠିଥିଲା । ଜଳ ଉତ୍ସକୁ କେନ୍ଦ୍ର କରି ସଭ୍ୟତାର ବିକାଶ ଘଟିଥିଲା । କିନ୍ତୁ ଦୁଃଖର କଥା, ଆମ ଦେଶରେ ମିଳୁଥିବା ପାନୀୟ ତଥା ବ୍ୟବହାର ଉପଯୋଗୀ ଜଳ ସଂପ୍ରତି ୭୦ ଭାଗ ଦୂଷିତ ହୋଇସାରିଲାଣି । ଦେଶର ପାଞ୍ଚ ବର୍ଷ ବୟସ ସୀମା ପର୍ଯ୍ୟନ୍ତ ଯେତେ ଶିଶୁ-ଅପମୃତ୍ୟୁ ଘଟୁଛି, ସେଥିରୁ ଶତକଡ଼ା ୭୦ ଭାଗ କେବଳ ଦୂଷିତ ଜଳଜନିତ ରୋଗରୁ ଘଟିଥାଏ । କଳକାରଖାନାରୁ ନିର୍ଗତ ବିଷାକ୍ତ କ୍ଲୋରିନ୍ ଓ ଅମ୍ଳଯୁକ୍ତ ଜଳ କ୍ରମାଗତ ନଦୀଜଳରେ ମିଶି ଏହାକୁ ଦୂଷିତକରୁଛି । ଏହାବ୍ୟତୀତ କୃଷିକ୍ଷେତ୍ରରେ ବ୍ୟବହୃତ ହେଉଥିବା ରାସାୟନିକ ସାର ଓ କୀଟନାଶକ ଔଷଧ ବର୍ଷାରେ ଧୋଇଯାଇ ନଦୀ, ନାଳ, ହ୍ରଦରେ ମିଶୁଛି । ଏହି କାରଣରୁ ଜଳସଂପଦର ଉପଯୁକ୍ତ ସଂରକ୍ଷଣ ତଥା ଉପଲବ୍ଧ ଜଳକୁ ପ୍ରଦୂଷଣମୁକ୍ତ ରଖିବା ନିମନ୍ତେ ବିଧିବଦ୍ଧ ପ୍ରଚେଷ୍ଟାର ଆବଶ୍ୟକତା ରହିଛି ।

ଜଳସଂପଦର ଉପଯୁକ୍ତ ପରିଚାଳନା ଓ ସୁବିନିଯୋଗ ନିମନ୍ତେ ପ୍ରଥମ ନିର୍ଭରଯୋଗ୍ୟ ପଦକ୍ଷେପ ହେଉଛି ମୃତ୍ତିକା ସଂରକ୍ଷଣ ତଥା ବନସଂପଦର ସଂରକ୍ଷଣ । ଉଦ୍ଭିଦ ବିହୀନ ଅଞ୍ଚଳରେ ବୃଷ୍ଟି ଜଳର ଅଧିକାଂଶ ଭାଗ ନଦୀନାଳ ଜରିଆରେ ସମୁଦ୍ରକୁ ଚାଲିଯାଏ । ତେଣୁ ଏହା ମନୁଷ୍ୟ ବ୍ୟବହାରରେ ଆସିପାରେନାହିଁ । କିନ୍ତୁ ଜଙ୍ଗଲ ଥିବା ଅଞ୍ଚଳରେ ବୃକ୍ଷଲତାର ଚେର ମାଟିତଳେ ବର୍ଷା ଜଳକୁ ଧାରଣ କରି ରଖେ । ଏହି ପାଣିକୁ ଆମେ ଝରଣା, କୂଅ ଓ ପୋଖରୀର ପାଣି ରୂପେ ବ୍ୟବହାର କରିବାକୁ ପାଇଥାଉ । ସେହିପରି ଉପରର ବାୟୁମଣ୍ଡଳକୁ ଆର୍ଦ୍ର କରାଇ ବର୍ଷା କରାଇବାରେ ମଧ୍ୟ ଜଙ୍ଗଲର ଅବଦାନ ରହିଛି । ଜଙ୍ଗଲ ଯେପରି ବର୍ଷା କରାଇବାରେ ସହାୟକ ହୋଇଥାଏ, ସେହିପରି ବର୍ଷାକୁ ମଧ୍ୟ ସୁନିୟନ୍ତ୍ରିତ କରିଥାଏ । କ୍ରମାଗତଭାବେ ଜଙ୍ଗଲ ଧ୍ୱଂସ ପାଇବା ଫଳରେ ମାଟିର ଜଳଧାରଣ କ୍ଷମତା କମିଯିବା ସଙ୍ଗେ ସଙ୍ଗେ ଭୂତଳ ଜଳସ୍ତର କମିବାରେ ଲାଗିଛି । ଦିନକୁଦିନ ବର୍ଷା ମଧ୍ୟ ଅନିୟମିତ ହେଉଛି । ଭାରତ ପୃଥିବୀର ଅନ୍ୟତମ ବୃଷ୍ଟିବହୁଳ ଦେଶ ହୋଇଥିଲେ ମଧ୍ୟ, ଏଠି ଅଧିକାଂଶ ଅଞ୍ଚଳରେ ଲୋକମାନେ ପାନୀୟ ଜଳ ପାଇଁ ହଟସଟ ହେଉଛନ୍ତି ।

ଜୀବନଧାରଣର ଅନ୍ୟତମ ଆବଶ୍ୟକତା ହେଉଛି ଖାଦ୍ୟ । ଖାଦ୍ୟପଦାର୍ଥ ଆମେ କୃଷି କରିଆରେ ମାଟିରୁ ପାଉଥାଉ । 'ମାଟି' ଆମର ମୌଳିକ ପୁଂଜି; ଯାହାକୁ ବିନିଯୋଗକରି ଆମେ ବର୍ଷ ପରେ ବର୍ଷ ସୁଧ ଅମଳକରି ଚାଲିଛେ । ଦେଶର କ୍ରମବର୍ଦ୍ଧିଷ୍ଣୁ ଅଗଣିତ ଜନତାଙ୍କ ମୁହଁରେ ଆହାର ଦେବାପାଇଁ ମାଟିକୁ ଶୋଷଣକରି ଖାଦ୍ୟ ଉତ୍ପାଦନ କରୁଛେ । ଆମ ଦେଶର ମାଟିର ଆୟତନ ମୋଟ ଭୂଭାଗର ୪୦ ଭାଗରୁ ଏକ ଭାଗ । କିନ୍ତୁ ଏତିକି ଜମିରେ ଆମେ ପୃଥିବୀର ଲୋକସଂଖ୍ୟାର ୧୫ ଭାଗରୁ ୧ ଭାଗ, ୭ ଭାଗରୁ ୧ ଭାଗ ଗାଈ, ଅର୍ଦ୍ଧାଧିକ ମହିଷୀ ଓ ଛେଳି ପ୍ରତିପାଳନ କରୁଛେ । ଜୀବନଧାରଣପାଇଁ ଖାଦ୍ୟ ଯୋଗାଉଥିବା ଏହି ଜମି ବା ମାଟି ଆଜି ବିଷାକ୍ତ, ପ୍ରଦୂଷିତ ଏବଂ ମୃତ୍ତିକାକ୍ଷୟ ରୋଗରେ ରୋଗାକ୍ରାନ୍ତ । ଯେଉଁ କୃଷକ ଦିନେ ମାଟିର ରକ୍ଷକ ଥିଲା, ପରିବର୍ଦ୍ଧକ ଥିଲା; ସେ ଆଜି ମାଟିକୁ ଲୁଣ୍ଠନ କରୁଛି, ଶୋଷଣ କରୁଛି । ମାଟି ସହିତ ତା'ର ସଂପର୍କ କେବଳ ଅଧିକରୁ ଅଧିକ ଉତ୍ପାଦନ କରିବା ଭିତରେହିଁ ସୀମାବଦ୍ଧ । ତାହା ଯେକୌଣସି ଉପାୟରେ ହେଉନା କାହିଁକି, ଦୀର୍ଘ ମିଆଦି ଜଳସେଚନ କରି ହେଉ, ରାସାୟନିକ ସାର ପ୍ରୟୋଗ କରି ହେଉ ଅଥବା ଟ୍ରାକ୍ଟରଦ୍ୱାରା ଗଭୀରଭାବେ ମାଟିକୁ କର୍ଷଣ କରି ହୋଇପାରେ ।

ଜଙ୍ଗଲ ଅଞ୍ଚଳରେ ଗଛ ଚେର ସାଧାରଣତଃ ମାଟିକୁ ଜାବୁଡ଼ି ଧରିଥାଏ । ବୃକ୍ଷଲତାର ଡାଳପତ୍ରଦ୍ୱାରା ବାଧାପ୍ରାପ୍ତ ହୋଇ ଭୂଇଁରେ ପଡ଼ିଲା ବେଳକୁ ବର୍ଷା ଜଳର ବେଗ ମଧ୍ୟ ଯଥେଷ୍ଟ କମିଯାଇଥାଏ । କିନ୍ତୁ ଏବେ ବହୁଳପରିମାଣରେ ଜଙ୍ଗଲ କଟାଯିବା ଫଳରେ ମାଟି ଆଉ ସୁରକ୍ଷିତ ହୋଇନାହିଁ । ସିଧାସଳଖ ବର୍ଷାଜଳ ମାଟି ଉପରେ ପଡୁଛି ଏବଂ ତଡ଼ିତ୍ ବେଗରେ ବର୍ଷା ପାଣି ଉର୍ବର ଉପରମାଟି ଧୋଇନେଇଯାଉଛି । ଭୂମି ଉପରର ଉର୍ବରମାଟି ଧୋଇବାଦ୍ୱାରା ମାଟିର ଉତ୍ପାଦିକା ଶକ୍ତି କମିଯାଉଛି ଓ ଫସଲ ମଧ୍ୟ ବିଲରେ ଆଶାନୁରୂପ ହେଉନାହିଁ । ସେହିପରି ବର୍ଷାଜଳ ଭୂଇଁ ତଳକୁ ଯାଇ ସଂଚିତ ନହେବା ଫଳରେ, ମାଟିର ଜଳଧାରଣ ଶକ୍ତି ମଧ୍ୟ ଧୀରେ ଧୀରେ କମିଯାଉଛି ଓ ମାଟି ଉପର ଅଧିକରୁ ଅଧିକ ସମୟ ଶୁଖିଲା ରହିବାରୁ କ୍ରମାଗତ ମରୁଡ଼ି ପଡୁଛି । ଏହିପରିଭାବେ ବର୍ଷକୁ ହେକ୍ଟର ପିଛା ୨୦ ଟନ୍ ଉପରମାଟି ଧୋଇଯାଏ ଓ ଏ ବାବଦରେ କୃଷି ଉତ୍ପାଦନ ବାର୍ଷିକ ଶତକଡ଼ା ୭ ଭାଗ ହ୍ରାସ ପାଉଛି । ଏକ ଇଞ୍ଚ ବହଳର ଉପରମାଟି ତିଆରି ହେବାକୁ ୪୦୦ରୁ ୫୦୦ ବର୍ଷ ସମୟ ଲାଗେ । ଅଥଚ ଜଙ୍ଗଲ ନଥିବା ଅଞ୍ଚଳରେ ଗୋଟିଏ ବର୍ଷା ଋତୁରେ ଏହା ଧୋଇ ନଷ୍ଟ ହୋଇଯାଏ । ତେଣୁ ମୃତ୍ତିକା ସଂରକ୍ଷଣ କରିବାରେ ଓ ଜମିକୁ ଅମଳକ୍ଷମ ରଖିବାରେ ଜଙ୍ଗଲର ଅବଦାନ ଅସୀମ ।

ବଞ୍ଚି ରହିବାର ତିନୋଟି ମୌଳିକ ଆବଶ୍ୟକତା; ଯଥା– ବାୟୁ, ଜଳ ଓ ଖାଦ୍ୟ, ଏ ସମସ୍ତ ପ୍ରକାରାନ୍ତରେ ଜଙ୍ଗଲ ଓ ଉଦ୍ଭିଦଜଗତଦ୍ୱାରା ନିୟନ୍ତ୍ରିତ । ତେଣୁ ପ୍ରଥମ ପର୍ଯ୍ୟାୟରେ ହିମାଳୟର ଗଡ଼ୱାଲ ଅଞ୍ଚଳରେ ଜଙ୍ଗଲ ସୁରକ୍ଷାପାଇଁ ଯେଉଁ 'ଚିପ୍‌କୋ' ଆନ୍ଦୋଳନ ମୁଣ୍ଡଟେକି ଉଠିଥିଲା, ସେମାନଙ୍କର ସ୍ଲୋଗାନ ଥିଲା –

''ଗଛ ଆମର ଜୀବନ ଧନ,
ଦିଅଇ ମାଟି, ପାଣି, ପବନ ।''

ମାଟି, ଜଳ, ବାୟୁର ମୁଖ୍ୟ ଆଧାର ଗଛ । ତେଣୁ ଜଙ୍ଗଲ ବିନା ଜୀବନ ଏକ ବିଡ଼ମ୍ବନା । କିନ୍ତୁ ଦ୍ୱିତୀୟ ମହାଯୁଦ୍ଧ ପରଠାରୁ ଆମର ଆଖିସାମନାରେ ଜଙ୍ଗଲସଂପଦ ଉଭେଇ ଯିବାରେ ଲାଗିଛି । ଷଷ୍ଠ ଦଶକରେ ଆମ ରାଜ୍ୟର ମୋଟ ଆୟତନର ଶତକଡ଼ା ୪୩ ଭାଗ ଅଞ୍ଚଳ ଜଙ୍ଗଲପରିପୂର୍ଣ୍ଣ ଥିଲା । ବର୍ତ୍ତମାନ ତାହା ଶତକଡ଼ା ୩୦ ଭାଗକୁ ହ୍ରାସ ପାଇଛି । ସେଥିରୁ ଘଞ୍ଚ ଜଙ୍ଗଲ ଅର୍ଥାତ୍ ଶତକଡ଼ା ୪୦ ଭାଗରୁ ଅଧିକ ସାନ୍ଦ୍ରତା ଥିବା ଜଙ୍ଗଲ ମାତ୍ର ଶତକଡ଼ା ୧୭ ଭାଗ । କ୍ଷୟପ୍ରାପ୍ତ ଜଙ୍ଗଲ ଭିତରୁ ପ୍ରାୟ ୧୨ ଲକ୍ଷ ହେକ୍ଟର ଜଙ୍ଗଲ ସଂପୂର୍ଣ୍ଣ ଲଣ୍ଡାହୋଇଗଲାଣି । କେତେ ଜମିରେ ଆଉ ଲତାଗୁଳ୍ମଟିଏ ଉଠୁନାହିଁ ବା ଉଠିବାକୁ ଦିଆଯାଉନାହିଁ । ଏସବୁର ପଛରେ ମୂଳକାରଣ ରହିଛି, ଅବାରିତ ଭାବରେ ଜଙ୍ଗଲରୁ ଚୋରାରେ ଗଛକଟା ଚାଲିଛି ଓ ଜାଳେଣି କାଠ ସଂଗୃହୀତ ହେଉଛି । ତା' ଛଡ଼ା ଅନେକ ଘଞ୍ଚ ଜଙ୍ଗଲକୁ ନଷ୍ଟକରି ବର୍ଦ୍ଧିତ ଜନତାଙ୍କ ମୁହଁରେ ଆହାର ଦେବାପାଇଁ ଚାଷ ଜମିରେ ପରିଣତ କରିଦିଆଯାଉଛି । 'ଜୀବନ'ର ମୂଳ ଉତ୍ସ 'ଜଙ୍ଗଲ' ଉପରେ ଆମେ ଅବିଚାରିତ ଭାବରେ କୁଠାରାଘାତ କରିଚାଲିଛେ । ଏହି ସ୍ରୋତକୁ ପ୍ରତିହତ କରିବାପାଇଁ ବ୍ୟାପକ ଓ ବହୁଳଭାବେ ବୃକ୍ଷରୋପଣ କରିବାକୁ ପଡ଼ିବ । ଜନସାଧାରଣଙ୍କର ସକ୍ରିୟ ସହଯୋଗରେ ଉଜୁଡ଼ା ଓ କ୍ଷୟପ୍ରାପ୍ତ ଜଙ୍ଗଲର ପୁନରୁଦ୍ଧାର କରିବାକୁ ପଡ଼ିବ । କାରଣ 'ଜଙ୍ଗଲ ବିନା ଜୀବନ' ଅସାର । ଦ୍ରୁତଗତିରେ ଜଙ୍ଗଲ ହାନି; ସୃଷ୍ଟି ଓ ଜୀବ ଜଗତର ସ୍ଥିତିପାଇଁ ଏକ ସତର୍କ ଘଣ୍ଟା ଧ୍ୱନି ।

□□□

# ପର୍ଯ୍ୟଟନ ମାନଚିତ୍ରରେ ଓଡ଼ିଶାର ବନସମ୍ପଦ

ଆଜିକାଲି ସାରା ବିଶ୍ୱରେ 'ପର୍ଯ୍ୟଟନ' ଏକ ବିଶେଷ ଶିଳ୍ପର ଭୂମିକା ଗ୍ରହଣ କରିଛି ଏବଂ ଏହି ଶିଳ୍ପର ଦ୍ରୁତ ବିକାଶ ନିମନ୍ତେ ବିଭିନ୍ନ ରାଷ୍ଟ୍ର ଅବିରତ ଉଦ୍ୟମ ଚଳାଇଛନ୍ତି । କୌଣସି ରାଷ୍ଟ୍ରର ପର୍ଯ୍ୟଟନ ଇତିହାସକୁ ତା'ର ଐତିହାସିକ ପୃଷ୍ଠଭୂମି, ପ୍ରାଚୀନ କାରୁକଳା, ସଂସ୍କୃତି ଓ ପୁରାତନ କୀର୍ତ୍ତି ସଂପଦ ଯେତିକି ପ୍ରଭାବିତ କରିଆସିଛି; ସେତିକି ପ୍ରଭାବିତ କରିଛି ତା'ର ପ୍ରାକୃତିକ ଶୋଭା ସଂଭାର, ବିସ୍ତୀର୍ଣ୍ଣ ଅରଣ୍ୟାନୀ ଓ ଅରଣ୍ୟରେ ଅବାଧରେ ବିଚରଣ କରୁଥିବା ମହାର୍ଘ ବନ୍ୟଜୀବନ । ଦେଶ ବିଦେଶରୁ ବହୁ ପର୍ଯ୍ୟଟକ ଭାରତକୁ ଆସନ୍ତି କେବଳ ସ୍ମୃତି ସୌଧ 'ତାଜମହଲ' ଦେଖିବାପାଇଁ ନୁହେଁ; ବରଂ ପ୍ରାକୃତିକ ପରିବେଶରେ ଭାରତର ଜାତୀୟ ପଶୁ 'ବାଘ'ର ମଦମତ୍ତ ଠାଣି ଦେଖିବାପାଇଁ ମଧ ସେମାନେ ଆଗ୍ରହୀ । ପ୍ରକୃତିର ରମଣୀୟ ପରିବେଶରେ ନିର୍ଭୟରେ ବିଚରଣ କରୁଥିବା ଜୀବଜନ୍ତୁଙ୍କୁ ଦେଖିବାର ଅନୁସନ୍ଧିତ୍ସା ଏବଂ ଦେଖା ମିଳିବା ନିମନ୍ତେ ପ୍ରତୀକ୍ଷା କରିବାରେ ଯେଉଁ ରୋମାଞ୍ଚ ଓ ଉନ୍ମାଦନା ଭରିରହିଛି, ତାହାହିଁ ବନ୍ୟଜନ୍ତୁ ପର୍ଯ୍ୟଟନକୁ ଅଧିକ ଆକର୍ଷଣୀୟ କରିଛି ।

ଓଡ଼ିଶା, ପ୍ରକୃତିର ଅପରୂପ ଶୋଭା-ଭଣ୍ଡାର । ତା'ର ସବୁଜ ପାହାଡ଼ ଓ ଉପତ୍ୟକା, ଫେନିଳ ସାଗରଶଯ୍ୟା, ସ୍ୱର୍ଣ୍ଣାଭ ବେଳାଭୂମି, ଦୋଳାୟମାନ ଶସ୍ୟକ୍ଷେତ୍ର, ନିଘଞ୍ଚ ଅରଣ୍ୟାନୀ, ଗୁରୁଗମ୍ଭୀର ଜଳପ୍ରପାତ ଓ ବିପୁଳ ବନ୍ୟଜୀବନର ପ୍ରାଚୁର୍ଯ୍ୟ ଭିତରେ ପର୍ଯ୍ୟଟକଙ୍କୁ ଆକର୍ଷଣ କରିବାର ସମସ୍ତ ଉପାଦାନ ଭରିରହିଛି । ଯୁଗଯୁଗଧରି କବି, ଦାର୍ଶନିକ ଓ ପ୍ରକୃତିପ୍ରେମୀ ପର୍ଯ୍ୟଟକମାନଙ୍କୁ ଓଡ଼ିଶାର ପ୍ରାକୃତିକ ସୌନ୍ଦର୍ଯ୍ୟ ଆକୃଷ୍ଟ କରିଆସିଛି । ସଭ୍ୟତାର କୋଳାହଳରେ ମନୁଷ୍ୟ ଯେତେବେଳେ ଅଣନିଶ୍ୱାସୀ ହୋଇପଡ଼େ ସେତେବେଳେ ସେ ଖୋଜିବୁଲେ ପ୍ରକୃତିର ଶାନ୍ତ, କାନ୍ତକମନୀୟ ପରିବେଶ । ନିଃସର୍ଗ ପ୍ରକୃତି କୋଳରେ, ତାହା ପୁରୀ, ଗୋପାଳପୁରର ଦିଗନ୍ତବିସ୍ତାରୀ ବେଳାଭୂମି ହେଉ କିଂବା ଶିମିଳିପାଳର ଜୀବଜନ୍ତୁଭରା ଅଭୟାରଣ୍ୟ ହେଉ ଅଥବା ଟିକିରପଡ଼ାର ନିଘଞ୍ଚ ବନାନୀ ଭିତରେ ସାତକୋଶିଆଗଣ୍ଡର ରୁଦ୍ରକାନ୍ତ ପ୍ରତିଛବି ହେଉ ସେଠି କିଛିସମୟ କଟେଇବାକୁ ମନ ତା'ର ବ୍ୟାକୁଳ ହୋଇଉଠେ ।

ପର୍ଯ୍ୟଟନ ମାନଚିତ୍ରରେ ଓଡ଼ିଶାର ପୁରୀ, କୋଣାର୍କ ଓ ଭୁବନେଶ୍ୱର ସୁବର୍ଣ୍ଣ ତ୍ରିଭୁଜ ନାମରେ ପରିଚିତ । ମନ୍ଦିରମାଳିନୀ ଭୁବନେଶ୍ୱର, ସମୁଦ୍ରମେଖଳା ପୁରୀ ଓ କୋଣାର୍କର ପ୍ରସ୍ତର ଗାତ୍ରରେ ସଂଗୀତର ମୂର୍ଚ୍ଛନା ଅନେକ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । କିଂତୁ ଓଡ଼ିଶାର ବିସ୍ତୃତ ଭୌଗୋଳିକ ସରହଦ, ସବୁଜ ଶ୍ୟାମଳ ଅରଣ୍ୟାନୀ, ଶାଳ ପିଆଶାଳ ଜଙ୍ଗଲ, ଢେଉଢେଉକା ପର୍ବତମାଳା, ସୁବିସ୍ତୀର୍ଣ୍ଣ ବେଳାଭୂମି, ନଦ-ନଦୀ, ହ୍ରଦ, ଜଳପ୍ରପାତର ସଂଭାର, ଅଭୟାରଣ୍ୟର ବନ୍ୟଜୀବନ ଓ ପକ୍ଷୀବିହାରଗୁଡ଼ିକୁ ସଂପୃକ୍ତ କରି ଯେ ରାଜ୍ୟର ପର୍ଯ୍ୟଟନ ମାନଚିତ୍ରରେ ଅନେକଗୁଡ଼ିଏ ସୁବର୍ଣ୍ଣ ତ୍ରିଭୁଜ ସୃଷ୍ଟି କରାଯାଇପାରିବ ଏଥିରେ ସନ୍ଦେହନାହିଁ । ପର୍ଯ୍ୟଟନର ଏହି ଦିଗଟି ଏପର୍ଯ୍ୟନ୍ତ ଯଥାରୀତି ଅନ୍ୱେଷଣ କରାଯାଇପାରିନାହିଁ । ବିଗତ ବର୍ଷ ଯେତେବେଳେ

କେତୋଟି ଜିଲ୍ଲାର ଜଙ୍ଗଲରେ ପରିବେଶ ଦୃଷ୍ଟିକୋଣରୁ ଗଛକଟା ନିଷିଦ୍ଧ କରିଦିଆଗଲା ସେତେବେଳେ ଜଙ୍ଗଲ ବିଭାଗର ରାଜସ୍ୱ କମିଯିବ ବୋଲି ଅନେକ ଆଶଙ୍କା ପ୍ରକାଶ କରିଥିଲେ । ପ୍ରକୃତି ସଂହାର କରି (ଗଛକାଟି) ଯେଉଁ ରାଜସ୍ୱ ଆଦାୟ କରାଯାଇପାରିଥାଆନ୍ତା, ପ୍ରକୃତିର ସଂରକ୍ଷଣ କରି ପର୍ଯ୍ୟଟନ ଶିଳ୍ପ କରିଆରେ ମଧ୍ୟ ସେହି ରାଜସ୍ୱ ଆଦାୟ କରାଯାଇପାରିବ । ଆଫ୍ରିକାର 'କେନିୟା'ରେ ଶତକଡ଼ା ଅଶୀ ଭାଗ ପର୍ଯ୍ୟଟନ ବନ୍ୟଜନ୍ତୁ ଉପରେହିଁ ପର୍ଯ୍ୟବସିତ । ଆମ ଦେଶର କାଶ୍ମୀର ଓ ହିମାଚଳ ପ୍ରଦେଶରେ ପର୍ଯ୍ୟଟନ ଶିଳ୍ପ, ସେ ରାଜ୍ୟର ପ୍ରାକୃତିକ ଶୋଭା-ସଂଭାରକୁ ଭିତ୍ତିକରି ଗଢ଼ିଉଠିଛି । ଓଡ଼ିଶାରେ ମଧ୍ୟ ଏ ଦିଗରେ ଯଥେଷ୍ଟ ସଂଭାବନା ରହିଛି । ଦେଶର ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନ ପାଇବା ଯୋଗ୍ୟ କେତୋଟି ସଂଭାବ୍ୟ ପ୍ରାକୃତିକ ସ୍ଥାନର ଆଲୋଚନା ଏଠାରେ କରାଯାଇଛି ।

## ଚାନ୍ଦିପୁର-ଶିମିଳିପାଳ-ଉଷାକୋଠୀ –

ବାଲେଶ୍ୱରଠାରୁ ୨୦ କିଲୋମିଟର ଦୂରରେ ଅବସ୍ଥିତ ଚାନ୍ଦିପୁର ବେଳାଭୂମି ଏକ ଭିନ୍ନ ଧରଣର ବେଳାଭୂମି; ଯେଉଁଠି ଜୁଆର ଛାଡ଼ିଗଲା ପରେ ମାଇଲ ମାଇଲ ସମୁଦ୍ର ଭିତରକୁ ଚାଲିଯାଇହେବ । ଜୁଆର ଛାଡ଼ିଯାଇଥିବା ସମୟରେ ଅଗଭୀର ସମୁଦ୍ରର ସମତଳ, କଠିନ ଶଯ୍ୟାରେ ଜିପ୍ ଚାଳନା, ସାଇକେଲ୍ ଚାଳନା ଏବଂ ପିଲାମାନଙ୍କପାଇଁ କ୍ରିକେଟ୍ ତଥା ଫୁଟବଲ୍ ଖେଳର ମଧ୍ୟ ଆୟୋଜନ କରାଯାଇପାରେ । ଚାନ୍ଦିପୁର ବେଳାଭୂମିରେ ଅବସ୍ଥିତ ବନବିଭାଗ ଡାକବଙ୍ଗଳାରେ ରାତିଟିଏ କଟାଇବା ଓ ବଙ୍ଗଳା ସାମ୍ନାରେ ସମୁଦ୍ର ଶଯ୍ୟାକୁ ବାହାରିଥିବା ମଂଚ ଉପରୁ ଅତି ପ୍ରତ୍ୟୁଷରୁ ବା ରାତ୍ରୀର ପ୍ରଥମ ପ୍ରହରରେ, କିଛି ଘଣ୍ଟା ଅନ୍ତରରେ ଜୁଆର ଆସୁଥିବା ଓ ଫେରିଯାଉଥିବାର ଦୃଶ୍ୟ ଉପଭୋଗ କରିବାର ଆନନ୍ଦ ଅବର୍ଣ୍ଣନୀୟ । ଏହାର ଅନତିଦୂରରେ ଅବସ୍ଥିତ ପଶ୍ଚିମବଙ୍ଗର 'ଦୀଘା' ବେଳାଭୂମି ଏକ ସଫଳ ପର୍ଯ୍ୟଟନ କେନ୍ଦ୍ରରେ ପରିଣତ ହୋଇଥିବା ସ୍ଥଳେ, ଚାନ୍ଦିପୁର ଅବହେଳିତ ହୋଇ ପଡ଼ିରହିଛି ।

୨୭୫୦ ବର୍ଗ କିଲୋମିଟର ପରିବ୍ୟାପ୍ତ ଶିମିଳିପାଳ ଅଭୟାରଣ୍ୟ ଚିତ୍ତାକର୍ଷକ ଜଳପ୍ରପାତ; ଚିରସ୍ରୋତା ଝରଣା, ଶାଳ ଚମ୍ପାର ନିଘଞ୍ଚ ବନାନୀ ଭିତରେ ସବୁଜ ଶ୍ୟାମଳ ଉପତ୍ୟକା ଏବଂ ବିଭିନ୍ନ ପ୍ରଜାତିର ଜୀବଜନ୍ତୁ ତଥା ବୃକ୍ଷ ଲତାରେ ପରିପୂର୍ଣ୍ଣ । ପ୍ରଚୁର ପାନୀୟ ଓ ଖାଦ୍ୟର ସୁବିଧା ରହିଥିବାରୁ ଏହି ଅରଣ୍ୟରେ କେବଳ ଅରଣା ମଇଁଷି ଓ କୃଷ୍ଣସାର ବ୍ୟତୀତ ଅନ୍ୟ ସମସ୍ତ ଜୀବଜନ୍ତୁ ଯଥା– ବାଘ, ଚିତାବାଘ, ହାତୀ, ଗୟଳ, ସମ୍ବର, ହରିଣ ଓ ବଳିଆକୁକୁର ଇତ୍ୟାଦି ଦେଖିବାକୁ ମିଳିଥାଏ । ଶିମିଳିପାଳ ବ୍ୟାଘ୍ର ପ୍ରକଳ୍ପର ତତ୍‌କାଳୀନ ନିର୍ଦ୍ଦେଶକ ୰ ସରୋଜରାଜ ଚୌଧୁରୀଙ୍କ ପାଳିତ 'ଖଇରୀ' ବାଘୁଣୀକୁ ଦେଖିବାପାଇଁ ସେ ସମୟରେ ଅନେକ ବିଦେଶୀ ଦର୍ଶକ ଓ ପର୍ଯ୍ୟଟକମାନଙ୍କର ଭିଡ଼ ଲାଗିରହୁଥିଲା । ଖଇରୀ ମରିଗଲା ପରେ ଏହି ନିର୍ଦ୍ଦିଷ୍ଟ ଗୋଷ୍ଠୀର ପର୍ଯ୍ୟଟକମାନଙ୍କର ସଂଖ୍ୟା ନିଶ୍ଚିତ ଭାବରେ କମିଯାଇଛି । କିଂତୁ ଶିମିଳିପାଳ ଜଙ୍ଗଲର ନାଲି ରାସ୍ତାରେ ଜିପ୍ ଧରି ସକାଳେ ବା ଅପରାହ୍ନରେ ଘେରାଏ ବୁଲିଆସିଲେ ହାତୀପଲ, ହରିଣ ଦଳ, ବଳିଆକୁକୁର, ଏପରିକି ବାଘ ମଧ୍ୟ ଦେଖିବାକୁ ମିଳିପାରେ । କିଛି ନହେଲେ ବି ବରେହିପାଣି ଜଳପ୍ରପାତର ପଛଭୂମିରେ ନିର୍ମିତ ଡାକବଙ୍ଗଳାରେ ରାତ୍ରୀଯାପନର ଅନନ୍ୟ ଅନୁଭୂତି ଅନେକ ଦିନଯାଏ ପର୍ଯ୍ୟଟକଙ୍କର ମନକୁ ଆଚ୍ଛନ୍ନ କରି ରଖିବ ।

ଯଶୀପୁରଠାରୁ କରଞ୍ଜିଆ ଓ ସେଠାରୁ ଘନ ଜଙ୍ଗଲ ଦେଇ ଯାଇଥିବା ରାସ୍ତାଟି କେନ୍ଦୁଝରେ ଏବଂ ପାଲଲହଡ଼ାକୁ ଯାଇଛି । ସେହି ରାସ୍ତାରେ ପଡ଼ିବ ମଳୟଗିରି ପର୍ବତ ଓ ଅନେକ ଦୂରରୁ ଦୃଶ୍ୟମାନ ଖଣ୍ଡାଧାର ଜଳପ୍ରପାତ । ପାଲଲହଡ଼ାଠାରୁ ରାସ୍ତାଟି ବର୍‌କୋଟ ଓ ଦେଓଗଡ଼ ଦେଇ ସମ୍ବଲପୁର ଯାଇଛି । ଦେଓଗଡ଼ର 'ପ୍ରଧାନପାଟ' ଜଳପ୍ରପାତର ଦୃଶ୍ୟ ଓ 'ବସନ୍ତ ନିବାସ' କିଂବା 'ଲଳିତ ବସନ୍ତ' ବିଶ୍ରାମ ଗୃହରେ ରାତ୍ରୀଯାପନ ପରିବ୍ରାଜକକୁ ଆତ୍ମହରା କରିଦେବ । ସମ୍ବଲପୁର ଯିବା ବାଟରେ 'ଉଷାକୋଠୀ' ଅଭୟାରଣ୍ୟରେ ବନ୍ୟଜନ୍ତୁଙ୍କ ଗହଣରେ କିଛି ସମୟ ବିତାଯାଇପାରେ । ଅଭୟାରଣ୍ୟର ନିରୀକ୍ଷଣ ମଞ୍ଚରୁ ବନ୍ୟଜନ୍ତୁମାନଙ୍କର ଗତିବିଧି ନିରୀକ୍ଷଣ କରିସାରିଲା ପରେ ନିକଟସ୍ଥ 'ବଡ଼ରମା' ବନ ବିଭାଗ ଡାକବଙ୍ଗଳାରେ ରାତ୍ରୀଯାପନ କରାଯାଇପାରେ ।

### ଚିଲିକା-ଗୋପାଳପୁର-ତପ୍ତପାଣି –

ମରାଳମାଳିନୀ ନୀଳାମ୍ବୁ ଚିଲିକା ଭାରତର ସ୍ଥଳଭାଗରେ ସର୍ବବୃହତ ହ୍ରଦ । ଏହାର ବିସ୍ତୃତି ୧୧୦୦ ବର୍ଗ କିଲୋମିଟର । ଓଡ଼ିଶାର ପକ୍ଷୀ ବିହାର ଭିତରେ ଚିଲିକା ଅନ୍ୟତମ । ଶୀତଋତୁରେ ଅନେକ ଦେଶୀୟ ଓ ବିଦେଶୀ ପରିବ୍ରାଜକ ପକ୍ଷୀଙ୍କର କଳରବରେ ଚିଲିକାର ଜଳରାଶି ନିନାଦିତ ହୋଇଉଠେ । ସେମାନଙ୍କ ଭିତରେ ରାଜହଂସ, ପାତିହଂସ, ହଂସରାଳି, ପାଣିକୁଆ ଓ ଗେଣ୍ଡାଳିଆ ଅନ୍ୟତମ । ପୁରୀ ଓ ଗଂଜାମ ଜିଲ୍ଲାର ଉପକୂଳରେ ଅବସ୍ଥିତ ଓ ଏକ ସଂକୀର୍ଣ୍ଣ ମୁହାଣଦ୍ୱାରା ବଙ୍ଗୋପସାଗର ସହିତ ସଂଯୁକ୍ତ ଏହି ହ୍ରଦଟି ଭିତରେ ଅନେକ ସୁନ୍ଦର ଛୋଟ ଛୋଟ ଦ୍ୱୀପ ରହିଛି; ଯାହାର ନାଁଗୁଡ଼ିକ ବେଶ୍ ଆକର୍ଷଣୀୟ । ସେଗୁଡ଼ିକ ହେଲା– ମଧୁଚନ୍ଦ୍ରିକା ଦ୍ୱୀପ (Honeyman island), ପ୍ରାତଃଭୋଜନ ଦ୍ୱୀପ (Breakfast island) ଇତ୍ୟାଦି । ଶୀତଦିନ ସଂଜବେଳେ ଦେଶୀ ନୌକାରେ ପକ୍ଷୀମାନଙ୍କର ଆବାସସ୍ଥଳୀ 'ନଳବଣ' ଦ୍ୱୀପକୁ ନୌକାବିହାର ଏକ ଅନିର୍ବଚନୀୟ ଅନୁଭୂତି ।

ଗୋପାଳପୁରର ବିସ୍ତୀର୍ଣ୍ଣ ବେଳାଭୂମି ଓ ସକାଳ ସୂର୍ଯ୍ୟକିରଣରେ ଚକ୍‌ଚକ୍ କରୁଥିବା ସ୍ୱର୍ଣ୍ଣାଭ ବାଲୁକାରାଶି ଏବେ ଅନେକ ବିଦେଶୀ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ଏକଦା ପ୍ରାଚୀନ ଉତ୍କଳର ନୌବାଣିଜ୍ୟର ପେଣ୍ଠସ୍ଥଳୀ ଗୋପାଳପୁର ଗଂଜାମ ଜିଲ୍ଲାର ବ୍ରହ୍ମପୁରଠାରୁ ଅନତିଦୂରରେ ଅବସ୍ଥିତ । ପୁରୀର ବେଳାଭୂମିପରି ଏହା କୋଳାହଳମୟ ନୁହେଁ । କିଂତୁ ବେଳାଭୂମିର ବିସ୍ତୀର୍ଣ୍ଣ ବାଲୁକା ଶଯ୍ୟା ଉପରେ ଶୋଇ ଶୋଇ ତରଙ୍ଗାୟିତ ସମୁଦ୍ରର ଢେଉକୁ ଉପଭୋଗ କରିବାପାଇଁ ଏହା ଏକ ପ୍ରକୃଷ୍ଟ ସ୍ଥାନ ।

ଗଂଜାମ ଜିଲ୍ଲାର ଗୋଟିଏ ପଟେ ମାଇଲ୍ ମାଇଲ୍ ଧରି ସମତଳଭୂମି ସମୁଦ୍ରପର୍ଯ୍ୟନ୍ତ ଲଂବିଯାଇଛି । ଅନ୍ୟପଟେ ଢେଉଢେଉକା ପାହାଡ଼ରାଜି ୫୦୦୦ ଫୁଟ ଉଚ୍ଚ ମଳୟଗିରି ପର୍ବତଶିଖର ପର୍ଯ୍ୟନ୍ତ ଉଠିଯାଇଛି । ବ୍ରହ୍ମପୁରଠାରୁ ପାରଳାଖେମୁଣ୍ଡି ବା ରାୟଗଡ଼ା ଯିବା ବାଟରେ ଯେଉଁଠି ଘାଟି ରାସ୍ତା ଆରଂଭ ହୋଇଯାଇଛି, ସେଇଠି ଅଛି 'ତପ୍ତପାଣି' ଉଷ୍ଣ ପ୍ରସ୍ରବଣ । ଚାରିପଟେ ପାହାଡ଼ର ପ୍ରାଚୀର, ମଝିରେ ସର୍ପିଳ ଘାଟୀ ରାସ୍ତା ତଳକୁ ଉଷ୍ଣ ପ୍ରସ୍ରବଣର ଫୁଆରା, ନିକଟରେ ସୁପରିକଳ୍ପିତ ମୃଗବିହାର । ପ୍ରକୃତିପ୍ରେମୀ ପର୍ଯ୍ୟଟକମାନଙ୍କପାଇଁ ଉପଭୋଗର ଯଥେଷ୍ଟ ଖୋରାକ ରହିଛି ।

## ସାତକୋଶିଆ-ଭିତରକନିକା ଅଭୟାରଣ୍ୟ ଓ ଚନ୍ଦକା ହସ୍ତୀବିହାର –

ଚଉଦମାଇଲ ବା ସାତକୋଶ ପରିବ୍ୟାପ୍ତ ସାତକୋଶିଆଗଣ୍ଡ ଆକାଶ ମାର୍ଗରୁ, ରାସ୍ତା ଉପରୁ ଅଥବା ନଦୀବକ୍ଷରୁ ଏକ ଦର୍ଶନୀୟ ସ୍ଥାନ । ଦୁଇପଟେ ଦୁଇହଜାର ଫୁଟ ଉଚ୍ଚ ଘନ ଅରଣ୍ୟ ଆଚ୍ଛାଦିତ ପାହାଡ଼ ମଧ୍ୟ ଦେଇ ମହାନଦୀ ରାଜକୀୟ ଭଙ୍ଗୀରେ ଏଠି ବୋହିଚାଲିଛି । ଜଳ ବକ୍ଷରେ ପ୍ରତିଫଳିତ ଶରତର ନୀଳ ଆକାଶ, କାକରଭିଜା ଶୀତ ସକାଳର କୁହେଳି, ଖରାଦିନ ରାତିରେ ଜଙ୍ଗଲରେ ନିଆଁଲାଗିବାର ଦୃଶ୍ୟ ଅଥବା ବର୍ଷଣମୁଖର ଅପରାହ୍ନରେ ଗଣ୍ଡର ରୁଦ୍ରରୂପ ସବୁଦିନେ କବି, ଚିତ୍ରକର ଓ ଫଟୋଗ୍ରାଫରମାନଙ୍କୁ ଆକର୍ଷିତ କରିଆସିଛି । ଶାଳବନାନୀ ପରିବେଷ୍ଟିତ 'ପୁରୁଣାକୋଟ' ବା 'ଲବଙ୍ଗୀ' ବନବିଶ୍ରାମାଗାରରୁ ରାତ୍ରୀର ନିର୍ଜନତାରେ ନିସ୍ତବ୍ଧ ପ୍ରକୃତିକୁ ଉପଭୋଗ କରିହେବ ଅଥବା ଟିକରପଡ଼ା ଡାକବଙ୍ଗଳାରୁ ସାତକୋଶିଆ ଗଣ୍ଡର ଭୀମକାନ୍ତ ଚିତ୍ରପଟକୁ ଦେଖିହେବ । ସକାଳେ ବା ସଂଜବେଳେ ହାତୀପଲ ଓ ଅନ୍ୟାନ୍ୟ ଜୀବଜନ୍ତୁ ମଧ୍ୟ ଜଙ୍ଗଲରେ ଦେଖିବାକୁ ମିଳିଯିବ । ଟିକରପଡ଼ାଠାରେ ପ୍ରତିଷ୍ଠିତ ଘଡ଼ିଆଳ ସଂରକ୍ଷଣ କେନ୍ଦ୍ର କ୍ରମଶଃ ଅଧିକ ଲୋକପ୍ରିୟ ହୋଇଉଠୁଛି ଏବଂ ଓଡ଼ିଶା ତଥା ଓଡ଼ିଶା ବାହାରର ଅନେକ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିପାରୁଛି ।

ବ୍ରାହ୍ମଣୀ, ବୈତରଣୀ ଏବଂ ଖରସ୍ରୋତା ନଦୀର ତ୍ରିକୋଣଭୂମି ଅଂଚଳରେ ଅବସ୍ଥିତ, ନଦ-ନଦୀ ଓ ସମୁଦ୍ର ପରିବେଷ୍ଟିତ 'ଭିତରକନିକା' ଅଭୟାରଣ୍ୟ ହେନ୍ତାଳ ବା ଲୁଣା ଜଙ୍ଗଲରେ ପରିପୂର୍ଣ୍ଣ । ଭିତରକନିକାସ୍ଥିତ ଡାଙ୍ଗମାଳର ବଉଳା କୁମ୍ଭୀର ଗବେଷଣା କେନ୍ଦ୍ର ତଥା ଗହୀର ମଥା ଉପକୂଳରେ ହଜାର ହଜାର ସାମୁଦ୍ରିକ କଇଁଛ ଡିସେମ୍ବରଠାରୁ ମାର୍ଚ୍ଚ ମାସ ଭିତରେ ଅଣ୍ଡାଦେବାର ଦୃଶ୍ୟ ଏହାକୁ ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ ଚିହ୍ନିତ କରିପାରିଛି । ଏହା ବ୍ୟତୀତ ପ୍ରାୟ ୧୬୦ ପ୍ରକାରର ପକ୍ଷୀ ଭିତରକନିକାରେ ଦେଖାଯା'ନ୍ତି । ତନ୍ମଧ୍ୟରେ ସାଇବେରିଆ ଓ ହିମାଳୟରୁ ଆଗନ୍ତୁକ ପକ୍ଷୀ ମଧ୍ୟ ଅଛନ୍ତି ।

ଓଡ଼ିଶାର ରାଜଧାନୀ ଭୁବନେଶ୍ୱରର ଅନତିଦୂରରେ ଚନ୍ଦକା ହସ୍ତୀ-ଅଭୟାରଣ୍ୟ ଏବେ ପର୍ଯ୍ୟଟକମାନଙ୍କୁ ଆକର୍ଷଣ କରିବାପାଇଁ ସଜବାଜ ହେଉଛି । ଏକଦା ଚନ୍ଦକାର ସଂରକ୍ଷିତ ଶାଳ ଜଙ୍ଗଲ ହାତୀମାନଙ୍କର ଅଭୟ ଆଶ୍ରୟସ୍ଥଳୀ ଥିଲା । ସମୟକ୍ରମେ ଜଙ୍ଗଲ ସବୁ ପଦା ହୋଇଯିବାରୁ ହାତୀପଲ ଜନବସତି ଭିତରେ ପଶି କ୍ଷୟକ୍ଷତି ଘଟାଉଥିଲେ । ଏବେ ସଂପୂର୍ଣ୍ଣ ରକ୍ଷଣାବେକ୍ଷଣ ହେତୁ ଶାଳଜଙ୍ଗଲ ପୁଣି ବଢ଼ିଉଠିଲାଣି । ନିକଟରେ ଅଭୟାରଣ୍ୟ ଭିତରେ ଆବିଷ୍କୃତ ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ, ଜଙ୍ଗଲର ଅଙ୍କାବଙ୍କା ରାସ୍ତାରେ ଟ୍ରେକିଙ୍ଗ୍ ଏବଂ ନିରୀକ୍ଷଣ ମଞ୍ଚରୁ ହାତୀମାନଙ୍କର ଗତିବିଧି ଅବଲୋକନ ଇତ୍ୟାଦିରେ ପର୍ଯ୍ୟଟକମାନଙ୍କପାଇଁ ଯଥେଷ୍ଟ ରୋମାଞ୍ଚ ଭରି ରହିଛି ।

## ଚନ୍ଦ୍ରପୁର-କୋରାପୁଟ-ମାଛକୁଣ୍ଡ –

ଚନ୍ଦ୍ରପୁର ରାୟଗଡ଼ା ସବଡିଭିଜନ୍‌ର ଏକ ଉପାନ୍ତ ବ୍ଲକ୍ । ମୁନିଗୁଡ଼ାଠାରୁ ଡାଙ୍ଗସୁରୁଡ଼ା, ହନୁମତପୁର ଦେଇ ଶାଳ, ପିଆଶାଳ, କୁରୁମ, ବାଉଁଶ ଓ ମହୁଲ ଜଙ୍ଗଲଘେରା ଚନ୍ଦ୍ରପୁରରେ ପହଞ୍ଚିହେବ । ଚନ୍ଦ୍ରପୁର ବ୍ଲକ୍ ସୀମାନ୍ତରୁ ଆରମ୍ଭ ହୋଇଛି ଗଂଜାମ ଜିଲ୍ଲାର 'ଆଡ଼ବା' ଜଙ୍ଗଲ ଓ ଫୁଲବାଣୀ ଜିଲ୍ଲାର କୋଠଗଡ଼ ସଂରକ୍ଷିତ ଜଙ୍ଗଲ । ଏହି ତିନୋଟି ଜିଲ୍ଲାର ସୀମାନ୍ତ ଅଂଚଳର

ନିଘଞ୍ଚ ଜଙ୍ଗଲ ହାତୀମାନଙ୍କର ଚରାଭୂଇଁ । ଅତୀତରେ ଜୟପୁର ରାଜାଙ୍କର କର୍ମଚାରୀମାନେ ଚନ୍ଦ୍ରପୁରଠାରେ ଖେଦାକରି ହାତୀ ଧରୁଥିଲେ । ଏବେ ବି ମୁହଁସଞ୍ଜ ହୋଇଗଲେ ପାଣି ପିଇବା ଓ ଗାଧୋଇବା ଉଦ୍ଦେଶ୍ୟରେ ହାତୀପଲ ନାଳକୂଳକୁ ଗଡ଼ିବାର ଦୃଶ୍ୟ ଯେକୌଣସି ପର୍ଯ୍ୟଟକର ମନକୁ ଉଲ୍ଲସିତ କରିଦେବ । ଖରା ଚାରିମାସ ବ୍ୟତୀତ ଅନ୍ୟ ସମୟରେ ଗମନାଗମନର ଅସୁବିଧା ହେତୁ ଏହି ରମଣୀୟ ଘଞ୍ଚ ଜଙ୍ଗଲ ଅକ୍ଷୁଣ୍ଣ ଓ ଅକ୍ଷତ ରହିପାରିଛି ।

ବର୍ଷାଦିନେ ଅଙ୍କାବଙ୍କା ପାହାଡ଼ି ରାସ୍ତାରେ ଆନ୍ଧ୍ରପଟୁ 'ସୁନ୍‌କି' ଘାଟିରୁ ଓହ୍ଲେଇ ଅଥବା ରାୟଗଡ଼ାପଟୁ ଲକ୍ଷ୍ମୀପୁର ଘାଟି ଦେଇ କୋରାପୁଟରେ ପହଞ୍ଚିଗଲେ ମନେହେବ, ଏହାହିଁ ଓଡ଼ିଶାର ଏକମାତ୍ର ଶୈଳନିବାସ । ଶରତ ଋତୁରେ ଯେତେବେଳେ ସାଗୁଆନ ଗଛ ସବୁ ପୁଷ୍ପ ସଂଭାରରେ ଭରିଯାଏ ଏବଂ କୋରାପୁଟର ଅସମତଳ ବିସ୍ତୀର୍ଣ୍ଣ ପଡ଼ିଆ, ପାହାଡ଼ ଢାଲୁ ଅଳସି ଫୁଲରେ ମଣ୍ଡିହୋଇଯାଏ ସେତେବେଳେ କୋରାପୁଟର ରଂଗ ସୁନାପରି ଝଟକିଉଠେ । ବସନ୍ତରେ କଅଁଳ କୁସୁମପତ୍ର ଓ ଲାଲ୍ ପଳାଶର ଫୁଲ ପାହାଡ଼ ଛାତିକୁ ରକ୍ତବର୍ଣ୍ଣରେ ରଂଜିତ କରିଦିଏ । ହୃଦୟସ୍ପର୍ଶୀ ପ୍ରକୃତିର ଏହି ସୁଷମା ସତେଯେପରି ପର୍ଯ୍ୟଟକଙ୍କୁ ହାତଠାରି ଆମନ୍ତ୍ରଣ ଜଣାଏ ।

କୋରାପୁଟର ଅନତିଦୂରରେ ମାଛକୁଣ୍ଡ ନଦୀ ତିନିହଜାର ଫୁଟ ଉଚ୍ଚତାରୁ, ଆନ୍ଧ୍ରର ସମତଳ ଅଂଚଳକୁ ଅନେକଗୁଡ଼ିଏ ଛୋଟ ବଡ଼ ପ୍ରପାତ ଦେଇ ଓହ୍ଲାଇଯାଇଛି, ତନ୍ମଧ୍ୟରୁ ବୃହତ୍ତମ ଡୁଡୁମା ଜଳପ୍ରପାତ ମାଛକୁଣ୍ଡର ଅନ୍ୟତମ ଆକର୍ଷଣ । ଏହା ବ୍ୟତୀତ ବାଲିମେଳା ଓ ଏକଦା ଅରଣା ମଇଁଷିଙ୍କ ବାସସ୍ଥଳୀ କୋଣ୍ଡାକାମେରୁ ଜଙ୍ଗଲକୁ ମଧ୍ୟ ରାଜ୍ୟର ପର୍ଯ୍ୟଟନ ମାନଚିତ୍ରକୁ ଅଣାଯାଇପା ନ । ଅରଣ୍ୟର ନୈସର୍ଗିକ ସୌନ୍ଦର୍ଯ୍ୟ ଓ ପ୍ରାକୃତିକ ପରିବେଷ୍ଟନୀରେ ଅବାଧରେ ଆତଯାତ ହେଉଥିବା ଜୀବଜନ୍ତୁଙ୍କୁ ପୁଞ୍ଜିକରି ଅନେକଗୁଡ଼ିଏ ସୁବର୍ଣ୍ଣ ତ୍ରିଭୁଜ ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ ପରିକଳ୍ପନା କରାଯାଇପାରେ । କିଂତୁ ସେଥିପାଇଁ ଆନୁଷଙ୍ଗିକ ସୁବିଧା ସୁଯୋଗ ଯଥା– ରାସ୍ତାଘାଟ, ଜଙ୍ଗଲରେ ପରିଭ୍ରମଣପାଇଁ ଯାନବାହନ, ବିଶ୍ରାମସ୍ଥଳୀ, ଖାଦ୍ୟପେୟର ବନ୍ଦୋବସ୍ତ ଆଦି ସୁବିଧା ସୁଯୋଗ ଯୋଗାଇ ଦିଆଯିବା ଆବଶ୍ୟକ ।

ପ୍ରାକୃତିକ ପରିବେଶରେ ବନ୍ୟଜନ୍ତୁଙ୍କୁ ନିରୀକ୍ଷଣ କରିବା ସବୁ ଶ୍ରେଣୀର ପର୍ଯ୍ୟଟକମାନଙ୍କ ପାଇଁ ଉପଯୋଗୀ ନୁହେଁ । କାରଣ ଏହା ଅଧିକ ବ୍ୟୟସାପେକ୍ଷ ଓ ସମୟସାପେକ୍ଷ ମଧ୍ୟ । ସେ ଦୃଷ୍ଟିରୁ ସାଧାରଣ ଶ୍ରେଣୀର ଦର୍ଶକ ଓ ପର୍ଯ୍ୟଟକମାନଙ୍କପାଇଁ ପ୍ରାଣୀଉଦ୍ୟାନ ଅଧିକ ଆକର୍ଷଣୀୟ । ଭୁବନେଶ୍ୱରକୁ ଆସୁଥିବା ଅଧିକାଂଶ ପର୍ଯ୍ୟଟକ 'ନନ୍ଦନକାନନ' ପ୍ରାଣୀ ଉଦ୍ୟାନ ପରିଦର୍ଶନ କରିବାକୁ ଭୁଲନ୍ତିନାହିଁ । ୪୨୬ ହେକ୍ଟର ପରିମିତ ପ୍ରାକୃତିକ ଚନ୍ଦକା ଜଙ୍ଗଲ ଓ କାଞ୍ଜିଆ ହ୍ରଦ ବେଷ୍ଟିତ ଏହି ଉଦ୍ୟାନ ପ୍ରାୟ ୧୫୦୦ ପ୍ରଜାତିର ଜୀବଜନ୍ତୁ, ପକ୍ଷୀ ଓ ସରୀସୃପମାନଙ୍କୁ ନେଇ ସମୃଦ୍ଧ । ଏସିଆ ମହାଦେଶର ସର୍ବବୃହତ୍ 'ସିଂହ ବିହାର' ଓ ନିକଟରେ ସୃଷ୍ଟି ହେବାକୁ ଯାଉଥିବା ଦେଶର ସର୍ବପ୍ରଥମ ଧଳାବାଘ ବିହାର ଏହି ପ୍ରାଣୀ ଉଦ୍ୟାନକୁ ପର୍ଯ୍ୟଟନ ମାନଚିତ୍ରରେ ଅନ୍ୟତମ ସ୍ଥାନ ଦେଇପାରିଛି । ବର୍ଷକୁ ପ୍ରାୟ ଦଶରୁ ପନ୍ଦର ଲକ୍ଷ ଦର୍ଶକ ନନ୍ଦନକାନନ ପରିଭ୍ରମଣରେ ଯାଇଥା'ନ୍ତି । ଅରଣ୍ୟର ନୈସର୍ଗିକ ସୁଷମା ଓ ଚଳଚଞ୍ଚଳ ବନ୍ୟଜୀବନକୁ ପୁଞ୍ଜିକରି ପର୍ଯ୍ୟଟନ ଶିଳ୍ପକୁ ଅଧିକ ଲୋକପ୍ରିୟ କରାଯାଇପାରିଲେ, ଓଡ଼ିଶା ସଭ୍ୟତାର ବ୍ୟାଧିରେ ଶ୍ୱାସରୁଦ୍ଧ ଦେଶ ବିଦେଶର ଅନେକ ପର୍ଯ୍ୟଟକଙ୍କୁ ନିରାମୟ ଆନନ୍ଦ ଯୋଗାଇଦେଇପାରିବ ।



# ଜଙ୍ଗଲର ଅବଦାନ ଆମୋଦ ପ୍ରମୋଦ

ଜଙ୍ଗଲ ପ୍ରକୃତିର ଏକ ନୈସର୍ଗିକ ସୃଷ୍ଟି । ସ୍ରଷ୍ଟାର ଅନବଦ୍ୟ ପରିକଳ୍ପନା । ଘଞ୍ଚ, ସବୁଜ ବନାନୀର ସୁଶୀତଳ ଛାୟା, ପାହାଡ଼ି ଝରଣାର କୁଳୁକୁଳ ସ୍ୱନ, ପକ୍ଷୀମାନଙ୍କର ମଧୁର କାକଳି ଯୁଗେ ଯୁଗେ ଜନମାନସକୁ ଆକୃଷ୍ଟ କରିଆସିଛି । ମଣିଷ ଯେତେବେଳେ ଯାନ୍ତ୍ରିକ ସଭ୍ୟତାର ଚକ ତଳେ ପେଷି ହୋଇଯାଏ, କଳକାରଖାନାର ବିଷାକ୍ତ ପରିବେଶରେ ଶ୍ୱାସରୁଦ୍ଧ ହୋଇପଡ଼େ ବା ଦୈନନ୍ଦିନ ଜଞ୍ଜାଳରେ ଅତିଷ୍ଠ ହୋଇପଡ଼େ, ସେତେବେଳେ ସେ ଧାଇଁଯାଏ ପ୍ରକୃତି କୋଳକୁ । ନିବିଡ଼, ନିଘଞ୍ଚ ଅରଣ୍ୟାନୀ ଭିତରକୁ । ପ୍ରକୃତିର ଏହି ଶାନ୍ତ, କାନ୍ତ, କମନୀୟ ପରିବେଶ ଭିତରେ, ତାହା ପୁରୀ, ଗୋପାଳପୁରର ଦିଗନ୍ତବିସ୍ତାରୀ ବେଳାଭୂମି ହେଉ କିଂବା ଶିମିଳିପାଳର ଜୀବଜନ୍ତୁଭରା ଅଭୟାରଣ୍ୟ ହେଉ ଅଥବା ସାତକୋଶିଆ ଗଣ୍ଡର ରୁଦ୍ରକାନ୍ତ ପ୍ରତିଛବି ହେଉ, ସେଠି କିଛି ସମୟ ବିତେଇଦେଲେ ତା'ର ଥକ୍କା ମେଣ୍ଟିଯାଏ । ଅବସନ୍ନତା ଦୂର ହୁଏ । ମନରେ ତା'ର ଭରିଯାଏ ନୂତନ ଉତ୍ସାହ, ସ୍ଫୁର୍ତ୍ତି ଓ ଉନ୍ମାଦନା ।

ସ୍କୁଲର ଛୋଟ ଛୋଟ ପିଲାଙ୍କଠାରୁ ଆରମ୍ଭକରି କଲେଜରେ ପଢୁଥିବା ଯୁବକ ଯୁବତୀମାନେ ମଧ୍ୟ ଅଧ୍ୟାପନାର ବୋଝରୁ ସାମୟିକ ମୁକ୍ତ ହୋଇ ଜଙ୍ଗଲକୁ ଚାଲିଆସନ୍ତି ବଣଭୋଜି କରିବାପାଇଁ । ଚିରାଚରିତ କାର୍ଯ୍ୟକଳାପରୁ ଏହି ଗୋଟିଏ ଦିନର ଅବ୍ୟାହତି, ପୁଣି ଆସନ୍ତାଦିନମାନଙ୍କରେ ପାଠପଢ଼ାରେ ମନୋନିବେଶ କରିବାପାଇଁ ସେମାନଙ୍କୁ ଅଫୁରନ୍ତ ଉତ୍ସାହ ଯୋଗାଏ । ଛାତ୍ର ସମାଜପାଇଁ ଜଙ୍ଗଲ ପରିବେଶରେ ଏହି ଆମୋଦ ପ୍ରମୋଦ ଯେତିକି ଆନନ୍ଦଦାୟକ ସେତିକି ଶିକ୍ଷଣୀୟ ମଧ୍ୟ । ତା'ର ପାହାଡ଼ ପର୍ବତ ସେମାନଙ୍କ ମନରେ ଉଚ୍ଚ ଓ ମହାନ ହେବାର ଆକାଂକ୍ଷା ଜନ୍ମାଏ । ଝରଣାର ଜଳ ପରି ମନ ଓ ହୃଦୟରେ ନିର୍ମଳ, ପବନ ପରି ବିଶୁଦ୍ଧ, ଆକାଶ ପରି ଖୋଲା ଓ ଗଛ ପରି ଧୈର୍ଯ୍ୟଶୀଳ ଏବଂ ଉଦାର ହେବାକୁ ସେମାନେ ଶିଖନ୍ତି । ବଣଭୋଜିର ଆମୋଦ ପ୍ରମୋଦ ଭିତରେ ପ୍ରକୃତିର ଏହି ମହନୀୟତା ସେମାନଙ୍କର କଅଁଳ ମନରେ ଗଭୀର ରେଖାପାତ କରେ ।

କେବଳ ସଂସାରୀ ମଣିଷ ବା ପାଠପଢୁଆ ପିଲାଙ୍କୁ ଜଙ୍ଗଲ ଆମୋଦ ପ୍ରମୋଦର ଖୋରାକ୍ ଯୋଗାଇନଥାଏ । ଅତୀତରେ ରାଜା, ମହାରାଜାମାନେ ରାଜ୍ୟ ଶାସନର ଅର୍ଗଳି ଭିତରୁ ବାହାରିଆସି ଆମୋଦ ପ୍ରମୋଦପାଇଁ ଜଙ୍ଗଲକୁ ଚାଲିଯାଉଥିଲେ । ଅରଣ୍ୟାନୀ ପରିବେଷ୍ଟିତ ନୈସର୍ଗିକ ସୁଷମାଭରା ସ୍ଥାନଟିଏ ବାଛି ସେଠି ଅରଣ୍ୟ ନିବାସ ବା ଅରଣ୍ୟବିହାର ନିର୍ମାଣ କରୁଥିଲେ । ଯେଉଁ କେତେଦିନ ସେମାନେ ଏଇ ଅରଣ୍ୟନିବାସରେ କଟଉଥିଲେ, ସେବେ ପାରିଧି କରି ଶିକାର ଖେଳିବା, ଧନୁତୀର ଚାଳନା ଓ ଅଶ୍ୱାରୋହଣ ଆଦି ଆନନ୍ଦଦାୟକ ତଥା ଦୁଃସାହସିକ କାର୍ଯ୍ୟକ୍ରମରେ ସମୟ ବିତଉଥିଲେ । ଏହିପରି ଅତୀତ ଯୁଗରୁ ଅରଣ୍ୟ ପ୍ରତି

ମନୁଷ୍ୟର ଆକର୍ଷଣ । ସେ ରାଜା, ମହାରାଜା ହୁଅନ୍ତୁ ବା ଦୀନଦୁଃଖୀ ହୁଅନ୍ତୁ; କବି, କଳାକାର ହୁଅନ୍ତୁ ବା ପ୍ରକୃତିପ୍ରେମୀ ହୁଅନ୍ତୁ, କଳ୍ପନାବିଳାସୀ ହୁଅନ୍ତୁ ବା ସଂସାରୀ ମଣିଷ ହୁଅନ୍ତୁ ।

ଜୀବଜଗତର ଶୀର୍ଷରେ ରହିଛି ମଣିଷ । ସେହିପରି ଉଦ୍ଭିଦଜଗତର ଶୀର୍ଷରେ ରହିଛି ବୃକ୍ଷ । ତେଣୁ ଏ ଦୁହେଁ ନିଜ ନିଜର ସ୍ଥିତିପାଇଁ ପରସ୍ପର ଉପରେ ନିର୍ଭରଶୀଳ । କିଂତୁ ପ୍ରାକୃତିକ ଜଙ୍ଗଲ କହିଲେ, କେବଳ ବଡ଼ ବଡ଼ ବୃକ୍ଷକୁ ବୁଝାଏନାହିଁ । ଛୋଟ ଛୋଟ ଗୁଳ୍ମ ତୃଣ ଓ ଲତା ଠାରୁ ଆରମ୍ଭ କରି ବୁଦା ଓ ମଧ୍ୟମ ଧରଣର ଗଛ ଏବଂ ବଡ଼ ବଡ଼ ଗଛ, ଏଇ ତିନି ସ୍ତରର ଉଦ୍ଭିଦକୁ ନେଇ ଜଙ୍ଗଲର ସୃଷ୍ଟି । ଜଙ୍ଗଲସମ୍ପଦ ଯେତିକି ସମୃଦ୍ଧ ସେତିକି ବ୍ୟାପକ ମଧ୍ୟ । ଆମ ପୃଥିବୀରେ ପ୍ରାୟ ୨ ଲକ୍ଷ ୫୦ ହଜାର ଫୁଲ ଫୁଟୁଥିବା ଗଛ ରହିଛି । ସେଥିରୁ ଶତକଡ଼ା ପଚାଶ ପ୍ରତିଶତ ଆମ ଦେଶରେ ଦେଖିବାକୁ ମିଳେ । ଜଙ୍ଗଲର ଅନ୍ୟ ଏକ ସମ୍ପଦ ହେଉଛି ବନ୍ୟସମ୍ପଦ ବା ଜୀବଜନ୍ତୁ । ସଂପ୍ରତି ଆମ ଦେଶରେ ବନ୍ୟଜନ୍ତୁ କହିଲେ ୫୦୦ ଜାତିର ପଶୁ, ୩୦୦୦ ବିଭିନ୍ନପକ୍ଷୀ ଓ ୩୦,୦୦୦ରୁ ଅଧିକ କୀଟପତଙ୍ଗଙ୍କୁ ବୁଝାଇଥାଏ । ଭିନ୍ନ ଭିନ୍ନ ପ୍ରକାରର ଗଛଲତା, ଅର୍କିଡ୍ ଓ ଜୀବଜନ୍ତୁଭରା ବିପୁଳ ସଂଭାରହିଁ ଜଙ୍ଗଲକୁ ଯୁଗେ ଯୁଗେ ଆକର୍ଷଣୀୟ କରିଛି । ଜନସମାଜପାଇଁ ଆମୋଦ ପ୍ରମୋଦର ଉତ୍ସ ହୋଇ ରହିଛି ।

ଜଙ୍ଗଲର ଅବଦାନ ଅସୀମ । ଗୋଟିଏ ମଧ୍ୟମ ଧରଣର ଗଛ ବର୍ଷକୁ ଏକ ଟନ୍ ଅମ୍ଳଜାନ ପ୍ରଦାନ କରିଥାଏ । ପ୍ରାୟ ପଚାଶବର୍ଷର ଜୀବନକାଳ ଭିତରେ ସିଏ ଯେତେ ଅମ୍ଳଜାନ ସୃଷ୍ଟିକରେ ତା'ର ମୂଲ୍ୟ ପ୍ରାୟ ୨ ଲକ୍ଷ ୫୦ ହଜାର ଟଙ୍କା । ଅମ୍ଳଜାନ ପ୍ରଦାନ ବ୍ୟତୀତ ବାୟୁକୁ ନିର୍ମଳ କରିବା, ଶୁଷ୍କ ବାୟୁକୁ ଆର୍ଦ୍ର ବାୟୁରେ ପରିଣତ କରି ବର୍ଷା କରେଇବା, ମୃତ୍ତିକା ସଂରକ୍ଷଣ କରିବା ଏବଂ ପଶୁପକ୍ଷୀଙ୍କୁ ଆଶ୍ରୟ ଦେବା ପ୍ରଭୃତି କ୍ଷେତ୍ରରେ ଗୋଟିଏ ମଧ୍ୟମ ଧରଣର ଗଛର ହାରାହାରି ବୈଜ୍ଞାନିକ ମୂଲ୍ୟାୟନ ହେଉଛି ପ୍ରାୟ ୧୬ ଲକ୍ଷରୁ ୧୭ ଲକ୍ଷ ଟଙ୍କା । କିଂତୁ କେବଳ ଜଙ୍ଗଲର ଆମୋଦ ପ୍ରମୋଦ ଦିଗଟି, ଯାହାକୁ କୁହାଯାଉଛି Recreational Forestry; ତା' ଉପରେ ସଂପ୍ରତି ଅଧିକରୁ ଅଧିକ ଗୁରୁତ୍ୱ ଦିଆଯାଉଛି । କାରଣ ଦିନକୁଦିନ ଆମ ଚାରିପଟର ପରିବେଶ ପ୍ରଦୂଷିତ ହେବାରେ ଲାଗିଛି । କଳକାରଖାନାରୁ ନିଷ୍କାସିତ ବିଷାକ୍ତ ବାଷ୍ପ, ଯାନବାହନରୁ ନିର୍ଗତ ଧୂଆଁ ଏବଂ ଯାନ୍ତ୍ରିକ କୋଳାହଳ ସହର, ବଜାରରେ ବସବାସ କରୁଥିବା ଜନସମାଜ ବା ରାଜପଥରେ ଯାତାୟାତ କରୁଥିବା ଜନସାଧାରଣଙ୍କର ମନ, ମସ୍ତିଷ୍କ ଓ ହୃଦୟରେ ଅତ୍ୟଧିକ ଚାପ ପ୍ରୟୋଗ କରୁଛି । ସେହି ଚାପ ଓ ପ୍ରତିଚାପରେ (Stress & strain) ମଣିଷ ଭାଙ୍ଗିପଡୁଛି; ତା'ର ମାନସିକ ଭାରସାମ୍ୟ ହରେଇବସୁଛି । ଏହି ଅବସ୍ଥାରୁ ମୁକ୍ତି ପାଇବାପାଇଁ ଜଙ୍ଗଲର ଶାନ୍ତ, କାନ୍ତ, ନିର୍ମଳ ପରିବେଶ ଭିତରେ ସେ ଆଶ୍ରୟ ଚାହୁଁଛି । ସେଠି କେବଳ ନିରୋଳାରେ ବସିରହି ଆନନ୍ଦ ଉପଭୋଗ କରିବାକୁ ଚାହୁଁନି । ସେ ଚାହୁଁଛି, ଏହି ପ୍ରାକୃତିକ ପରିବେଶକୁ ଅଧିକ ଅନୁଧ୍ୟାନ କରିବାକୁ ବା ଅନୁସନ୍ଧାନ କରିବାକୁ ସେ କିଛି ଗୋଟାଏ କରିବ; ଯାହା ଦୁଃସାହସିକ ହୋଇପାରେ, ରୋମାଞ୍ଚକର ହୋଇପାରେ । ଯେଉଁଥିରେ ଆନନ୍ଦ ସହିତ ଉତ୍ତେଜନା ମଧ୍ୟ ମିଳିବ । ଏହି ଚିନ୍ତାଧାରା ଉପରେହିଁ ଆଧାରିତ ସାଂପ୍ରତିକ ଦୁଃସାହସିକ ପର୍ଯ୍ୟଟନର ଭିତ୍ତିଭୂମି; ଯାହାକୁ କୁହାଯାଉଛି adventurous tourism.

ପର୍ଯ୍ୟଟନ ଦୃଷ୍ଟିକୋଣରୁ ଜଙ୍ଗଲର ଆମୋଦ ପ୍ରମୋଦ ଅବଦାନକୁ ଦୁଇଟି ଦିଗରୁ ଆଲୋଚନା କରାଯାଇପାରେ । ପ୍ରଥମଟି ହେଉଛି ଜଙ୍ଗଲର ଶ୍ୟାମଳ ଶୋଭାସମ୍ପଦ; ଶାଳ, ପିଆଶାଳ, ଅସନ, ଅର୍ଜୁନ ଆଦି ବୃକ୍ଷସଂଭାର, ଢେଉଢେଉକା ପର୍ବତମାଳା, ଝରଣା, ନଈ ନାଳ, ଜଳପ୍ରପାତ ଓ ଅଙ୍କା ବଙ୍କା ବିପଦସଙ୍କୁଳ ଜଙ୍ଗଲ ରାସ୍ତା । ଦ୍ୱିତୀୟଟି ହେଉଛି ଜଙ୍ଗଲର ଅମୂଲ୍ୟ ତଥା ପ୍ରାଚୁର୍ଯ୍ୟମୟ ଜୀବଜନ୍ତୁ ଓ ସେମାନଙ୍କର ସଂରକ୍ଷଣ ତଥା ଅବଲୋକନପାଇଁ ସୃଷ୍ଟି କରାଯାଇଥିବା ଅଭୟାରଣ୍ୟ, ଜାତୀୟ ଉଦ୍ୟାନ ଇତ୍ୟାଦି ।

ଜଙ୍ଗଲଭିତ୍ତିକ ଦୁଃସାହସିକ ଉଦ୍ୟାନ ପର୍ଯ୍ୟଟନରେ ଅନ୍ତର୍ଭୁକ୍ତ କରାଯାଇପାରେ, ବିପଦସଙ୍କୁଳ ଅଗମ୍ୟ ରାସ୍ତାରେ ଯାତ୍ରା (trekking), ପର୍ବତାରୋହଣ, ବିରଳ ଉଦ୍ଭିଦମାନଙ୍କୁ ଖୋଜିବା ଓ ଚିହ୍ନଟ କରିବା (Botanical expedition) ଇତ୍ୟାଦି । ଆମ ରାଜ୍ୟରେ ନିକଟରେ ଏହିପରି ଦୁଇଗୋଟି ଟ୍ରେନିଙ୍ଗ୍‌ର ଆୟୋଜନ କରାଯାଇଥିଲା; ଗୋଟିଏ ହେଲା କରାଣ୍ଡିମାଳ - ମହେନ୍ଦ୍ରଗିରି ପଦଯାତ୍ରା ଓ ଅନ୍ୟଟି କୋଣାର୍କଠାରୁ ବେଳାଭୂମି କଡ଼େ କଡ଼େ ତଥା ଜଙ୍ଗଲ ରାସ୍ତାରେ ଚିଲିକା ପର୍ଯ୍ୟନ୍ତ ପଦଯାତ୍ରା । ପ୍ରାକୃତିକ ପରିବେଶରେ ନିଛାଟିଆ ଅଙ୍କାବଙ୍କା ପାଦଚଲା ରାସ୍ତାରେ ଯିବା, ବିପଦପୂର୍ଣ୍ଣ ଘଞ୍ଚ ଅରଣ୍ୟାନୀ ଭିତରଦେଇ ଯିବା, ଯେଉଁଠି ରାସ୍ତା ନାହିଁ, ସେଠି ବଣର କଣ୍ଟାଝଟା ତଥା ଗଛଲତାକୁ ଆଡ଼େଇ ରାସ୍ତା କରିବା, କେଉଁଠି ରାତିରେ ଜଙ୍ଗଲ ଭିତରେ ତମ୍ବୁ ପକାଇ ବା ତାଳପତ୍ରର କୁଡ଼ିଆ କରି ଓ ତା' ଚାରିପଟେ ନିଆଁଜାଳି ଶୋଇଯିବା ଏବଂ ପରିଶେଷରେ ଛୋଟ, ବଡ଼ ପାହାଡ଼ ଟପି ବା ପାଣି ଭିତରେ ପଶି ନଈ, ନାଳ ଅତିକ୍ରମ କରି ଗନ୍ତବ୍ୟସ୍ଥଳରେ ପହଞ୍ଚିବା ଯେତିକି ଦୁଃସାହସିକ ଓ ଉତ୍ତେଜନାପୂର୍ଣ୍ଣ ସେତିକି ରୋମାଞ୍ଚକର ଏବଂ ଆମୋଦ ପ୍ରମୋଦ ମଧ୍ୟ । ମସୌରୀଠାରେ ଟ୍ରେନିଂ ନେଉଥିବା ବେଳେ ଏହିପରି ଏକ ଦୁଃସାହସିକ ଯାତ୍ରାର ଅନୁଭୂତି ଏବେ ବି ମୋ ସ୍ମୃତିରେ ଜୀବନ୍ତ ହୋଇ ରହିଛି । ଆମେ ବଦ୍ରିନାଥ ଯିବା ରାସ୍ତାରୁ ବାହାରିଯାଇଥିଲୁ ଦଶହଜାର ଫୁଟ ଉଚ୍ଚତାରେ ଅବସ୍ଥିତ ଫୁଲର ଉପତ୍ୟକାକୁ; ଯାହାକୁ କୁହାଯାଏ Valley of Flowers । ପ୍ରାୟ ୧୭୦୦ କିସମର ବଣୁଆଫୁଲ ସେଠି ଫୁଟିଥାଏ । ସେଠାରୁ ବରଫ ଉପରେ ପ୍ରାୟ ୪୦୦୦ ଫୁଟ ଉପରକୁ ଚଢ଼ି ପହଞ୍ଚିଥିଲୁ ୧୬୦୦୦ ଫୁଟ ଉଚ୍ଚରେ ଥିବା ହେମକୁଣ୍ଡ ଅଞ୍ଚଳରେ; ଯେଉଁଠି ଏକ ବିରାଟ ହ୍ରଦର ତିନି-ଚତୁର୍ଥାଂଶ ବରଫ ପାଲଟିଯାଇଛି । ତିନିଦିନର ଏହି ଯାତ୍ରା; କିନ୍ତୁ ଆବେଗ, ଉତ୍ତେଜନା ଓ ନୂଆ ନୂଆ ସ୍ଥାନ ଦେଖିବାର ଅନୁସନ୍ଧିତ୍ସା ହେତୁ ଆମେ ଭୁଲିଯାଇଥିଲୁ ପଥଶ୍ରାନ୍ତିଜନିତ କ୍ଳାନ୍ତି ଏବଂ ଜଙ୍ଗଲର ପ୍ରତିକୂଳ ପରିବେଶର ଦୁଃଖ କଷ୍ଟ । ଏହି ଆନନ୍ଦ ଓ ଆମୋଦ ପ୍ରମୋଦ କ୍ଷଣସ୍ଥାୟୀନୁହେଁ; ବରଂ ସାରାଜୀବନପାଇଁ ମନରେ ସ୍ମୃତି ହୋଇ ରହିଯାଏ ।

ପର୍ବତାରୋହଣ ମଧ୍ୟ ଅନ୍ୟ ଏକ ଦୁଃସାହସିକ ତଥା ରୋମାଞ୍ଚକର ଅଭିଯାନ । ଓଡ଼ିଶାରେ ତିନୋଟି ବଡ଼ ବଡ଼ ପର୍ବତଶ୍ରେଣୀ ରହିଛି । ସବୁଠାରୁ ଉଚ୍ଚତମ ଶୃଙ୍ଗ ହେଉଛି କୋରାପୁଟର 'ଦେଓମାଳି', ତା ପଛକୁ 'ମହେନ୍ଦ୍ରଗିରି' ଓ ତୃତୀୟରେ ଶିମିଳିପାଳସ୍ଥ 'ମେଘାସନୀ' ପର୍ବତ । ଏହି ତିନୋଟି ପର୍ବତଶ୍ରେଣୀର ଉଚ୍ଚତମ ଶିଖର ଦେଶରେ ଚାଲିଚାଲି ପହଞ୍ଚିବାପାଇଁ ପର୍ବତାରୋହଣ ପରି ସାହସିକ ଅଭିଯାନର ଖସଡ଼ା ପ୍ରସ୍ତୁତ କରାଯାଇପାରେ । ସ୍କୁଲ କଲେଜରେ

ଅଧ୍ୟୟନ କରୁଥିବା ଛାତ୍ରଛାତ୍ରୀ, ଅଧ୍ୟାପକ, ଗବେଷକମାନଙ୍କପାଇଁ ଅଗମ୍ୟ ଜଙ୍ଗଲରେ ବୁଲି ବୁଲି ବିରଳ ଗଛ, ଲତା ସଂଗ୍ରହ କରିବା ଓ ସେଗୁଡ଼ିକ ଚିହ୍ନଟ କରିବା ଭଳି କାର୍ଯ୍ୟକ୍ରମ ଆୟୋଜନ କଲେ, ତାହା ଆମୋଦ ପ୍ରଦାନ ସଙ୍ଗେ ସଙ୍ଗେ ଶିକ୍ଷଣୀୟ ମଧ୍ୟ ହେବ ।

ଏହା ବ୍ୟତୀତ କେବଳ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଭିତ୍ତିକରି ଜଙ୍ଗଲ ଓ ଜଙ୍ଗଲ ପରିବେଶରୁ ଆମୋଦ ପ୍ରମୋଦ ଆହରଣ କରିବାପାଇଁ, ଓଡ଼ିଶାରେ କେତେଗୁଡ଼ିଏ ଜଙ୍ଗଲଭିତ୍ତିକ ପର୍ଯ୍ୟଟନ ତ୍ରିଭୁଜର ପରିକଳ୍ପନା କରାଯାଇପାରେ । ସେଗୁଡ଼ିକ ମଧ୍ୟରୁ–

(୧) ଚାନ୍ଦିପୁର-ଶିମିଳିପାଳ ଓ ବଡ଼ରମାର ଉଷାକୋଠୀ ଅଭୟାରଣ୍ୟ

(୨) ଚିଲିକା-ଗୋପାଳପୁର-ତପ୍ତପାଣି

(୩) ସାତକୋଶିଆ-ଭିତରକନିକା ଅଭୟାରଣ୍ୟ-ଚନ୍ଦକା ହସ୍ତୀ ବିହାର

(୪) ଚନ୍ଦ୍ରପୁର-କୋରାପୁଟ ଓ ମାଛକୁଣ୍ଡ ଅନ୍ୟତମ ।

ଏହିପରି ଅନେକଗୁଡ଼ିଏ ପ୍ରାକୃତିକ ଶୋଭାସଂପଦ ପରିପୂର୍ଣ୍ଣ ଜଙ୍ଗଲ ଓ ଆରଣ୍ୟକ ପରିବେଶକୁ ଚିହ୍ନଟ କରାଯାଇପାରେ; ଯାହାକି ପରିଭ୍ରମଣକାରୀ ଓ ପରିବ୍ରାଜକମାନଙ୍କୁ ଅନାବିଳ ଆନନ୍ଦ ଯୋଗାଇପାରିବ ।

ସବୁଠାରୁ ଜଙ୍ଗଲର ବିଶେଷ ଅବଦାନ ତଥା ଅନ୍ୟତମ ଆକର୍ଷଣ ହେଉଛି ଏହାର ବିପୁଳ ବନ୍ୟସମ୍ପଦ । ଚିଡ଼ିଆଖାନାର ତାରବାଡ଼ଘେରା ଆବଦ୍ଧ କୋଠରିରେ ବାଘଟିଏ କି ସିଂହଟିଏ ଦେଖିଲେ ଆମର ଖୁସିର ସୀମା ରହୁନାହିଁ । ଅଥଚ ସେହି ବାଘ ଓ ସିଂହ ଯଦି ଆମକୁ କେବେ ଜଙ୍ଗଲର ଖୋଲା ପରିବେଶରେ, ନିର୍ଭୟରେ ନିର୍ଦ୍ୱନ୍ଦରେ ବୁଲୁଥିବାର ଦେଖିବାକୁ ସୁଯୋଗ ମିଳେ, ସେଥିରୁ ଯେଉଁ ରୋମାଞ୍ଚ ଓ ଶିହରଣ ମିଳିବ ତାହା କେବଳ ଅନୁଭବ କରିବାର କଥା । ଜୁଲିୟନ୍ ହକ୍ସଲେଙ୍କ ମତରେ, ଏହାହିଁ ପୃଥିବୀର ସବୁଠାରୁ ରୋମାଞ୍ଚକର ତଥା ଅନିର୍ବଚନୀୟ ଅନୁଭୂତି । ଦେଶ ବିଦେଶରୁ ବହୁ ପର୍ଯ୍ୟଟକେ ଆମ ଦେଶକୁ ଆସନ୍ତି, କେବଳ 'ତାଜମହଲ' ଦେଖିବାପାଇଁ ନୁହେଁ; ଭାରତର ଜାତୀୟ ପଶୁ 'ବାଘ' ଦେଖିବାପାଇଁ ମଧ୍ୟ ସେମାନେ ଆଗ୍ରହୀ । ଓଡ଼ିଶାର ଗ୍ରୀଷ୍ମମଣ୍ଡଳୀୟ ବନ୍ୟସମ୍ପଦ ବିଭିନ୍ନ ଜାତୀୟ ପଶୁପକ୍ଷୀଙ୍କୁ ନେଇ ସମୃଦ୍ଧ । ସେଥିଭିତରୁ ବାଘ, ଚିତାବାଘ, ହାତୀ, ଗୟଳ, ସମ୍ବର, ବଣମଇଁଷି, କୃଷ୍ଣସାର ଓ ଜାତୀୟ ପକ୍ଷୀ ମୟୂରଠାରୁ ଆରଂଭକରି ବର୍ଣ୍ଣିଳ ମାଛରଙ୍କା ଓ କୁଶଳୀ କାଠହଣା ଚଢ଼େଇ ମଧ୍ୟ ଅନ୍ତର୍ଭୁକ୍ତ ।

ବନ୍ୟଜନ୍ତୁ ଦେଖି ଆନନ୍ଦ ଆହରଣ କରୁଥିବା ଗୋଷ୍ଠୀଙ୍କୁ ମୁଖ୍ୟତଃ ତିନୋଟି ଦଳରେ ବିଭକ୍ତ କରାଯାଇପାରେ । ପ୍ରଥମ ଦଳଟିର ଆଗ୍ରହ ଫଟୋଗ୍ରାଫିରେ ସୀମାବଦ୍ଧ । ଚିରଚଞ୍ଚଳ ବନ୍ୟଜନ୍ତୁଙ୍କୁ ମୁହୂର୍ତ୍ତକ ଭିତରେ କ୍ୟାମେରାର ସେଲୁଲଏଡ୍ ଟେପ୍ ଉପରେ ଧରିରଖିବାରେ ସେମାନେ ଚରମତୃପ୍ତି ପାଇଥା'ନ୍ତି । ଅନ୍ୟ ଗୋଟିଏ ଦଳ ରାତିରେ ଜିପ୍‌ରେ ଚଢ଼ି ସର୍ଚ୍ଚଲାଇଟ୍ ବ୍ୟବହାର କରି କିଂବା ଦିନରେ ହାତୀ ଉପରେ ଚଢ଼ି ଅଥବା ପରିଦର୍ଶନ ସ୍ତମ୍ଭ ଉପରୁ ଜୀବଜନ୍ତୁଙ୍କୁ ନିରୀକ୍ଷଣ କରିବାରେ ପରମତୃପ୍ତି ପାଇଥା'ନ୍ତି । ତୃତୀୟ ଦଳର ପର୍ଯ୍ୟଟକମାନେ ଅନୁମତି ନେଇ ଶିକାର କରିବାରେ ଅଧିକ ଆନନ୍ଦ ପାଇଥା'ନ୍ତି । ଅବଶ୍ୟ ଦିନକୁଦିନ ବନ୍ୟଜନ୍ତୁ ବିରଳ ହୋଇ ଆସୁଥିବାରୁ ଏଇ ତୃତୀୟ ଶ୍ରେଣୀର ଦର୍ଶକଙ୍କୁ ଉତ୍ସାହିତ କରାଯାଉନାହିଁ ।

ଆମ ଓଡ଼ିଶାରେ ପ୍ରାକୃତିକ ପରିବେଶରେ ପକ୍ଷୀ ତଥା ବନ୍ୟଜନ୍ତୁଙ୍କୁ ନିରୀକ୍ଷଣ କରିବାପାଇଁ ଶିମିଳିପାଳ ଜାତୀୟ ଉଦ୍ୟାନ ଓ ଅନ୍ୟ ୧୬ଟି ଅଭୟାରଣ୍ୟ ସୃଷ୍ଟି କରାଯାଇଛି । ୨୭୫୦ ବର୍ଗ କିଲୋମିଟର ପରିବ୍ୟାପ୍ତ ଶିମିଳିପାଳ ଅଭୟାରଣ୍ୟ ଓ ତା'ର ମଧ୍ୟଭାଗରେ ଅବସ୍ଥିତ ଶିମିଳିପାଳ ଜାତୀୟ ଉଦ୍ୟାନ, ଚିତ୍ତାକର୍ଷକ ଜଳପ୍ରପାତ, ଚିରସ୍ରୋତା ଝରଣା, ଶାଳ ଚମ୍ପାର ନିଘଞ୍ଚ ବନାନୀ, ସବୁଜ ଶ୍ୟାମଳ ଉପତ୍ୟକା ଏବଂ ବିଭିନ୍ନ ପ୍ରଜାତିର ଜୀବଜନ୍ତୁରେ ପରିପୂର୍ଣ୍ଣ । ପ୍ରଚୁର ପାନୀୟ ଓ ପ୍ରାକୃତିକ ଖାଦ୍ୟର ସୁବିଧା ରହିଥିବାରୁ ଏହି ଅରଣ୍ୟରେ କେବଳ ଅରଣାମଇଁଷି ଓ କୃଷ୍ଣସାର ବ୍ୟତୀତ ଓଡ଼ିଶାରେ ଦେଖିବାକୁ ମିଳୁଥିବା ଅନ୍ୟ ସମସ୍ତ ଜୀବଜନ୍ତୁ ଏଠାରେ ଅଛନ୍ତି । ବର୍ଷକୁ ବର୍ଷ ଅଧିକରୁ ଅଧିକ ପରିଦର୍ଶକ ଏହି ଶିମିଳିପାଳ ଜାତୀୟ ଉଦ୍ୟାନର ପ୍ରାକୃତିକ ରୂପସଂଭାର ତଥା ବନ୍ୟ ପରିବେଶରେ ଜୀବଜନ୍ତୁଙ୍କୁ ଦେଖିବାକୁ ଆସୁଛନ୍ତି । ଏମାନଙ୍କର ସଂଖ୍ୟା ୧୯୮୫ରେ ପ୍ରାୟ ୮୫୦୦ ଥିଲାବେଳେ, ୧୯୯୦ ମସିହାରେ ଏହା ୧୫,୫୦୦କୁ ବୃଦ୍ଧି ପାଇଛି । ସେହିପରି ଭିତରକନିକା ଜାତୀୟ ଉଦ୍ୟାନ, ଚିଲିକା ପକ୍ଷୀବିହାର ବା ଚନ୍ଦକା ହସ୍ତୀ ବିହାର ମଧ୍ୟ ଦର୍ଶକଙ୍କୁ ଆମୋଦିତ କରୁଛି ।

ଜଙ୍ଗଲ ତଥା ପ୍ରାକୃତିକ ପରିବେଶରୁ ଆନନ୍ଦ ଆହରଣ କରିବାକୁ ହେଲେ, କ୍ରମାନ୍ୱୟରେ ପାଞ୍ଚଟି ପର୍ଯ୍ୟାୟ ଦେଇ ଯିବାକୁ ହୋଇଥାଏ ।

(୧) ଯିବାକୁ ଚାହୁଁଥିବା ସ୍ଥାନ ଓ ତା'ର ପରିବେଶ ସଂପର୍କରେ କଳ୍ପନାଜଳ୍ପନା ଏବଂ ଯାତ୍ରାର ଆୟୋଜନ ।

(୨) ନିର୍ଦ୍ଦିଷ୍ଟ ସ୍ଥାନକୁ ପ୍ରକୃତ ଯାତ୍ରା ।

(୩) ଗନ୍ତବ୍ୟ ସ୍ଥାନ ଓ ତତ୍ ସଂଲଗ୍ନ ପରିବେଶର ଅନୁଭୂତି ।

(୪) ପ୍ରତ୍ୟାଗମନ ।

(୫) ଫେରିଆସିଲା ପରେ ଅନୁଭୂତିର ସ୍ମୃତିଚାରଣ ।

ଏଥିରୁ ସ୍ପଷ୍ଟ ଲକ୍ଷ୍ୟ କରିହୁଏ, ଆରଣ୍ୟକ ପରିବେଶରୁ ବା Outdoor recreationରୁ ମିଳୁଥିବା ଆମୋଦ ପ୍ରମୋଦ କ୍ଷଣସ୍ଥାୟୀନୁହେଁ; ଅର୍ଥାତ୍ କେବଳ ଦେଖୁଥିବା ଓ ବୁଲୁଥିବା ସମୟରେହିଁ ଆନନ୍ଦର ଉପଲବ୍ଧି ସୀମିତ ନଥାଏ । ବରଂ ଏହି ଏକାନ୍ତ ଅନୁଭୂତିର ସ୍ମୃତିଚାରଣ କରି ମନୁଷ୍ୟ ବାରଂବାର ମାନସିକ ସ୍ତରରେ ଆମୋଦିତ ହେଉଥାଏ । ଯଥାର୍ଥରେ ଏହା ନୈସର୍ଗିକ ବା ନିରୋଳା ଆନନ୍ଦର ଉତ୍ସ । ଜଙ୍ଗଲର ଏହି ଅବଦାନକୁ ମୂଲ୍ୟାୟନ କରିବା ମଧ୍ୟ ସଂଭବ ନୁହେଁ ।



# ବନ ପୋଡ଼ିଗଲେ ...

"ବନ ପୋଡ଼ିଗଲେ ସମସ୍ତେ ଜାଣନ୍ତି,
ମନ ପୋଡ଼ିଗଲେ କେହି ନ ଜାଣେ ।"

ସତରେ ବନ ପୋଡ଼ିଗଲେ ସମସ୍ତେ ଜାଣିପାରନ୍ତି । ଖରାଦିନେ ରାତିରେ, ବେଳେ ବେଳେ ଦୂର ପାହାଡ଼ ଉଜ୍ଜ୍ୱଳ ଆଲୋକରେ ଝଲମଲ ହେଉଥିବାର ଦୃଶ୍ୟ ଦେଖିବାକୁ ମିଳେ । ସତେଯେପରି କିଏ ହଜାର ହଜାର ବିଜୁଳି ଆଲୁଅର ମାଳା ପାହାଡ଼ ବେକରେ ଝୁଲେଇ ଦେଇଛି । ଏହା ବନାଗ୍ନି ଛଡ଼ା ଅନ୍ୟ କିଛି ନୁହେଁ । ରାତିରେ ଜଙ୍ଗଲିଆ ରାସ୍ତାରେ ବସ୍ ବା ଜିପ୍‌ରେ ଯିବାବେଳେ ସୁଲୁସୁଲିଆ ଥଣ୍ଡା ପବନରେ ଦେହ ମନ ପୁଲକିତ ହୋଇଉଠୁଥିବା ବେଳେ, ହଠାତ୍ କେଉଁଠୁ ଦଲକାଏ ଗରମ ପବନ ଝଡ଼ପରି ବୋହିଆସେ । ଆମେ କହୁ ପାଖ ଜଙ୍ଗଲରେ ନିଆଁଲାଗିଛି । ଫେବୃୟାରୀ ଶେଷ ଭାଗରୁ ଆରମ୍ଭ କରି ଜୁନ୍‌ମାସ ଶେଷ ପର୍ଯ୍ୟନ୍ତ ବଣରେ ନିଆଁଲାଗିବା ଏକ ଚିରାଚରିତ ଘଟଣା । ଘରଟିଏ ପୋଡ଼ିଗଲେ ମାସେ, ପନ୍ଦର ଦିନ ଭିତରେ ନୂଆ ଘରଟିଏ ତିଆରି କରିହେବ । କିନ୍ତୁ ଜଙ୍ଗଲଟିଏ ପୋଡ଼ିଗଲେ, ପୁଣି ସେମିତି ସୁନ୍ଦର ଜଙ୍ଗଲଟିଏ ସୃଷ୍ଟି କରିବାପାଇଁ ଅତିକମ୍‌ରେ ପଚାଶ, ଷାଠିଏ ବର୍ଷ ଲାଗିବ । ଅଥଚ ଜଙ୍ଗଲରେ ନିଆଁଲାଗିବା ଯେତିକି ସହଜ, ଥରେ ନିଆଁଲାଗିଲେ ତାକୁ ଆୟତ୍ତ କରିବା ସେତିକି କଷ୍ଟକର ।

ବେଳେ ବେଳେ ଜଙ୍ଗଲ ରାସ୍ତାରେ ଗଲାବେଳେ, ସରକାରଙ୍କ ତରଫରୁ ଦିଆଯାଇଥିବା ବିଜ୍ଞାପନଟିଏ ଅନେକଙ୍କର ନଜରରେ ପଡ଼ିଥିବ । ବିଜ୍ଞାପନଟି ହେଲା – 'ଜଙ୍ଗଲର ଗୋଟିଏ ଗଛରୁ ଲକ୍ଷ ଲକ୍ଷ ଦିଆସିଲିକାଠି ତିଆରି ହୁଏ । କିନ୍ତୁ ଗୋଟିଏ ଦିଆସିଲିକାଠି ଜଙ୍ଗଲର ଲକ୍ଷ ଲକ୍ଷ ଗଛକୁ ଧ୍ୱଂସ କରିଦେଇପାରେ ।" ବାସ୍ତବିକ୍ ଜଙ୍ଗଲରେ ନିଆଁଲାଗିବାପାଇଁ ଗୋଟିଏ ଦିଆସିଲିକାଠିହିଁ ଯଥେଷ୍ଟ । ବଣର ଶୁଖିଲାଘାସ, ଝଡ଼ାପତ୍ର, ଶୁଖିଲାଡାଳ, କାଠ ଏବଂ ଖରାଦିନିଆ ସୁଲୁସୁଲିଆ ପବନ ନିଆଁକୁ ଜଳିବାପାଇଁ ଇନ୍ଧନ ଯୋଗାଇଥାଏ । ଅନେକ ସମୟରେ ଦେଖାଯାଇଛି ଜଙ୍ଗଲ ଭିତରେ ଥରେ ନିଆଁଲାଗିଲେ ତାହା କ୍ରମାଗତ ଭାବରେ ଆଠ, ଦଶଦିନ ଧରି ଜଳୁଥାଏ ।

ଜଙ୍ଗଲରେ ନିଆଁଲାଗିବାର ବହୁବିଧ କାରଣ ଭିତରୁ ଲୋକମାନଙ୍କର ଅସାବଧାନତାହିଁ ପ୍ରଧାନ କାରଣ । ବସନ୍ତ ଋତୁରେ ଅନେକ ଲୋକ ସାଙ୍ଗସାଥୀ ବନ୍ଧୁବାନ୍ଧବ ତଥା ପରିବାରକୁ ନେଇ ନିକଟସ୍ଥ ଜଙ୍ଗଲକୁ ବଣଭୋଜି କରିବାକୁ ଯାଆନ୍ତି । ଖୁବ୍ ଧୂମ୍‌ଧାମରେ ରନ୍ଧାବଢ଼ା ହୋଇ ଖିଆପିଆ ହୁଏ । କିନ୍ତୁ ଫେରିଲା ବେଳକୁ କାହାର ଆଉ ଖିଆଲ ନଥାଏ ଦେଖିବାପାଇଁ, ରନ୍ଧା ଚୁଲୀରୁ ନିଆଁ ସମ୍ପୂର୍ଣ୍ଣରୂପେ ଲିଭିଛି କି ନାହିଁ ? ଅଧାଲିଭା ନିଆଁ ପବନରେ କୁହୁଳି କୁହୁଳି କିଛି ସମୟ ପରେ ଭଲ ଭାବରେ ଜଳେ ଓ ସେଥିରୁ ନିଆଁ ଉଡ଼ି ପାଖରେ ପଡ଼ିଥିବା ଶୁଖିଲା ଡାଳପତ୍ରକୁ ଜଳାଏ ଏବଂ କ୍ରମେ କ୍ରମେ ଜଙ୍ଗଲରେ ନିଆଁଲାଗିଯାଏ । ଲୋକମାନେ ଜାଣିଜାଣି [illegible]

ମୟୂରଭଂଜ, ସୁନ୍ଦରଗଡ଼ ପ୍ରଭୃତି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଜଙ୍ଗଲ ଭିତରେ ଏଠି ସେଠି, ପାହାଡ଼ ପାଦଦେଶରେ, ଝରଣା କୂଳରେ ଛୋଟ ଛୋଟ ବସତିମାନ ଗଢ଼ିଉଠିଥାଏ । ଏହି ବସତିରୁ ହାଟ, ବଜାର ବା ମୁଖ୍ୟ ରାସ୍ତାକୁ ଆସିବାକୁ ହେଲେ, ଜଙ୍ଗଲ ଭିତରଦେଇ ପାଦଚଲା ରାସ୍ତାରେ ଆସିବାକୁ ପଡ଼େ । ଏହି ରାସ୍ତାରେ ଯା'ଆସ କରୁଥିବା ବେଳେ ଲୋକମାନେ ନିଜ ଅଜାଣତରେ ବିଡ଼ି ବା ସିଗାରେଟ୍ ଲଗେଇ, ଜଳନ୍ତା ଦିଆସିଲିକାଠିକୁ ନ ଲିଭେଇ ଫୋପାଡ଼ି ଦେଇଥା'ନ୍ତି । ଅନେକ ସମୟରେ ବିଡ଼ି ବା ସିଗାରେଟ୍ ଖାଇସାରିଲା ପରେ ତା'ର ଅଧାଜଳା ଖଣ୍ଡିଆ ଅଂଶକୁ ସଂପୂର୍ଣ୍ଣରୂପେ ନଲିଭେଇ ଫୋପାଡ଼ିଦିଅନ୍ତି । ଏଇ ଛୋଟ ନିଆଁ କୁହୁଳି କୁହୁଳି ସାରା ଜଙ୍ଗଲରେ ନିଆଁ ଲାଗିଥାଏ ।

ବେଳେ ବେଳେ କେତେକ କାରଣରୁ ଲୋକମାନେ ଜାଣିଶୁଣି ଜଙ୍ଗଲରେ ନିଆଁ ଲଗେଇ ଥା'ନ୍ତି । ଶାଳମଂଜି ସଂଗ୍ରହକାରୀମାନେ ଜଙ୍ଗଲ ତଳକୁ ନିଆଁଲଗେଇ ପୋଡ଼ି ସଫା କରିଦିଅନ୍ତି । ଏହାଦ୍ୱାରା ସହଜରେ ଗୋଟିଏ ଜାଗାରୁ ଅଧିକ ମଂଜି ସଂଗ୍ରହ କରିହୁଏ । କେନ୍ଦୁପତ୍ର ତୋଳାଳିମାନେ ମଧ୍ୟ କେନ୍ଦୁ ବୁଦାଗୁଡ଼ିକୁ ନିଆଁଲଗେଇ ପୋଡ଼ିଦିଅନ୍ତି । ଫଳରେ ଗୋଟିଏ ଗୋଟିଏ ବୁଦାରୁ ଭଲ କିସମର ପତ୍ର ଅଧିକ ସଂଖ୍ୟାରେ ବାହାରିଥାଏ । ଛେଳି ବା ମେଷ ପାଳକମାନେ ଖରାଦିନେ ଜଂଗଲର ଗୋଟିଏ ଗୋଟିଏ ଅଂଶକୁ ନିଆଁଲଗେଇ ପୋଡ଼ିଦିଅନ୍ତି । କାରଣ ଏପରି କଲେ, ବର୍ଷାଋତୁରେ କଅଁଳଛନଛନ ନୂଆ ଘାସ ବହୁପରିମାଣରେ ବାହାରେ ।

ଏହି ଅବସରରେ ପୋଡୁଚାଷ କଥା ବିଚାର କରାଯାଇପାରେ । ଅନେକ ଆଦିବାସୀ ସମାଜରେ ଏହା ଏକ ସାମାଜିକ ଚଳଣି । ଚାଷ କରିବା ଉଦ୍ଦେଶ୍ୟରେ ପାହାଡ଼ ଗାଲୁରେ ଶହ ଶହ ଏକର ଜଙ୍ଗଲ କାଟି ପଦାକରି ଏମାନେ ନିଆଁଲଗାଇ ଦେଇଥା'ନ୍ତି । ଏହା ଫଳରେ ମୂଲ୍ୟବାନ୍ ଜଙ୍ଗଲସମ୍ପଦ ନଷ୍ଟ ହେବା ସାଙ୍ଗକୁ କେବଳ ମାତ୍ର ବର୍ଷେ ଦୁଇବର୍ଷ ଚାଷକଲା ପରେ ଦ୍ରୁତ ଗତିରେ ମୃତ୍ତିକାକ୍ଷୟ ଘଟି ଉକ୍ତ ଜମି ଚାଷ କରିବାପାଇଁ ସମ୍ପୂର୍ଣ୍ଣ ଅନୁପଯୁକ୍ତ ହୋଇପଡ଼େ । ତେଣୁ ପୋଡୁଚାଷୀ ସେ ସ୍ଥାନ ଛାଡ଼ି ଅନ୍ୟ ଗୋଟିଏ ଜଙ୍ଗଲର ସନ୍ଧାନ କରେ । ଏହିପରି ଗଛଲତାରେ ପରିପୂର୍ଣ୍ଣ ସବୁଜ ପାହାଡ଼ସବୁ କ୍ରମେ ଧୂସର ନଣ୍ଡା ପାହାଡ଼ରେ ପରିଣତ ହୁଏ ।

ଆମ ରାଜ୍ୟର ଅଧିକାଂଶ ଜଙ୍ଗଲ ଶୁଷ୍କ ପତ୍ରଝଡ଼ା ଜଙ୍ଗଲ । ସେଠି ଶାଳ, ପିଆଶାଳ, ସାଗୁଆନ, ଅସନ, କୁରୁମ, ଶିଶୁ ପ୍ରଭୃତି ମୂଲ୍ୟବାନ୍ ଗଛଠୁ ଆରମ୍ଭକରି ମଇ ଧଉଡ଼ା ଆଦି ବିଭିନ୍ନ କିସମର ଗଛ ଦେଖିବାକୁ ମିଳେ । ବଡ଼ ଗଛର ମଂଜିପଡ଼ି ଅନେକ ଗଜା ଆପେ ଆପେ ବାହାରେ । ଗଜାରୁ ଚାରା ଏବଂ ଚାରାରୁ ବଡ଼ ବଡ଼ ଗଛ ହୁଏ । ଏହି ଛୋଟ ଛୋଟ ଚାରା ଗଛ ଗୁଡ଼ିକ ଭବିଷ୍ୟତରେ ବଡ଼ ବଡ଼ ଗଛରେ ପରିଣତ ହୋଇ ଜଙ୍ଗଲର ଶୋଭା ବର୍ଦ୍ଧନ କରିଥାଏ । କିନ୍ତୁ ଯେଉଁଠାରେ ନିଆଁଲାଗି ଛୋଟ ଛୋଟ ଚାରାଗଛଗୁଡ଼ିକ ପୋଡ଼ିଯାଏ, ସେଠି ଜଙ୍ଗଲର ଅଭିବୃଦ୍ଧି ବାଧାପ୍ରାପ୍ତ ହୁଏ । କେବଳ ସେତିକି ନୁହେଁ, ନିଆଁ ଲାଗିଯାଇ ଜଙ୍ଗଲ ପଦା ହୋଇଯିବା ଫଳରେ, ତଳମାଟି ସିଧାସଳଖ ଖରା ଓ ବର୍ଷାର ସମ୍ପର୍କରେ ଆସିବାରୁ ମୃତ୍ତିକାକ୍ଷୟ ଘଟେ ।

ଫଳତଃ ସେହି ଜଙ୍ଗଲର ଉତ୍ପାଦିକା ଶକ୍ତି ଭୀଷଣ ଭାବରେ କ୍ଷତିଗ୍ରସ୍ତ ହେବ । ନିକଟବର୍ତ୍ତୀ ନଦୀ, ନଦୀବନ୍ଧ ଓ ଜଳାଶୟଗୁଡ଼ିକ ପୋତିହୋଇପଡ଼େ । ଜଙ୍ଗଲ ନିକଟସ୍ଥ ଚାଷଜମି ମଧ ବାଲିଚର ହୋଇଯାଏ ।

(୧) ଜଙ୍ଗଲରେ କାଷ୍ଠସମ୍ପଦ ଛଡ଼ା ଅନ୍ୟ ଏକ ଅମୂଲ୍ୟ ସମ୍ପଦ ରହିଛି, ତାହା ହେଲା ଆମର ବନ୍ୟସମ୍ପଦ । ଆମ ଜଙ୍ଗଲରେ ନାନା ଜାତିର ପଶୁପକ୍ଷୀ, କୀଟପତଙ୍ଗ ବାସ କରନ୍ତି । ଏହି ଜୀବଜନ୍ତୁଗୁଡ଼ିକ ପ୍ରକୃତିର ଆମପାଇଁ ଉପହାର ସ୍ୱରୂପ । ଜଙ୍ଗଲରେ ନିଆଁଲାଗିଲେ ଏହି ଅମୂଲ୍ୟ ବନ୍ୟସମ୍ପଦର ଯଥେଷ୍ଟ କ୍ଷତି ହୋଇଥାଏ । ଅନେକ ନିଆଁରେ ପୋଡ଼ିହୋଇ କଳବଲ ହୋଇ ମରନ୍ତି । ଅନେକ ଆହାର ଅଭାବରେ ଓ ପିଇବାପାଇଁ ପାଣି ନପାଇ ମରିଯାଆନ୍ତି ଏବଂ ଅନେକ ଜୀବଜନ୍ତୁ ଭୀତତ୍ରସ୍ତ ହୋଇ ଜଙ୍ଗଲ ଛାଡ଼ି ପଳାଇବାଦ୍ୱାରା ଧୂର୍ତ୍ତ ଶିକାରୀମାନଙ୍କର ଶିକାର ହୋଇଥା'ନ୍ତି । ଜଙ୍ଗଲରେ ନିଆଁଲାଗିବାଦ୍ୱାରା ସବୁଠୁ ବେଶୀ ନଷ୍ଟ ହୁଏ ଆମର ପ୍ରାକୃତିକ ପରିବେଶ ସମ୍ପଦ । ସହର ବଜାରର ଗହଳି ଶିକ୍ଷାନୁଷ୍ଠାନର ଧାରାବାହିକ କାର୍ଯ୍ୟକ୍ରମ ଏବଂ କଳକାରଖାନାର କର୍କଶତା ଭିତରେ ମଣିଷ ବା ଛାତ୍ର ସମାଜ ଯେତେବେଳେ ଅଥୟ ହୋଇପଡ଼ନ୍ତି, ସେତେବେଳେ ସେମାନେ ବଣ, ଜଙ୍ଗଲର ଚିର ଶ୍ୟାମଳ ସବୁଜିମା ଭିତରକୁ ଧାଇଁଯାଆନ୍ତି ଅବକାଶ ବିନୋଦନ ବା ଚିତ୍ତ ବିନୋଦନ ସକାଶେ । ଜନକୋଳାହଳଠାରୁ ଦୂରରେ ଗଛଲତାର ପଞ୍ଚ ସୁଶୀତଳ ଛାୟା ତଳେ ଟିକିଏ ଶୋଇପଡ଼ିଲେ ଦୈନନ୍ଦିନ ଜୀବନର ଅବସାଦ ଦୂର ହୋଇଯାଏ । କିନ୍ତୁ ଜଙ୍ଗଲରେ ଥରେ ନିଆଁଲାଗିଲେ ଏହି ସବୁଜଶ୍ରୀ, ବନାନୀର ଶ୍ୟାମଳିମା, ପ୍ରକୃତିର ଅପରୂପ ଶୋଭାସମ୍ଭାର ରୁକ୍ଷ, ଧୂସର ଏବଂ ଅବାଞ୍ଛିତ ମନେହୁଏ ।

ବିଦେଶରେ ଅର୍ଥାତ କାନାଡ଼ା, ସୁଇଜରଲ୍ୟାଣ୍ଡ ଓ ଜାପାନ ଆଦି ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଜଙ୍ଗଲରୁ ନିଆଁ ଲିଭାଇବାପାଇଁ ଅତ୍ୟନ୍ତ ଆଧୁନିକ ଧରଣର ବ୍ୟବସ୍ଥା ରହିଛି । ସେଠି ଜଙ୍ଗଲ ଭିତରେ ନିର୍ଦ୍ଧାରିତ ସ୍ଥାନମାନଙ୍କରେ ନିରୀକ୍ଷକ ମଞ୍ଚମାନ ନିର୍ମାଣ କରି ଦିନରାତି ଚବିଶ ଘଣ୍ଟା ପହରାଦାର ରହିଥା'ନ୍ତି । ସେମାନଙ୍କ ପାଖରେ ଦୂରବୀକ୍ଷଣ ଯନ୍ତ୍ର ଓ ଦିଗନିର୍ଣ୍ଣୟ ଯନ୍ତ୍ର ମଧ ଥାଏ । ଜଙ୍ଗଲରେ କେଉଁଠି ନିଆଁଲାଗିଲେ ସେମାନେ ସଙ୍ଗେ ସଙ୍ଗେ ଦିଗନିର୍ଣ୍ଣୟ କରି ମୁଖ୍ୟ କାର୍ଯ୍ୟାଳୟକୁ ବେତାରଦ୍ୱାରା ଜଣାଇଦେଇଥା'ନ୍ତି । ଖବର ପାଇବା ସଙ୍ଗେ ସଙ୍ଗେ ମୁଖ୍ୟ କାର୍ଯ୍ୟାଳୟରୁ ନିଆଁଲିଭାଳି ଦଳ ହେଲିକପ୍ଟରରେ ଯୋଗେ ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ପାରାଚୁଟ୍ ସାହାଯ୍ୟରେ ସମସ୍ତ ଯନ୍ତ୍ରପାତି ସହ ଓହ୍ଲେଇଥା'ନ୍ତି ଓ ନିଆଁକୁ ଆୟତ୍ତ କରିଥା'ନ୍ତି ।

କିନ୍ତୁ ଆମ ରାଜ୍ୟରେ ଏ ପ୍ରକାର ବ୍ୟବସ୍ଥା ଅଦ୍ୟାବଧି ସମ୍ଭବ ହୋଇନାହିଁ । ଜଙ୍ଗଲ ବିଭାଗ ତରଫରୁ ନିଆଁ ନଲାଗିବାପାଇଁ, ଅଥବା ଲାଗିଲେ ଗୋଟିଏ ଜଙ୍ଗଲରୁ ଅନ୍ୟ ଜଙ୍ଗଲକୁ ନ ବ୍ୟାପିବାପାଇଁ, କେତେଗୁଡ଼ିଏ ଚିରାଚରିତ ପ୍ରତିକାରମୂଳକ ବ୍ୟବସ୍ଥା ଗ୍ରହଣ କରାଯାଇଥାଏ । ଯଥା– ଦୁଇଟି ସଂରକ୍ଷିତ ଜଙ୍ଗଲ ମଝିରେ କୋଡ଼ିଏ ଫୁଟ ଓସାରର ରାସ୍ତାନିର୍ମାଣ କରାଯାଇଥାଏ । ଏହାକୁ ଫାୟାର ଲାଇନ (Fire line) କୁହାଯାଏ । ମୂଲ୍ୟବାନ୍ ଜଙ୍ଗଲ ଚାରିକଡ଼େ ଟ୍ରେଞ୍ଚ ବା ପରିଖା ଖୋଳାଯାଏ । ପ୍ଲାଣ୍ଟେସନମାନଙ୍କରେ ଅନାବନା ଘାସ ଓପାଡ଼ି ତାକୁ ଗୋଟିଏ ଜାଗାରେ

ଗଦେଇ, ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପୋଡ଼ି ଦିଆଯାଏ । ଏହାକୁ Weeding ଓ Controlled burning କୁହାଯାଏ । ଏହି ବ୍ୟବସ୍ଥା ସ୍ୱୟଂସମ୍ପୂର୍ଣ୍ଣନୁହେଁ । ଏସବୁ ସତ୍ତ୍ୱେହିଁ ଜଙ୍ଗଲରେ ଖରାଦିନେ ବାରମ୍ବାର ନିଆଁ ଲାଗିଥାଏ ଓ କୋଟି କୋଟି ଟଙ୍କାର ମୂଲ୍ୟବାନ୍ ଜାତୀୟସମ୍ପଦ ନଷ୍ଟ ହୋଇଥାଏ । ପ୍ରଥମରୁ ଯାହା କୁହାଯାଇଛି, ବନ ପୋଡ଼ିଗଲେ ସମସ୍ତେ ଜାଣନ୍ତି । ଆଖପାଖ ଅଞ୍ଚଳର ହଜାର ହଜାର ଲୋକ ଦିନ ଦିନ ଧରି ଜଙ୍ଗଲ ପୋଡୁଥିବାର ଦୃଶ୍ୟ ଦେଖୁଥିଲେ ମଧ କାହାରି ହୃଦୟରେ ଉଦ୍‌ବେଳନ ସୃଷ୍ଟି ହୁଏନାହିଁ । ଧ୍ୱଂସର ଏହି ତାଣ୍ଡବଲୀଳା ସର୍ବସାଧାରଣଙ୍କ ମନରେ ରେଖାପାତ କରିପାରେନାହିଁ । ଅନେକ ହୁଏତ ଜାଣନ୍ତିନାହିଁ । ସଂରକ୍ଷିତ ଓ ରକ୍ଷିତ ଜଙ୍ଗଲ ପାଖରେ ବସବାସ କରୁଥିବା ଯେକୌଣସି ବ୍ୟକ୍ତି ଜଙ୍ଗଲରେ ନିଆଁଲାଗିଲେ ତାହା ନିକଟସ୍ଥ ଜଙ୍ଗଲ ବିଭାଗ ଅଫିସରଙ୍କୁ ଜଣାଇବାକୁ ଆଇନତଃ ବାଧ ।

(୨) ଓଡ଼ିଶା ଜଙ୍ଗଲ ଆଇନ ୧୯୭୨ର ୮୪ ଧାରାର ୧ ନମ୍ବର ଉପଧାରା ଅନ୍ତର୍ଗତ ବ୍ୟବସ୍ଥା ଅନୁଯାୟୀ, ୧୯୭୯ ମସିହାରେ ଓଡ଼ିଶା ଜଙ୍ଗଲ (ନିଆଁରୁ ସୁରକ୍ଷା) ଅଧିନିୟମ ପ୍ରଣୟନ କରାଯାଇଛି । ଏହି ନିୟମରେ ସଂରକ୍ଷିତ ଓ ରକ୍ଷିତ ଜଙ୍ଗଲ ଭିତରେ ନିଆଁଲଗାଇବା ନିଷିଦ୍ଧ କରାଯିବା ସଙ୍ଗେ ସଙ୍ଗେ ଜଙ୍ଗଲ ସନ୍ନିକଟ ଅଞ୍ଚଳରେ ମଧ ନିଆଁର ବ୍ୟବହାର ଉପରେ କଟକଣା ଜାରି କରାଯାଇଛି । ତାହାଛଡ଼ା 'କର୍ତ୍ତବ୍ୟ ଓ ଦାୟିତ୍ୱ' ଶିରୋନାମାରେ କୁହାଯାଇଛି, ସଂରକ୍ଷିତ ବା ରକ୍ଷିତ ଜଙ୍ଗଲ ପାଖରେ ବସବାସ କରୁଥିବା ପ୍ରତ୍ୟେକ ବ୍ୟକ୍ତି ଉକ୍ତ ଜଙ୍ଗଲ ବା ତା'ର ନିକଟବର୍ତ୍ତୀ ଅଞ୍ଚଳରେ ନିଆଁଲାଗିଲେ, ତୁରନ୍ତ ନିକଟସ୍ଥ ଜଙ୍ଗଲ ବିଭାଗ କର୍ମଚାରୀଙ୍କୁ ଜଣାଇବା ବିଧେୟ । ଏହି ଜଙ୍ଗଲ ବିଭାଗ ଅଫିସର ଚାହାନ୍ତୁ ବା ନ ଚାହାନ୍ତୁ; ଉକ୍ତ ନିଆଁକୁ ଲିଭାଇବା ପାଇଁ ତଥା ଆଇନ ଅନୁମୋଦିତ ଉପାୟରେ ଗୋଟିଏ ଜଙ୍ଗଲରୁ ଅନ୍ୟ ଜଙ୍ଗଲକୁ ନବ୍ୟାପିବା ପାଇଁ ଆବଶ୍ୟକୀୟ ସହାୟତା ପ୍ରଦାନ କରିବା ସେମାନଙ୍କର କର୍ତ୍ତବ୍ୟ । ଏହାର ବ୍ୟତିକ୍ରମରେ ମୂଳ ଆଇନ୍‌ରେ ଦୁଇଶହ ଟଙ୍କା ଜୋରିମାନାର ବ୍ୟବସ୍ଥା ଥିଲେ ମଧ, ଅଧିନିୟମରେ ତାହା ବାଦ୍ ଦିଆଯାଇଛି । କାରଣ ହେଲା ଜଙ୍ଗଲ ଆମ ସମସ୍ତଙ୍କର ଜାତୀୟସମ୍ପଦ ଓ ଏହାର ସୁରକ୍ଷା ଜନସାଧାରଣଙ୍କର ଜାତୀୟକର୍ତ୍ତବ୍ୟ ।

ପ୍ରକୃତିର ଏହି ମହାର୍ହ ଅବଦାନର ସୁରକ୍ଷା ନିମନ୍ତେ ସର୍ବସାଧାରଣଙ୍କର ସଚେତନତା ଓ ସହଯୋଗିତା ଆଜିର କାମ୍ୟ ।



# ଜାତୀୟ ଜଙ୍ଗଲନୀତି – ୧୯୫୨ ଓ ୧୯୮୮

## [ ଏକ ତୁଳନାତ୍ମକ ବିଶ୍ଳେଷଣ ]

ଭାରତର ପ୍ରଥମ ଜଙ୍ଗଲ ନୀତି, ତତ୍କାଳୀନ ରାଜସ୍ୱ କୃଷି ବିଭାଗଦ୍ୱାରା ୧୮୯୪ ମସିହା ଅକ୍ଟୋବର ମାସରେ ପ୍ରଣୀତ ହୋଇଥିଲା । ଦେଶର ଜଙ୍ଗଲସମ୍ପଦ ପରିଚାଳନା ନିମନ୍ତେ ପ୍ରଣୟନ କରାଯାଇଥିବା ଏହି ଜଙ୍ଗଲ ନୀତି ମୁଖ୍ୟତଃ ଭାରତୀୟ କୃଷି ସମ୍ପର୍କରେ ଭୋଲ୍‌କରଙ୍କ (Voelcker, 1893) ପ୍ରସ୍ତୁତ ରିପୋର୍ଟର ସୁପାରିଶ ଉପରେ ପର୍ଯ୍ୟବସିତ ଥିଲା । ୧୮୯୪ ମସିହା ଜାତୀୟ ଜଙ୍ଗଲ ନୀତିର କେତେକ ମୁଖ୍ୟ ବିଶେଷତ୍ୱ ହେଉଛି –

(କ) ଜଙ୍ଗଲ ନିକଟରେ ବସବାସ କରୁଥିବା ଲୋକମାନଙ୍କର ଜଙ୍ଗଲଜାତ ଦ୍ରବ୍ୟ ବ୍ୟବହାର ସଂକ୍ରାନ୍ତରେ ଥିବା ପ୍ରଚଳିତ ଅଧିକାର ତଥା ସ୍ୱାଧିକାରକୁ ସଂକୁଚିତ କରିବା ।

(ଖ) ବ୍ୟବସାୟିକ ଭିତ୍ତିରେ ଜଙ୍ଗଲ ପରିଚାଳନା କରି ଅଧିକ ରାଜସ୍ୱ ଆଦାୟ କରିବା ।

(ଗ) କୃଷି ପ୍ରତି ଅଗ୍ରାଧିକାର ପ୍ରଦାନ କରିବା, ଅର୍ଥାତ୍ ଆବଶ୍ୟକ ହେଲେ ଜଙ୍ଗଲ କାଟି କୃଷି ନିମନ୍ତେ ଅନୁମତି ଦେବା ।

କିଂତୁ ସ୍ୱାଧୀନ ଭାରତରେ ପ୍ରଥମ ଜଙ୍ଗଲ ନୀତି ୧୯୫୨ ମସିହା ମେ' ମାସରେ ତତ୍କାଳୀନ କୃଷି ଓ ଖାଦ୍ୟ ବିଭାଗ ଆନୁକୂଲ୍ୟରେ ପ୍ରକାଶିତ ହୋଇଥିଲା । ଦେଶର ଛଅଗୋଟି ସାର୍ବଭୌମ ଆବଶ୍ୟକତାକୁ ଦୃଷ୍ଟିରେ ରଖି ଏହି ନୀତି ପ୍ରଣୟନ କରାଯାଇଥିଲା । ସେଥିରୁ ପ୍ରଥମଟି ହେଉଛି– ଜମି ବା ମାଟିର ଗୁଣ ଅନୁସାରେ ତା'ର ଉପଯୁକ୍ତ ବିନିଯୋଗ କରିବା । ଏହାବ୍ୟତୀତ ପାହାଡ଼ ପର୍ବତରେ, ନଦୀ ଅବବାହିକାରେ ଜଙ୍ଗଲ ସଂରକ୍ଷଣ କରି ମୃତ୍ତିକାକ୍ଷୟ ରୋକିବା, ପ୍ରାକୃତିକ ଜଳବାୟୁରେ ସୁଧାର ଆଣିବା, କୃଷି ତଥା ଗୃହୋପକରଣପାଇଁ ଛୋଟ କାଠ, ଜାଳେଣି କାଠ ଏବଂ ଗାଈଗୋରୁଙ୍କପାଇଁ ଚାରଣର କ୍ରମବର୍ଦ୍ଧିଷ୍ଣୁ ଚାହିଦା ମେଣ୍ଟାଇବା ଏବଂ ପ୍ରତିରକ୍ଷା, ଶିଳ୍ପ ଓ ଗମନାଗମନ ଇତ୍ୟାଦି ଜାତୀୟ ଆବଶ୍ୟକତା ନିମନ୍ତେ ମୂଲ୍ୟବାନ୍ କାଠ ଯୋଗାଇବା ଆଦି ଲକ୍ଷ୍ୟ ରହିଥିଲା । କିଂତୁ ଜଙ୍ଗଲ ଓ ଜଙ୍ଗଲଜାତ ଦ୍ରବ୍ୟରୁ ସର୍ବାଧିକ ହାରରେ ବାର୍ଷିକ ରାଜସ୍ୱ କିପରି ନିରବଚ୍ଛିନ୍ନ ଭାବେ ଆଦାୟ କରାଯାଇପାରିବ, ତାହାହିଁ ୧୯୫୨ ମସିହାର ଜାତୀୟ ଜଙ୍ଗଲ ନୀତିକୁ ମୁଖ୍ୟତଃ ମାର୍ଗଦର୍ଶନ ଦେଇଥିଲା ।

୧୯୮୮ ମସିହାରେ ପ୍ରଣୀତ ନୂତନ ଜାତୀୟ ଜଙ୍ଗଲ ନୀତିରେ ଏହି ରାଜସ୍ୱ ଆଦାୟ ଦିଗଟିକୁ ସଂପୂର୍ଣ୍ଣରୂପେ ବାଦ୍ ଦେଇଦିଆଯାଇଛି । ପରିବେଶ ଓ ଜଙ୍ଗଲ ମଂତ୍ରଣାଳୟଦ୍ୱାରା ୭ ଡିସେମ୍ବର ୧୯୮୮ରେ ଘୋଷିତ ଜାତୀୟ ଜଙ୍ଗଲ ନୀତିରେ ପୂର୍ବନୀତିର ମୌଳିକ ଉଦ୍ଦେଶ୍ୟରେ ମଧ୍ୟ ପରିବର୍ତ୍ତନ ଅଣାଯାଇଛି । ନୂତନ ନୀତିରେ ପରିବେଶ ଓ ପାରିପାର୍ଶ୍ୱିକ ବାତାବରଣକୁ ଅଗ୍ରାଧିକାର ଦିଆଯାଇଛି ଏବଂ ବ୍ୟାପକ ଜଙ୍ଗଲ କ୍ଷୟହିଁ ପାରିପାର୍ଶ୍ୱିକ ସନ୍ତୁଳନ

ତଥା ପ୍ରାକୃତିକ ପରିବେଶର ଭାରସାମ୍ୟରେ ଅସ୍ଥିରତା ସୃଷ୍ଟିପାଇଁ ଦାୟୀ ବୋଲି ଚିହ୍ନଟ କରାଯାଇଛି । ଏହାବ୍ୟତୀତ ବ୍ୟାପକତାରେ ପରିପୂର୍ଣ୍ଣ ଅବଶିଷ୍ଟ ପ୍ରାକୃତିକ ଜଙ୍ଗଲ ଓ ବନ୍ୟପ୍ରାଣୀଙ୍କର ସଂରକ୍ଷଣ କରି ଆଗାମୀ ବଂଶଧରମାନଙ୍କ ନିମନ୍ତେ ଜାତୀୟ ପରମ୍ପରାକୁ ବଜାୟ ରଖିବା ମଧ୍ୟ ଏହି ଜଙ୍ଗଲ ନୀତିର ଅନ୍ୟତମ ଲକ୍ଷ୍ୟ ରଖାଯାଇଛି ।

ଉଭୟ ଜଙ୍ଗଲ ନୀତିରେ, ଦେଶର ସମଗ୍ର ସ୍ଥଳଭାଗର ହାରାହାରି ଏକ-ତୃତୀୟାଂଶ ଜଙ୍ଗଲ ଦ୍ୱାରା ଆଚ୍ଛାଦିତ ରହିବା ଲକ୍ଷ୍ୟ ଘୋଷଣା କରାଯାଇଛି । କିଂତୁ ଏହି ଲକ୍ଷ୍ୟ କିପରି ହାସଲ କରାଯାଇପାରିବ ସେ ବିଷୟରେ ୧୯୫୨ ମସିହାରେ ଜଙ୍ଗଲ ନୀତିରେ କୌଣସି ନିର୍ଦ୍ଦିଷ୍ଟ ନିର୍ଦ୍ଦେଶନାମା ନଥିଲା ବେଳେ, ୧୯୮୮ ଜଙ୍ଗଲ ନୀତିରେ ବୃକ୍ଷରୋପଣ, ସାମାଜିକ ବନୀକରଣ ଓ ବ୍ୟକ୍ତିଗତ ଜମିରେ ବୃକ୍ଷରୋପଣ ବିଷୟରେ ସ୍ପଷ୍ଟ ଆଲୋଚନା କରାଯାଇଛି । ଦେଶରେ ଯେତେ ପତିତ, ଅନାବାଦୀ ଓ ପଡ଼ିଆଜମି ରହିଛି, ସେ ସବୁକୁ ଏକ ନିର୍ଦ୍ଦିଷ୍ଟ ସମୟସୀମା ଭିତରେ ବ୍ୟାପକ ବୃକ୍ଷରୋପଣ ଜରିଆରେ ଆବାଦ କରିବାକୁ ଗୁରୁତ୍ୱ ଆରୋପ କରାଯାଇଛି । ଜାତୀୟ ଆବଶ୍ୟକତା ତୁଳନାରେ ଜନସାଧାରଣଙ୍କର ମୌଳିକ ବନଜାତଦ୍ରବ୍ୟର ଆବଶ୍ୟକତା ନୂତନ ନୀତିରେ ପ୍ରାଧାନ୍ୟ ଲାଭକରିଛି । ଆଗାମୀ ବର୍ଷମାନଙ୍କରେ ମଧ୍ୟ ଗ୍ରାମାଞ୍ଚଳରେ ଜାଳେଣିକାଠ ଶକ୍ତିର ମୂଳ ଉତ୍ସ ହୋଇ ରହିବ । ଏହି କାରଣରୁ ଜାଳେଣି ଓ ଚାରଣ ଉତ୍ପାଦନକୁ ସାମାଜିକ ବନୀକରଣ କାର୍ଯ୍ୟକ୍ରମରେ ଅଗ୍ରାଧିକାର ଦିଆଯାଇଛି । ଏହି ପରିପ୍ରେକ୍ଷୀରେ ୧୯୮୮ ଜଙ୍ଗଲ ନୀତିର ମୌଳିକ ଉଦ୍ଦେଶ୍ୟରେ ପ୍ରତିରକ୍ଷା, ଶିଳ୍ପ, କାଗଜ ଶିଳ୍ପ, ଗମନାଗମନ ଓ ନିର୍ମାଣ ଚାହିଦା ଭଳି ଜାତୀୟ ଆବଶ୍ୟକତା ମେଣ୍ଟାଇବାପାଇଁ କାଠର ବିକଳ୍ପ ବ୍ୟବସ୍ଥା କରିବାକୁ ପରାମର୍ଶ ଦିଆଯାଇଛି । ଏହା ଏକ ବାସ୍ତବବାଦୀ ଚିନ୍ତାଧାରା କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ଦିନକୁଦିନ ଜଙ୍ଗଲକ୍ଷୟ ହେବା ସଂଗେ ସଂଗେ କାଠ ଉତ୍ପାଦନ ମଧ୍ୟ କ୍ରମାଗତ ହ୍ରାସ ପାଇବାରେ ଲାଗିଛି । ତେଣୁ କବାଟ, ଦୁଆରବନ୍ଧ, ଚୌକାଠ କିଂବା ଚୌକି, ଟେବୁଲ୍, ଆଲ୍‌ମିରାଠାରୁ ଆରଂଭକରି ରେଳଧାରଣା, କୋଠାବାଡ଼ି ନିର୍ମାଣ ଓ କାଗଜ ତିଆରିରେ ଯେତେବେଳେ କାଠ ବ୍ୟବହାର କରାଯାଉଛି, ସେସବୁ ପାଇଁ ବିକଳ୍ପ ବ୍ୟବସ୍ଥା ନକଲେ, ଜଙ୍ଗଲସମ୍ପଦ ନିଶ୍ଚିତ ଭାବରେ ଧ୍ୱଂସ ପାଇ ଚାଲିଥିବ ।

୧୯୫୨ ମସିହାର ଜାତୀୟ ଜଙ୍ଗଲ ନୀତିରେ ଲଘୁବନଜାତ ଦ୍ରବ୍ୟ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇନଥିବା ସ୍ଥଳେ, ନୂତନ ନୀତିରେ ଆଦିବାସୀ ଜନଜୀବନରେ ଲଘୁବନଜାତ ଦ୍ରବ୍ୟର ପ୍ରାଧାନ୍ୟକୁ ସ୍ୱୀକାର କରାଯାଇଛି । ଏହି ସବୁ ଜଙ୍ଗଲଜାତ ପଦାର୍ଥର ଉତ୍ପାଦନ ବୃଦ୍ଧି କରି ଆଦିବାସୀ, ହରିଜନ ତଥା ଜଙ୍ଗଲ ଉପରେ ନିର୍ଭର କରି ଚଳୁଥିବା ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କୁ କାମଧନ୍ଦା ଯୋଗାଇଦେବା ନିମନ୍ତେ ପ୍ରସ୍ତାବ ମଧ୍ୟ ରଖାଯାଇଛି ।

୧୯୮୮ ଜାତୀୟ ଜଙ୍ଗଲ ନୀତିରେ ଜଙ୍ଗଲରେ ବସବାସ କରୁଥିବା ଆଦିବାସୀ ଓ ଜଙ୍ଗଲ ସନ୍ନିକଟ ଗ୍ରାମବାସୀମାନଙ୍କର ଆବଶ୍ୟକତାକୁ ସ୍ୱୀକୃତି ଦିଆଯିବା ସଂଗେ ସଂଗେ 'ଅଧିକାର ଓ ଅନୁଗ୍ରହ' ଶୀର୍ଷକ ଏକ ସ୍ୱତନ୍ତ୍ର ପରିଚ୍ଛେଦରେ ଏହା କିପରି ପୂରଣ କରାଯାଇପାରିବ ସେ ବିଷୟରେ ମଧ୍ୟ ଦିଗ୍‌ଦର୍ଶନ ଦିଆଯାଇଛି । ଜଙ୍ଗଲ ନିକଟରେ ବସବାସ କରୁଥିବା

ଅଧିବାସୀମାନେ, ଜଙ୍ଗଲଜାତ ଦ୍ରବ୍ୟ ବ୍ୟବହାର କରିବା ନିମନ୍ତେ ଉପଭୋଗ କରିଆସୁଥିବା ଅଧିକାର, ଅନୁଗ୍ରହ ବା ରିହାତିର ପୂର୍ଣ୍ଣ ସୁରକ୍ଷା ସଂଗେ ସଂଗେ ସେମାନଙ୍କର ନିତ୍ୟ ବ୍ୟବହାର୍ଯ୍ୟ ଜାଳେଣିକାଠ, କୃଷି ଓ ବାସଗୃହପାଇଁ ଛୋଟ କାଠ, ଗାଈଗୋରୁଙ୍କପାଇଁ ଚାରଣ ଏବଂ ଲଘୁ ବନଜାତ ଦ୍ରବ୍ୟର ଚାହିଦା ଅଗ୍ରାଧିକାର ଭିତ୍ତିରେ ପୂରଣ କରିବାପାଇଁ ପ୍ରସ୍ତାବନା ରଖାଯାଇଛି । ଦରକାର ସ୍ଥଳେ, ଏହିସବୁ ବନଜାତ ପଦାର୍ଥ ସରକାରୀ ଡିପୋ ଜରିଆରେ ସୁବିଧାରେ ଓ ରିହାତି ଦରରେ ଯୋଗାଇଦେବାକୁ ମଧ୍ୟ ପରାମର୍ଶ ଦିଆଯାଇଛି । ସଂରକ୍ଷିତ ଜଙ୍ଗଲରୁ ଏହି ଆବଶ୍ୟକତା ମେଣ୍ଟାଯାଇ ନପାରିଲେ, ସାମାଜିକ ବନୀକରଣ ଜରିଆରେ ଗାଁଗଣ୍ଡାରେ ଜଙ୍ଗଲ ସୃଷ୍ଟି କରି ଏହା ପୂରଣ କରାଯାଇପାରିବ ବୋଲି ଆଶା ପ୍ରକାଶ କରାଯାଇଛି ।

ଅପରପକ୍ଷରେ ୧୯୫୨ ମସିହାରେ ପ୍ରଣୀତ ଜାତୀୟ ଜଙ୍ଗଲ ନୀତିରେ, ଜଙ୍ଗଲ ନିକଟରେ ବସବାସ କରୁଥିବା ଲୋକମାନଙ୍କର ଆବଶ୍ୟକତା ବା ଦାବି ଉପରେ ଅଯଥା ଗୁରୁତ୍ୱ ଆରୋପ ନକରିବାପାଇଁ ପରାମର୍ଶ ଦିଆଯାଇଥିଲା । ସେଥିରେ କୁହାଯାଇଥିଲା, ଜଙ୍ଗଲ ନିକଟରେ ଗାଁଟିଏ ଆକସ୍ମିକ ଭାବରେ ରହିଯାଇଛି ବୋଲି ଯେ ସେମାନଙ୍କର ଚାହିଦା ବା ଆବଶ୍ୟକତାକୁ ପୂରଣ କରିବାପାଇଁ ଜାତୀୟ ସ୍ୱାର୍ଥକୁ ଜଳାଞ୍ଜଳି ଦିଆଯିବ ଏହା କସ୍ମିନ୍‌କାଳେ ସମ୍ଭବ ନୁହେଁ । ବୈଜ୍ଞାନିକଭିତ୍ତିରେ ଜଙ୍ଗଲ ପରିଚାଳନା ନିମନ୍ତେ ଜଙ୍ଗଲ ବ୍ୟବହାରକାରୀମାନେ ଉପଭୋଗ କରୁଥିବା ଅଧିକାର, ଅନୁଗ୍ରହ ବା ସ୍ୱାଧିକାରକୁ ନିୟନ୍ତ୍ରିତ କରିବା ଏକାନ୍ତ ଜରୁରୀ । ପ୍ରଜାସ୍ୱତ୍ୱକୁ ସଂକୁଚିତ କରିବା ଉଦ୍ଦେଶ୍ୟରେ ୧୯୫୨ ଜଙ୍ଗଲ ନୀତିରେ ଯେଉଁ ଚିନ୍ତାଧାରା ପ୍ରକାଶ ପାଇଥିଲା, ତାକୁ ସାମାନ୍ୟ ଅଧିକ ଅନୁଶୀଳନ କଲେ ଜଣାପଡ଼ିବ, ଜାତୀୟ ସ୍ୱାର୍ଥ (National interest) ଶବ୍ଦଟିର ଅନ୍ତରାଳରେ ଜଙ୍ଗଲରୁ ଅଧିକ ରାଜସ୍ୱ ଆଦାୟର ଆକାଂକ୍ଷା ପ୍ରଚ୍ଛନ୍ନଭାବେ ନିହିତ ଥିଲା । ନୂତନ ଜଙ୍ଗଲ ନୀତିରେ ଲୋକମାନଙ୍କର ମୌଳିକ ବନଜାତ ଦ୍ରବ୍ୟର ଆବଶ୍ୟକତା ପୂରଣ କରିବା ଦିଗରେ ପ୍ରାଧାନ୍ୟ ଆରୋପକରି ଏଥିପାଇଁ କୌଣସି ନିୟନ୍ତ୍ରଣ ଜାରି କରାଯାଇ ନଥିଲେ ମଧ୍ୟ; ଏସବୁ ପୂରଣ କଲା ସମୟରେ ଜଙ୍ଗଲର ଉତ୍ପାଦିକା ଶକ୍ତି ବା ଧାରକ କ୍ଷମତାକୁ (Carrying capacity) ଦୃଷ୍ଟିରେ ରଖିବାକୁ ପରାମର୍ଶ ଦିଆଯାଇଛି ।

ନୂତନ ଜାତୀୟ ଜଙ୍ଗଲ ନୀତିର (୧୯୮୮) ଅନ୍ୟ ଏକ ବିଶେଷତ୍ୱ ହେଲା, ଜଙ୍ଗଲ ସୁରକ୍ଷା କ୍ଷେତ୍ରରେ ଜନସାଧାରଣଙ୍କର ଭୂମିକା ତଥା ସକ୍ରିୟ ସହଯୋଗର ଆବଶ୍ୟକତାକୁ ସ୍ୱୀକୃତି ଦେବା । ଜଙ୍ଗଲଜାତ ଦ୍ରବ୍ୟରେ ଯେଉଁ ଅଧିବାସୀମାନଙ୍କର ସ୍ୱତ୍ୱ ସଂରକ୍ଷିତ ରହିଛି ବା ଯେଉଁମାନେ ରିହାତି ଉପଭୋଗ କରୁଛନ୍ତି ସେମାନଙ୍କୁ ଉକ୍ତ ଜଙ୍ଗଲରୁ ସୁରକ୍ଷା ତଥା ଉନ୍ନତିରେ ସହଯୋଗ କରିବାକୁ ଅନୁପ୍ରାଣିତ କରାଯିବ । ଜନସାଧାରଣଙ୍କର ସ୍ୱେଚ୍ଛାକୃତ ଓ ସକ୍ରିୟ ସହଯୋଗ ବିନା ଜଙ୍ଗଲ ସଂରକ୍ଷଣ ଅସମ୍ଭବ । ଲୋକମାନଙ୍କ ମନରେ ଜଙ୍ଗଲସମ୍ପଦ, ବନ୍ୟଜନ୍ତୁ ଓ ରୋପିତ ବୃକ୍ଷର ସୁରକ୍ଷା ନିମନ୍ତେ କିପରି ସିଧାସଳଖ ଆଗ୍ରହ ସୃଷ୍ଟି ହୋଇପାରିବ, ସେଥିପାଇଁ ନୂତନ ଜଙ୍ଗଲ ନୀତିରେ ସୁଚିନ୍ତିତ ପରାମର୍ଶ ଦିଆଯାଇଛି । ସାମାଜିକ ବନୀକରଣ କାର୍ଯ୍ୟକ୍ରମରେ ଗାଁର ପତିତ, ଅନାବାଦୀ ଓ କୋଠଜମିରେ ଯେଉଁ ସବୁ ବୃକ୍ଷରୋପଣ କରାଯିବ, ଭବିଷ୍ୟତରେ ସେଥିରୁ ଲବ୍ଧ ଅର୍ଥ ପଞ୍ଚାୟତକୁ ମିଳିବ । ସେହିପରି ସରକାରୀ ଅନାବାଦୀ ଜମିରେ ରୋପିତ

ବୃକ୍ଷର ବିକ୍ରୟ ଲବ୍ଧ ଅର୍ଥର କିଛି ଅଂଶ ପଞ୍ଚାୟତକୁ ବା ଗ୍ରାମ ସଂଗଠନକୁ ପ୍ରୋତ୍ସାହନ ନିମନ୍ତେ ଦିଆଯିବ । ସେହିପରି ବ୍ୟକ୍ତିଗତ ଜମିରେ ବୃକ୍ଷରୋପଣକୁ ଉତ୍ସାହିତ କରିବା ନିମନ୍ତେ ପ୍ରଚଳିତ ଜମିଜମା ଆଇନ୍‌କୁ ସରଳ କରାଯିବାର ପ୍ରସ୍ତାବ ମଧ୍ୟ ରହିଛି । ଅନେକ କ୍ଷେତ୍ରରେ ଗରିବ ଭୂମିହୀନ ଶ୍ରମିକ, କ୍ଷୁଦ୍ର ବା ନାମମାତ୍ର ଚାଷୀ, ଆଦିବାସୀ, ହରିଜନ ଓ ମହିଳାମାନଙ୍କୁ ଗଛର ଫଳଭୋଗ ସ୍ୱତ୍ୱ ଦିଆଯିବ । ଏହି ଉପଭୋକ୍ତାମାନେ ଫଳଭୋଗ କରିବା ସଂଗେ ସଂଗେ ଗଛର ରକ୍ଷଣାବେକ୍ଷଣ ଦାୟିତ୍ୱ ମଧ୍ୟ ବହନ କରିବେ ।

୧୮୯୪ ମସିହାର ଜାତୀୟ ଜଙ୍ଗଲ ନୀତିରେ କୃଷିକୁ ଜଙ୍ଗଲଠାରୁ ପ୍ରାଧାନ୍ୟ ଦିଆଯାଇଥିଲା । କିନ୍ତୁ ୧୯୫୨ ନୀତିରେ ଏହାକୁ ଉଠାଇଦିଆଗଲା, ଅର୍ଥାତ୍ କୃଷି ନିମନ୍ତେ ଅଧିକରୁ ଅଧିକ ଜଙ୍ଗଲ କାଟିବାକୁ ଆଉ ପ୍ରଶ୍ରୟ ଦିଆଗଲାନାହିଁ । ୧୯୮୮ ଜାତୀୟ ଜଙ୍ଗଲ ନୀତିରେ ଜଙ୍ଗଲ ସୁରକ୍ଷା ଆଇନ୍‌ର (୧୯୮୦) କେତେକ ସଂଶୋଧନ ସହ, ଜଙ୍ଗଲ ଜମିକୁ କେବଳ କୃଷି ନାହିଁକି, ଜଙ୍ଗଲ ଅତିରିକ୍ତ ଅନ୍ୟ ଯେକୌଣସି ଉଦ୍ଦେଶ୍ୟରେ ବ୍ୟବହାର କରିବାକୁ ମଧ୍ୟ କଟକଣା ଜାରି କରାଯାଇଛି । ନଦୀବନ୍ଧ ଯୋଜନା, ଖଣିପଟା, ଶିଳ୍ପ ପ୍ରତିଷ୍ଠା ଏପରିକି ଚା, କଫି, ରବର, ମସଲା ଆଦି ଅର୍ଥକରୀ ଚାଷକୁ ମଧ୍ୟ ଜଙ୍ଗଲ-ଅତିରିକ୍ତ ଉଦ୍ଦେଶ୍ୟ (Nonforestry purpose) ବୋଲି ଅବହିତ କରାଯାଇ, ଏଥିପାଇଁ କେନ୍ଦ୍ର ସରକାରଙ୍କର ଅନୁମତି ନେବାକୁ ନିର୍ଦ୍ଦେଶ ଦିଆଯାଇଛି । ସେହିପରି ଉତ୍କୃଷ୍ଟ କୃଷି ଜମିରେ ମଧ୍ୟ ବୃକ୍ଷରୋପଣ କରିବାକୁ ବାରଣ କରାଯାଇଛି । ପ୍ରାକୃତିକ ଜଙ୍ଗଲକୁ କାଟି ସେଠି ବନୀକରଣ କରିବାକୁ ଦିଆଯିବନାହିଁ ଏବଂ ତତ୍‌ସହିତ ବିଦେଶୀଗଛକୁ ବହୁଳ ଭାବରେ ରୋପଣ କରିବା ପୂର୍ବରୁ ପରିବେଶ, ଜଙ୍ଗଲ ଓ କୃଷି ଉପରେ ଏହାର କି ପ୍ରଭାବ ରହିଛି ସେ ବିଷୟରେ ବିସ୍ତୃତ ପରୀକ୍ଷା ନିରୀକ୍ଷା କରାଯିବା ଆବଶ୍ୟକ ବୋଲି ନୂତନ ନୀତିରେ ଦର୍ଶାଯାଇଛି ।

ପରିବେଶର ସଂରକ୍ଷଣ, ସଂପ୍ରତି ଅବଶିଷ୍ଟଥିବା ପ୍ରାକୃତିକ ଜଙ୍ଗଲର ସୁରକ୍ଷା ତଥା ଅଭିବୃଦ୍ଧି, ଜନସାଧାରଣଙ୍କର ମୌଳିକ ବନଜାତ ଦ୍ରବ୍ୟର ଚାହିଦାପୂରଣ ଏବଂ ବିଶେଷକରି ଆଦିବାସୀମାନଙ୍କର ଆର୍ଥିକ ଉନ୍ନତି ଦିଗରେ ଜଙ୍ଗଲର ସବିଶେଷ ଅବଦାନକୁ ଦୃଷ୍ଟିରେ ରଖି ୧୯୮୮ ଡିସେମ୍ବର ମାସରେ ଏକ ସଫଳ ଓ ଯଥାର୍ଥ ପଦକ୍ଷେପସ୍ୱରୂପ ନୂତନ ଜାତୀୟ ଜଙ୍ଗଲ ନୀତି ପ୍ରଣୀତ ହୋଇଛି । ପୂର୍ବ ନୀତି ତୁଳନାରେ ଜଙ୍ଗଲ ପରିଚାଳନା, ଜନସହଯୋଗ, ସାମାଜିକ ବନୀକରଣ ଆଦି ବିଷୟରେ ଏହି ନୀତିରେ ସ୍ପଷ୍ଟ ନିର୍ଦ୍ଦେଶନାମା ଦିଆଯାଇଛି । ପରିଶେଷରେ କୁହାଯାଇଛି, "ଜଙ୍ଗଲକୁ ରାଜସ୍ୱ ଉପାର୍ଜନର ଉତ୍ସରୂପେ ବିଚାର କରିବା ଉଚିତନୁହେଁ । ଉପରୋକ୍ତ ପରିଚାଳନା କଲେ, ଏହିଜାତୀୟ ସମ୍ପଦକୁ ପୁନଃ ପୁନଃ ବିନିଯୋଗ କରାଯାଇ ପାରିବ । ଜଙ୍ଗଲ ହେଉଛି ଜାତୀୟ ସଂପତ୍ତି । ଜାତି ତଥା ଜନସାଧାରଣଙ୍କର ଉନ୍ନତିକଳ୍ପେ ଜଙ୍ଗଲର ସଂରକ୍ଷଣ ଓ ଅଭିବୃଦ୍ଧି ଏକାନ୍ତ ଆବଶ୍ୟକ ।



# ଅରଣ୍ୟ ଓ ଆଦିବାସୀ

ଆମ ଓଡ଼ିଶାର ଲୋକସଂଖ୍ୟାର ଶତକଡ଼ା ୨୩ ଭାଗ ହେଉଛନ୍ତି ଆଦିବାସୀ । ଏମାନଙ୍କର ସଂଖ୍ୟା ପ୍ରାୟ ପଚାଶ ଲକ୍ଷ ହେବ । କନ୍ଧମାଳ ବା ଫୁଲବାଣୀ ସବ୍‌ଡିଭିଜନ୍, ବଉଦ, ଘୁମୁସର, କୋରାପୁଟ ଏବଂ କଳାହାଣ୍ଡି ଜିଲ୍ଲା କନ୍ଧ ଅଧ୍ୟୁଷିତ ଅଞ୍ଚଳରୂପେ ସୁବିଦିତ । ଏମାନଙ୍କର ସଂଖ୍ୟା ସାତ ଲକ୍ଷରୁ ଆଠ ଲକ୍ଷ । ଏମାନଙ୍କ ବ୍ୟତୀତ ସଉରାମାନେ ପ୍ରାୟ ଓଡ଼ିଶାର ସବୁ ଅଞ୍ଚଳରେ ଦେଖିବାକୁ ମିଳନ୍ତି ଓ ଏମାନଙ୍କର ସଂଖ୍ୟା ଚାରି ଲକ୍ଷ ବା ତହିଁରୁ କିଛି ଅଧିକ ହୋଇପାରେ । ତା ଛଡ଼ା ସାନ୍ତାଳ, ମୁଣ୍ଡା, ହୋ, ଜୁଆଙ୍ଗ, କୋୟା ପ୍ରଭୃତି ଆଦିବାସୀମାନେ ମଧ ଓଡ଼ିଶାରେ ଅଛନ୍ତି । ଫୁଲବାଣୀ, କୋରାପୁଟ ଓ କଳାହାଣ୍ଡି ଜିଲ୍ଲା ବ୍ୟତୀତ ମୟୂରଭଞ୍ଜ, କେଉଁଝର ଓ ସୁନ୍ଦରଗଡ଼ ଜିଲ୍ଲା ମଧ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ।

ବଣଜଙ୍ଗଲରେ ଆଦିବାସୀମାନଙ୍କର ଜନ୍ମ । ସେହି ନୈସର୍ଗିକ ପ୍ରକୃତିର ଛନ୍ଦେ ଛନ୍ଦେ ନାଚିଖେଳି ଏବଂ ଗୀତଗାଇ ସେମାନଙ୍କର ଜୀବନ ବିକଶିତ ହୁଏ । ସେହି ବଣଜଙ୍ଗଲରୁ ଗଛଲତାର ଫଳମୂଳ ଏବଂ ପଶୁପକ୍ଷୀଙ୍କର ମାଂସ ସଂଗ୍ରହ କରି ସେମାନେ ବଞ୍ଚନ୍ତି । ଝରଣା, ନଈ ନାଳର ପାଣି ପିଇ ଶୋଷ ମେଣ୍ଟାନ୍ତି । ଜଙ୍ଗଲରୁ ସଂଗୃହୀତ ଚେରମୂଳରୁ ପ୍ରସ୍ତୁତ ଜଡ଼ିବୁଟି ସେମାନଙ୍କୁ ବିଭିନ୍ନ ରୋଗରୁ ଓ ଆପଦ ବିପଦରୁ ରକ୍ଷା କରିଥାଏ । ଜଙ୍ଗଲ ସେମାନଙ୍କର ଦେବତା । ଗଛ ପତ୍ରକୁ ସେମାନେ ପୂଜାକରନ୍ତି ।

ଅରଣ୍ୟ ଓ ଆଦିବାସୀ ପରସ୍ପର ପରସ୍ପରର ପରିପୂରକ । ଶତକଡ଼ା ଅଠାଅଶୀ ଭାଗ ଆଦିବାସୀଙ୍କର ଅର୍ଥନୀତି ପ୍ରାଥମିକ ଅର୍ଥନୀତି । ଏମାନେ ପ୍ରାକୃତିକ ସମ୍ପଦ ଆହରଣ କରି ଓ ତାକୁ ବିକି ଜୀବିକାନିର୍ବାହ କରନ୍ତି । ଏ ଭିତରେ ଜଙ୍ଗଲରୁ କାଠ, ଝୁଣା ଓ ଫଳମୂଳ ସଂଗ୍ରହ ଇତ୍ୟାଦି ଉଲ୍ଲେଖଯୋଗ୍ୟ । ଅନ୍ୟ ଆଠଭାଗ ଆଦିବାସୀ ଏହି ଜଙ୍ଗଲଜାତ ଦ୍ରବ୍ୟରୁ ଝାଡୁ, ଟୋକେଇ, ବାଉଁଶିଆ, ବେତରୁ ଚୌକି ଏବଂ କାଠରୁ କଣ୍ଢେଇ ଇତ୍ୟାଦି ପ୍ରସ୍ତୁତ କରି ଚଳନ୍ତି । ବାକି କେବଳ ଚାରିଭାଗ ଚାକିରିବାକିରି କରିଥା'ନ୍ତି । ତେଣୁ ଜଙ୍ଗଲକୁ ବାଦ୍ ଦେଇ ସେମାନଙ୍କର ଉନ୍ନତିପାଇଁ କୌଣସି ଯୋଜନା ଫଳପ୍ରଦ ନହେବା ସ୍ୱାଭାବିକ ।

ଅନେକ ସମୟରେ ଆଦିବାସୀମାନଙ୍କୁ ଜଙ୍ଗଲରୁ ଉଠେଇନେଇ ସହର ଉପକଣ୍ଠରେ ପକ୍‌କା କୋଠା ଘର ତିଆରି କରି ଥଇଥାନ କରାଯାଇଛି । ସେମାନଙ୍କୁ ଚାଷଜମି ଯୋଗେଇ ଦିଆଯାଇଛି । କିନ୍ତୁ ପ୍ରାୟ ପ୍ରତି କ୍ଷେତ୍ରରେ ଦେଖାଯାଇଛି; କିଛିଦିନ ପରେ ସେମାନେ ଲୁଚିକରି ଘରଦ୍ୱାର ଓ ଚାଷଜମି ଇତ୍ୟାଦି ପରିତ୍ୟାଗ କରି ପୁଣି ଜଙ୍ଗଲ ଭିତରକୁ ପଳେଇ ଆସିଛନ୍ତି । ଜଙ୍ଗଲକୁ ଛାଡ଼ି ବଞ୍ଚିବା ସେମାନଙ୍କପାଇଁ ଦୁଃସହ । ତେଣୁ ଯାହାକିଛି ଉନ୍ନତିମୂଳକ କାର୍ଯ୍ୟକ୍ରମ ସେମାନଙ୍କପାଇଁ ପରିକଳ୍ପନା କରାଯିବ, ତାହା ସବୁ ଜଙ୍ଗଲଭିତ୍ତିକ ହେବା ଆବଶ୍ୟକ ।

ଜଙ୍ଗଲରେ ପରିଚାଳନା କର୍ତ୍ତୃପକ୍ଷଙ୍କ ତରଫରୁ ପ୍ରାୟ ବର୍ଷସାରା କାମ ଲାଗିରହିଥାଏ । କଣ୍ଟ୍ରାକ୍ଟର କୁପ୍‌ରେ ଗଛ ହାଣିବା, ଗଣ୍ଡି କରିବା, ଗଣ୍ଡିଗୁଡ଼ିକୁ ସ୍ଥାନାନ୍ତରିତ କରି ଟ୍ରକ୍‌ରେ ଲଦିବା ଇତ୍ୟାଦି କାମ କେବଳ ବର୍ଷାଦିନ ଛଡ଼ା ଅନ୍ୟ ସବୁଦିନ ଚାଲିଥାଏ । ଅନ୍ୟ ସମୟରେ ମଧ ଡିପାର୍ଟମେଣ୍ଟ ତରଫରୁ ପ୍ଲାଣ୍ଟେସନ୍ କୁପ୍ ତିଆରି କରି ଚାରା ରୋପଣ ଓ ତା'ର ରକ୍ଷଣାବେକ୍ଷଣ ଏବଂ ପୁରୁଣା ପ୍ଲାଣ୍ଟେସନ୍‌ରୁ ଲଇଲଟା ଇତ୍ୟାଦି କାଟିବା କାର୍ଯ୍ୟ ହୋଇଥାଏ । ଅବଶ୍ୟ ଏହି ସବୁ କାର୍ଯ୍ୟରେ ନିକଟବର୍ତ୍ତୀ ଗ୍ରାମର ଆଦିବାସୀମାନେ କାମ କରିବାର ସୁଯୋଗ ପାଇଥା'ନ୍ତି । କିନ୍ତୁ ଏହି ସୁଯୋଗ ପ୍ରାୟ ଅନିୟମିତ ।

ଏହି କାରଣରୁ ପ୍ରତ୍ୟେକ ଜିଲ୍ଲାରେ ଆଦିବାସୀ ଶ୍ରମ ସମବାୟ ସଂସ୍ଥା (Tribal Labour Cooperative Society) ପ୍ରତିଷ୍ଠା କରିବା ନିମନ୍ତେ ପ୍ରଥମେ ୧୯୬୫ ମସିହାରେ ବସିଥିବା Central Board of Forestry ର meetingରେ ସର୍ବସମ୍ମତିକ୍ରମେ ମତ ପ୍ରକାଶ ପାଇଥିଲା । ପ୍ରତ୍ୟେକ କାର୍ଯ୍ୟକ୍ଷମ ଆଦିବାସୀ ଏହି ସଂସ୍ଥାର ସଭ୍ୟ ରହନ୍ତେ । ଜଙ୍ଗଲ ବିଭାଗ ଓ ଏହି ସମବାୟ ସଂସ୍ଥା ମଧରେ ସବୁବେଳେ ସମନ୍ୱୟ ରକ୍ଷା କରି ଆଖପାଖ ଜଙ୍ଗଲରେ ଯେତେଗୁଡ଼ିଏ କାମ ହେବ ସେଥିରେ ଆଦିବାସୀମାନଙ୍କୁ ସଂସ୍ଥା ଜରିଆରେ ଅଗ୍ରାଧିକାରଭିତ୍ତିରେ କାମ ଯୋଗାଇ ଦିଆଯାଆନ୍ତା । ଠିକାଦାରମାନେ ନେଇଥିବା କୁପ୍‌ରେ ମଧ ସେମାନେ ଯେପରି ଏହି ସମବାୟ ସଂସ୍ଥାର ସଭ୍ୟ ହୋଇଥିବା ଆଦିବାସୀମାନଙ୍କୁ ପ୍ରଥମେ କାମକରିବାକୁ ସୁଯୋଗ ଦେବେ, ସେ ସମ୍ପର୍କରେ ଜଙ୍ଗଲ ଠିକା ନେଲା ସମୟରେ ସର୍ତ୍ତ ରଖାଯାଇପାରନ୍ତା । ଏହା ଫଳରେ ପ୍ରତ୍ୟେକ କାର୍ଯ୍ୟକ୍ଷମ ଆଦିବାସୀ ଯେପରି ବର୍ଷରେ ଅତିକମ୍‌ରେ ୩୦୦ ଦିନ ଶ୍ରମ କରିବାର ସୁଯୋଗ ପାଇବେ, ତାହା ନିୟନ୍ତ୍ରଣ କରାଯାଇପାରନ୍ତା ଓ ସେମାନଙ୍କୁ ଏକ ସ୍ଥାୟୀ ଜୀବିକା ଅର୍ଜନର ସୁଯୋଗ ମିଳନ୍ତା । ତା'ଛଡ଼ା ଏବେ ଯେପରି ଠିକାଦାରମାନେ ସେମାନଙ୍କୁ କାମରେ ଲଗାଇଲେ ମଧ ଅନେକ ସମୟରେ ଉପଯୁକ୍ତ ପାରିଶ୍ରମିକ ଦେଉନାହାନ୍ତି, ତାହା ବନ୍ଦ କରି, ଉପଯୁକ୍ତ ମଜୁରି ପାଇବା ଦିଗରେ ସେମାନଙ୍କର ସ୍ୱାର୍ଥରକ୍ଷା କରାଯାଇପାରନ୍ତା । ଜଙ୍ଗଲ ବିଭାଗ ତରଫରୁ ମଧ ସେମାନଙ୍କୁ ଶାଗୁଆନ ମଞ୍ଜି ସଂଗ୍ରହ, ଶାଳ ମଞ୍ଜି ସଂଗ୍ରହ, ମହୁ ଓ ଝୁଣା ଇତ୍ୟାଦି ସଂଗ୍ରହ କାର୍ଯ୍ୟରେ ଶ୍ରମ ଯୋଗାଇ ଦିଆଯାଇପାରିବ । ଓଡ଼ିଶାର ଗଞ୍ଜାମ, ଫୁଲବାଣୀ, କୋରାପୁଟ ଓ ମୟୂରଭଞ୍ଜ ଜିଲ୍ଲାମାନଙ୍କରେ ଯେଉଁ ଆଦିବାସୀ ଉନ୍ନୟନ ସମବାୟ ସଂସ୍ଥାଗୁଡ଼ିକ ପ୍ରତିଷ୍ଠିତ ହୋଇଛି, ସେମାନେ ଏହି ଲକ୍ଷ୍ୟରେ କାମ କରୁଛନ୍ତି ।

ଜଙ୍ଗଲଭିତ୍ତିକ କୁଟୀରଶିଳ୍ପ ଜରିଆରେ ମଧ ଆଦିବାସୀମାନଙ୍କୁ କର୍ମସଂସ୍ଥାନ ଯୋଗାଇ ଦିଆଯାଇପାରିବ । ସେଥିପାଇଁ ଆଦିବାସୀ ଇଲାକାଗୁଡ଼ିକରେ ଯେଉଁ ଆଦିବାସୀ ସ୍କୁଲ ଓ ଆଶ୍ରମଶାଳାମାନ ସ୍ଥାପିତ ହୋଇଅଛି, ସେଥିରେ ସାଧାରଣ ପାଠ ସାଙ୍ଗକୁ କର୍ମାଭିମୁଖୀ ଶିକ୍ଷା ଉପରେ ମଧ ଗୁରୁତ୍ୱ ଦିଆଯିବା ଉଚିତ । ବଢ଼େଇ କାମ ଶିକ୍ଷା ଦିଆଗଲେ ଏ ଦିଗରେ ଅଧିକ ସହାୟକ ହେବ । ଜଙ୍ଗଲ ବିଭାଗ ତରଫରୁ ଏହି ସମବାୟ ସଂସ୍ଥାଗୁଡ଼ିକ ଜରିଆରେ ସେମାନଙ୍କୁ ସୁଲଭ ମୂଲ୍ୟରେ କାଠ ଯୋଗାଇ ଦିଆଯିବ ଏବଂ ଋଣ ଆକାରରେ ବ୍ୟାଙ୍କ୍ ତରଫରୁ ଯୋଗାଇ ଦିଆଯାଇପାରିବ । ଯେଉଁ ଚୌକି, ବେଞ୍ଚ, ଟେବୁଲ୍, ର୍ୟାକ୍, ପିଢ଼ା, ଖଟ, ଟୁଲ୍ ଇତ୍ୟାଦି

ସେମାନେ ପ୍ରସ୍ତୁତ କରିବେ, ସେଗୁଡ଼ିକ ଯେପରି ଉପଯୁକ୍ତ ମୂଲ୍ୟରେ ବିକ୍ରି ହୋଇପାରିବ, ତାହାର ଦାୟିତ୍ୱ ସମବାୟ ସଂସ୍ଥାଗୁଡ଼ିକ ନେବ କିମ୍ୱା ଯଦି ଫରେଷ୍ଟ କର୍ପୋରେସନ୍‌କୁ ଏହା ସହିତ ସଂଶ୍ଳିଷ୍ଟ କରାଯାଇପାରିବ ତା'ହେଲେ କର୍ପୋରେସନ୍ ଆଦିବାସୀମାନଙ୍କଠାରୁ ତାଙ୍କ ଦୁଆରମୂହଁରୁ ଏହି ଜିନିଷଗୁଡ଼ିକ କିଣିନେଇ ସହରାଞ୍ଚଳରେ ଏହି ସବୁ ଜିନିଷପାଇଁ ମାର୍କେଟ୍ ପ୍ରସ୍ତୁତ କରନ୍ତା । ଫଳତଃ ଆଦିବାସୀମାନେ ସେମାନଙ୍କର ପ୍ରସ୍ତୁତ ଜିନିଷପାଇଁ ଉପଯୁକ୍ତ ଦାମ୍ ପାଆନ୍ତେ ଏବଂ ଦ୍ୱିତୀୟତଃ ନିଜେ ବିକ୍ରି କରିବାକୁ ଗଲେ ସେମାନଙ୍କର ଯେଉଁ ପଇସା ଖର୍ଚ୍ଚ ହୁଅନ୍ତା ଏବଂ ସମୟ ନଷ୍ଟ ହୁଅନ୍ତା ତାହା ମଧ ବଞ୍ଚିଯାଆନ୍ତା ।

କାଷ୍ଠଶିଳ୍ପ ଛଡ଼ା ଲାଖଚାଷ ମଧ ସେମାନଙ୍କପାଇଁ ଏକ ଅର୍ଥକରୀ ବ୍ୟବସାୟ । ଜଙ୍ଗଲ ବିଭାଗ ତରଫରୁ କୁସୁମ, ପଳାଶ ଇତ୍ୟାଦି ଗଛରେ ଲାଖ ଚାଷପାଇଁ ସମସ୍ତ ସାହାଯ୍ୟ ସେମାନଙ୍କୁ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ଏହି ଲାଖରୁ କୁଟୀରଶିଳ୍ପ ଜରିଆରେ କିପରି ବିଭିନ୍ନ ଆକର୍ଷଣୀୟ ପଦାର୍ଥ ତିଆରି ହୋଇପାରିବ, ତାହା ମଧ ଶିକ୍ଷା ଦିଆଯାଇପାରନ୍ତା । ସଂପ୍ରତି ନବରଙ୍ଗପୁରଠାରେ ସମବାୟ ସମିତି ମାଧ୍ୟମରେ କୁଟୀରଶିଳ୍ପଦ୍ୱାରା ଲାଖରୁ ବହୁ ସୁନ୍ଦର ଉପହାର ପଦାର୍ଥ, ଖେଳନା ଆଦି ନିର୍ମିତ ହୋଇ ବିକ୍ରି ହେଉଛି । ଟସର ଚାଷ ମଧ ଅନ୍ୟ ଏକ ଲାଭଜନକ ବ୍ୟବସାୟ ଯାହାକି ଆଦିବାସୀମାନେ କରିପାରିବେ । ଜଙ୍ଗଲରୁ ମିଳୁଥିବା ବେତରୁ ଟୋପି, ଚଉକି, ଥଳି, ଟୋକେଇ, ମାଣ ଇତ୍ୟାଦି ଏବଂ କିଆପତ୍ରରୁ ବିଛଣା, ଆସନ ଏବଂ କିଆଚେର ଓହଳରୁ ଅତି ସୁନ୍ଦର ପାଛିଆ, ଡାଲା, ପେଡ଼ି ଇତ୍ୟାଦି ମଧ କୁଟୀରଶିଳ୍ପ ଜରିଆରେ ପ୍ରସ୍ତୁତ କରାଯାଇପାରିବ ।

ଅନେକଗୁଡ଼ିଏ ଜଙ୍ଗଲଜାତ ଦ୍ରବ୍ୟ ଯଥା— ପାଳୁଅ, ହରିଡ଼ା, ବାହାଡ଼ା, ଅଁଳା, କୋଚିଲା ମଞ୍ଜି, ଶାଳ ମଞ୍ଜି, ତେନ୍ତୁଳି ମଞ୍ଜି, ଫୁଲଝାଡୁ, ଶିମିଳିତୁଳା, ଶିଆଳିପତ୍ର, ଶାଳପତ୍ର ଓ କମଳାଗୁଣ୍ଡି ଇତ୍ୟାଦି ସଂଗ୍ରହ କରିବାପାଇଁ ଠିକାଦାରମାନଙ୍କୁ ଠିକା ନଦେଇ, ଆଦିବାସୀ ଉନ୍ନୟନ ସମବାୟ ସଂସ୍ଥାଗୁଡ଼ିକୁ ଠିକା ଦିଆଗଲେ, ଅନେକ ଆଦିବାସୀ ସଂଗ୍ରହ କାର୍ଯ୍ୟରେ ଓ ତଦ୍ ସହିତ ସଂଶ୍ଳିଷ୍ଟ କୁଟୀରଶିଳ୍ପଗୁଡ଼ିକରେ କର୍ମନିଯୁକ୍ତି ପାଇପାରନ୍ତେ । କଲିକତା ଓ ବମ୍ବେ ମାର୍କେଟ୍‌ରେ ଏଠିକାର ଫୁଲଝାଡୁର ଚାହିଦା ଯଥେଷ୍ଟ ବେଶି । ମହୁ, ପାଳୁଅ, ଝୁଣା ଏବଂ ଶିମିଳିତୁଳାର ଚାହିଦା ସବୁଠି ରହିଛି । ଶିଆଳିପତ୍ରର ଖଲି ଓ ଠୋଲା ପ୍ରତିଦିନ ହଜାର ହଜାର ସଂଖ୍ୟାରେ ସହର ବଜାରର ଦୋକାନୀମାନେ କିଣିଥା'ନ୍ତି ।

ଆମ ଅରଣ୍ୟରେ ତୈଳ ଉତ୍ପନ୍ନକାରୀ ଫଳ ଓ ତୈଳବୀଜ ବୃକ୍ଷ ବହୁଳ ପରିମାଣରେ ଦେଖାଯାଏ । କିନ୍ତୁ ଗମନାଗମନର ଅସୁବିଧା ଓ ଜନବସତିର ବିରଳତା ଯୋଗୁ ଏଗୁଡ଼ିକ ସଂଗ୍ରହ କରିବା କଷ୍ଟକର ହୋଇଥାଏ । ଯେହେତୁ ଆଦିବାସୀମାନେ ସାଧାରଣତଃ ଅରଣ୍ୟର ଅଗମ୍ୟ ଅଞ୍ଚଳରେ ବସବାସ କରିଥା'ନ୍ତି, ସେମାନଙ୍କଦ୍ୱାରା ଏହି ସଂଗ୍ରହ କାର୍ଯ୍ୟ ସୁବିଧାଜନକ । କୁସୁମ, କରଞ୍ଜ, ମହୁଲ, ନିମ୍ବ, ପୋଲାଙ୍ଗ ଇତ୍ୟାଦି ସଂଗ୍ରହ କରି, ଆଦିବାସୀ ଉନ୍ନୟନ ସଂସ୍ଥା ତରଫରୁ ପ୍ରତିଷ୍ଠିତ କୁଟୀରଶିଳ୍ପ ଜରିଆରେ ସେଥିରୁ ତେଲ ବାହାର କରାଗଲେ ତାହା ଆଦିବାସୀମାନଙ୍କର ଦୈନନ୍ଦିନ ଚାହିଦା ଯଥା— ଖାଇବା ଓ ଦୀପଜାଳିବା ଆଦି ପୂରଣ କରିବା

ସଙ୍ଗେ ସଙ୍ଗେ ବାହାରକୁ ମଧ୍ୟ ବିକ୍ରି ପାଇଁ ପଠାଯାଇପାରନ୍ତା । ଜଙ୍ଗଲରେ ଥିବା ମହୁଲ ଗଛଗୁଡ଼ିକ ଆଦିବାସୀମାନଙ୍କର ପ୍ରିୟ ଗଛ । ଗୋଟିଏ ବଡ଼ ଗଛରୁ ବର୍ଷକୁ ପ୍ରାୟ ଏକ କୁଇଣ୍ଟାଲ ପର୍ଯ୍ୟନ୍ତ ଶୁଖିଲା ଫୁଲ ମିଳିଥାଏ । ଏହି ଫୁଲକୁ ଅଟା କିମ୍ବା ଚାଉଳରେ ମିଶାଇ ସେମାନେ ପିଠା ତିଆରି କରନ୍ତି । ତା'ଛଡ଼ା ଏହାକୁ ରାନ୍ଧି ଦେଶୀମଦ ହାଣ୍ଡିଆ ପ୍ରସ୍ତୁତ କରନ୍ତି । ହାଣ୍ଡିଆ ଆଦିବାସୀମାନଙ୍କର ପ୍ରିୟ ପାନୀୟ ।

ବନଜାତ ଦ୍ରବ୍ୟ ମଧ୍ୟରେ କେନ୍ଦୁପତ୍ର ଅନ୍ୟତମ । କେନ୍ଦୁପତ୍ରରୁ ବିଡ଼ି ତିଆରି ହୋଇଥାଏ । ଜଙ୍ଗଲ ବିଭାଗ ତରଫରୁ ପ୍ରତିବର୍ଷ ଏକ ନିର୍ଦ୍ଦିଷ୍ଟ ସମୟରେ କେନ୍ଦୁପତ୍ର ସଂଗ୍ରହ କରିବା, ସେଗୁଡ଼ିକୁ ଶୁଖେଇବା ଓ ସଜେଇ କରି ବଣ୍ଡିଲ୍ ତିଆରି କରିବା ଇତ୍ୟାଦି କାର୍ଯ୍ୟରେ ଲକ୍ଷ ଲକ୍ଷ ଆଦିବାସୀଙ୍କୁ ନିଯୁକ୍ତି ଦିଆଯାଇଥାଏ । ଏହି କାମ ଅପେକ୍ଷାକୃତ ସହଜ ହୋଇଥିବାରୁ ପିଲାଛୁଆ, ବୁଢ଼ା ବୁଢ଼ୀମାନେ ମଧ୍ୟ ଏହା ଫଳରେ କିଛି ଉପାର୍ଜନ କରିବାକୁ ସକ୍ଷମ ହୁଅନ୍ତି ।

ଓଡ଼ିଶାର ଜଙ୍ଗଲଗୁଡ଼ିକ ବାଉଁଶପାଇଁ ଟିଟାଗଡ଼ କାଗଜ କଳ ଓ ବ୍ରଜରାଜନଗର କାଗଜ କଳକୁ ଲିଜ୍ ସୂତ୍ରରେ ଦିଆଯାଇଛି । ଏହି କମ୍ପାନୀ ତରଫରୁ ଜଙ୍ଗଲକୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଟନ୍ ବାଉଁଶ କଟାଯାଇ ଏବଂ ସେଗୁଡ଼ିକୁ ବଣ୍ଡିଲ୍ କରି ଜଳପଥ ଓ ସ୍ଥଳପଥରେ ସ୍ଥାନାନ୍ତରିତ କରାଯାଉଛି । ଏହି କାର୍ଯ୍ୟରେ ମଧ୍ୟ ପ୍ରତି ବର୍ଷ ଲକ୍ଷ ଲକ୍ଷ ଆଦିବାସୀ କର୍ମନିଯୁକ୍ତି ପାଇଥା'ନ୍ତି । ଏହି ଆଲୋଚନାରୁ ଜଣାଯାଏ, ଜଙ୍ଗଲହିଁ ଆଦିବାସୀମାନଙ୍କର ଜୀବନ ଏବଂ ଜୀବିକା । ଜଙ୍ଗଲଭିତ୍ତିକ କାର୍ଯ୍ୟଗୁଡ଼ିକ ନିୟନ୍ତ୍ରିତ କରାଯାଇପାରିଲେ, ସେମାନଙ୍କୁ ବର୍ଷସାରା କର୍ମନିଯୁକ୍ତି ଦିଆଯାଇ ପାରିବା ସଙ୍ଗେ ସଙ୍ଗେ ଅର୍ଥନୈତିକ ପ୍ରଗତି ଦିଗରେ ସେମାନେ ମଧ୍ୟ ଅଗ୍ରସର ହୋଇପାରିବେ । ସାହୁକାର, ମହାଜନ ଓ ଠିକାଦାରମାନଙ୍କର ଶୋଷଣରୁ ସେମାନଙ୍କୁ ରକ୍ଷା କରାଯାଇପାରିବ । ଯେଉଁ ଆଦିବାସୀ ଆଜି ଟାଙ୍ଗିଆ ଖଣ୍ଡେ କାନ୍ଧରେ ଧରି ଜଙ୍ଗଲକୁ ଯାଇ ଚୋରାଲୁଟରେ ଗଛ କାଟିଆଣୁଛି ତାକୁ ଖାଲି ଧରିପକେଇ ଜୋରିମାନା ଆଦାୟ କରିଦେଲେ ସମସ୍ୟାର ସମାଧାନ ହୋଇଯିବନାହିଁ । ଜୋରିମାନା ଦେବାକୁ ମଧ୍ୟ ତା ପାଖରେ ପଇସାନାହିଁ । କ୍ଷୁଧାହିଁ ସମସ୍ତ ଅନର୍ଥର କାରଣ । ଯେତେବେଳେ ତା ପେଟ ତଥା ତା ପିଲାପିଲିମାନଙ୍କର ପେଟ ଭୋକରେ ଜଳୁଛି, ସେତେବେଳେ କେତେଦିନ ଦଣ୍ଡଦେଇ ତାକୁ ଏ କାମରୁ ନିବର୍ତ୍ତାଇ ହେବ ? ଜଙ୍ଗଲରୁ କାଠଗୋଟାଏ କାଟିଆଣି ବଜାରରେ ବିକି ଦି' ପଇସା ଆଣିଲେ, ତା' ପରିବାର ଗଣ୍ଡାଏ ଖାଇବାକୁ ପାଉଛନ୍ତି । ସେଥିରେ ପୁଣି ଧରାପଡ଼ିଲେ ଜୋରିମାନା ଅଛି । ଯଦି ତାକୁ ଜଙ୍ଗଲ ବିଭାଗ ତରଫରୁ ବର୍ଷସାରାପାଇଁ ନିୟମିତ ଭାବରେ କାମ ଯୋଗାଇ ଦିଆଯିବ ଏବଂ ତା ନିଜର ଜାଳେଣିପାଇଁ ଅଧିକାର ସୂତ୍ରରେ କୂପ୍‌ମାନଙ୍କରୁ ଶୁଖିଲା ଜାଳକାଠ ଦେବାର ସୁଯୋଗ ଦିଆଯିବ ତାହାହେଲେ ସେ କଞ୍ଚାଗଛ ଆଣି କାଠ ଚୋରୀ କରିବ କାହିଁକି ?

ବରଂ ଯୋଉ ହାତ ଦିନେ ଜଙ୍ଗଲ ନଷ୍ଟକରୁଥିଲା, ତାହା କ୍ରମେ ଜଙ୍ଗଲ ରକ୍ଷଣାବେକ୍ଷଣ କରିବାରେ ସାହାଯ୍ୟ କରିବ । ସେମାନଙ୍କ ଭିତରୁ ଶିକ୍ଷା ଦୀକ୍ଷାକୁ ବିଚାରକୁ ନେଇ ଗାର୍ଡ଼, ଜଗୁଆଳ ଆଦି ଜଙ୍ଗଲ ବିଭାଗଦ୍ୱାରା ନିଯୁକ୍ତ କରାଗଲେ, ତାହା ଅଧିକ ଫଳପ୍ରଦ ହେବ ।



# ଓଡ଼ିଶାରେ ପୋଡୁଚାଷ ଓ ବିକଳ୍ପ ବ୍ୟବସ୍ଥା

ଜଙ୍ଗଲ ସଂରକ୍ଷଣ ନିମନ୍ତେ ଅନ୍ୟତମ ସମସ୍ୟା ହେଉଛି 'ପୋଡୁଚାଷ' । ଜଙ୍ଗଲ ପୋଡ଼ି କରି ଏହି ଚାଷ କରାଯାଉଥିବାରୁ ଏହାକୁ କୁହାଯାଏ ପୋଡୁଚାଷ । ଆମ ରାଜ୍ୟର ଫୁଲବାଣୀ, ଗଂଜାମ, କୋରାପୁଟ, କଳାହାଣ୍ଡି, କେଉଁଝର ଓ ସୁନ୍ଦରଗଡ଼ ଜିଲ୍ଲାମାନଙ୍କରେ ଏହି ଆଦିମ ଚାଷପଦ୍ଧତି ବହୁଳ ପରିମାଣରେ ପରିଲକ୍ଷିତ ହୁଏ । ଆଦିବାସୀମାନେ ଗୋଟିଏ ଜମିରେ ଦୁଇ ବା ତିନିବର୍ଷ ଚାଷ କରିବା ପରେ, ଜମିର ଉତ୍ପାଦିକା ଶକ୍ତି କମିଗଲେ, ସେ ସ୍ଥାନ ଛାଡ଼ି ଅନ୍ୟ ଗୋଟିଏ ଜଙ୍ଗଲକୁ ଚାଲିଯା'ନ୍ତି ଓ ତାକୁ କାଟି, ପୋଡ଼ି ସେଠାରେ ପୁଣି ଚାଷବାସ କରନ୍ତି । ପ୍ରତି ଦୁଇ, ତିନି ବର୍ଷ ଅନ୍ତରରେ ସ୍ଥାନ ପରିବର୍ତ୍ତନ ହେଉଥିବାରୁ ଏହାକୁ ଅସ୍ଥାୟୀ ଚାଷ ବା ବଦଳ ଚାଷ ମଧ୍ୟ କୁହାଯାଏ । ଓଡ଼ିଶାର ଲୋକସଂଖ୍ୟାର ଶତକଡ଼ା ୨୩ ଭାଗ ହେଉଛନ୍ତି ଆଦିବାସୀ ସଂପ୍ରଦାୟର । ଏମାନଙ୍କ ଭିତରୁ କନ୍ଧ, କୋୟା, ପରଜା, ବଣ୍ଡା, କୁଟିଆ କନ୍ଧ, ଲାଞ୍ଜିଆ, ସଉରା, ଭୂୟାଁ, ଜୁଆଙ୍ଗ ଆଦି ପ୍ରାୟ ୧୧ଟି ସଂପ୍ରଦାୟର ଆଦିବାସୀମାନେ ପୋଡୁଚାଷ କରିଥା'ନ୍ତି । ନିକଟରେ କରାଯାଇଥିବା ସାଟେଲାଇଟ୍ ସର୍ଭେରୁ ଜଣାପଡ଼େ, ଆମ ରାଜ୍ୟର ମୋଟ ୧ ଲକ୍ଷ ୮୦ ହଜାର ହେକ୍ଟରରୁ ୨ ଲକ୍ଷ ହେକ୍ଟର ଜମି ପୋଡୁଚାଷଦ୍ୱାରା କ୍ଷତିଗ୍ରସ୍ତ ଏବଂ ପ୍ରାୟ ପନ୍ଦରଲକ୍ଷ ଆଦିବାସୀ ପୋଡୁଚାଷ ସହ ସଂପୃକ୍ତ ।

ପ୍ରଥା ଅନୁଯାୟୀ ଗାଁରେ ଗୋଟିଏ ସଭା ଡକାଯାଇ ପୋଡୁଚାଷପାଇଁ ସ୍ଥାନ ନିର୍ଦ୍ଦିଷ୍ଟ କରାଯାଏ । ସାଧାରଣତଃ ପାହାଡ଼ର ଗଡ଼ାଣିଆ ଢାଲୁ ଅଂଚଳକୁ ଏହି କାର୍ଯ୍ୟପାଇଁ ଆଦିବାସୀମାନେ ଅଧିକ ପସନ୍ଦ କରନ୍ତି । ଜାନୁୟାରୀଠାରୁ ମାର୍ଚ୍ଚମାସ ଭିତରେ ଏହି ଜାଗାରୁ ସମସ୍ତ ଗଛଲତା ଓ ବୁଦା କାଟି ଜମି ଉପରେ ପକେଇ ଦିଆଯାଏ । କଟାଯାଇଥିବା ଡାଳ ଓ ଗଛଗୁଡ଼ିକ ଖରାଦିନସାରା ଶୁଖେ । ବର୍ଷାଦିନ ପୂର୍ବରୁ କୌଣସି ଏକ ଶୁଭଦିନ ଦେଖି ଗାଁର ମୁଖିଆ ବା ପୁରୋହିତ ଏହି ଶୁଖିଲା ଡାଳପତ୍ରଗୁଡ଼ିକରେ ନିଆଁଲଗେଇଥା'ନ୍ତି । ସବୁ ଶୁଖିଲା ଡାଳପତ୍ର ଜଳିଗଲା ପରେ ପାଉଁଶକୁ ସମାନ ଭାବରେ ଜମିସାରା ବିଛେଇ ଦିଆଯାଏ । ଚାଷପାଇଁ ସେମାନେ ହଳ, ଲଙ୍ଗଳ ବ୍ୟବହାର କରନ୍ତିନାହିଁ । ବରଂ ମାଟିକୁ କୋଦାଳ ବା କୋଡ଼ି ଅଥବା ମୁନିଆ ଲୁହାଖଣ୍ଡରେ ଖୋଳି, ପ୍ରଥମ ବର୍ଷା ହେବା ପରେ ପରେ ମଂଜି ବୁଣିଦିଅନ୍ତି । ଏହି ଜମିରେ ସେମାନେ ପାହାଡ଼ି ଧାନ, ମକା, କାନ୍ଦୁଲ ଆଦି ଚାଷ କରିଥା'ନ୍ତି । କେନ୍ଦୁଝର ଜିଲ୍ଲାର ଜୁଆଙ୍ଗମାନେ ପ୍ରଥମ ବର୍ଷ ରାଶି ଲଗେଇଥା'ନ୍ତି । ଦ୍ୱିତୀୟ ବର୍ଷ ପାହାଡ଼ି ଧାନ ଏବଂ ତୃତୀୟ ବର୍ଷ କାନ୍ଦୁଲ ବା ଅନ୍ୟ କୌଣସି ଡାଲିଜାତୀୟ ଫସଲ ଲଗେଇଥା'ନ୍ତି । କେତେକ ସ୍ଥାନରେ ପୋଡୁଚାଷ ହେଉଥିବା ଜମିଟିକୁ ଗାଁର କୋଠ ସଂପତ୍ତି ଭାବେ ଧରାଯାଏ ଓ ଚାଷ କାମରେ ସମସ୍ତେ ସହଯୋଗ କରିଥା'ନ୍ତି । ଅନ୍ୟ କେତେକ ସ୍ଥାନରେ ମୂଳ ଜମିଟି କୋଠ ସଂପତ୍ତି ହେଲେ ମଧ୍ୟ ଗାଁର ପ୍ରତ୍ୟେକ ପରିବାରକୁ ଖଣ୍ଡିଏ ଖଣ୍ଡିଏ ଜମି ଚିହ୍ନଟ କରି ଦିଆଯାଏ । ଗୋଟିଏ ଜମିରେ

ଲଗାତର ତିନିବର୍ଷ ପର୍ଯ୍ୟନ୍ତ ଚାଷକଲା ପରେ ଯେତେବେଳେ ଜମିରୁ ଉତ୍ପାଦନ ଯଥେଷ୍ଟ କମିଯାଏ ସେତେବେଳେ ସେମାନେ ଅନ୍ୟ ଗୋଟିଏ ଜଙ୍ଗଲ କାଟି ସଫାକରିବାକୁ ନିର୍ଣ୍ଣୟ କରିଥା'ନ୍ତି ।

ଏହି ପୋଡୁଚାଷଦ୍ୱାରା ପ୍ରତିବର୍ଷ ହଜାର ହଜାର ଏକର ମୂଲ୍ୟବାନ୍ ଜଙ୍ଗଲସଂପଦ ନଷ୍ଟ ହୋଇଥାଏ । କେବଳ ସେତିକି ନୁହେଁ, ପାହାଡ଼ର ଉପରିଭାଗ ଖୋଲାହୋଇଯିବାଦ୍ୱାରା ବର୍ଷାଦିନେ ଅତ୍ୟଧିକ ପରିମାଣରେ ମୃତ୍ତିକାକ୍ଷୟ ଘଟି, ପାହାଡ଼କୁ ଗଙ୍ଗର କରିଦେବା ସଂଗେ ସଂଗେ ନଈ ନାଳର ଗର୍ଭ ପୋଡ଼ିପକାଏ ଓ ଅତ୍ୟଧିକ ବନ୍ୟାର କାରଣ ହୁଏ । ପାହାଡ଼ରୁ ବାହାରିଥିବା ଝରଣାଗୁଡ଼ିକ ମଧ୍ୟ କାଳକ୍ରମେ ଶୁଖିଯାଏ । ଏହି ପୋଡୁଚାଷ ବେଆଇନ ହୋଇଥିଲେ ମଧ୍ୟ ଏବଂ ବହୁ ଜଙ୍ଗଲସମ୍ପଦ ଏହି ପ୍ରଥାଦ୍ୱାରା ନଷ୍ଟ ହେଉଥିଲେ ମଧ୍ୟ, ବାଧ୍ୟବାଧକତା କରି ବା କେବଳ ଆଇନ ପ୍ରଣୟନ କରି ପୋଡୁଚାଷ ବନ୍ଦ କରାଯାଇପାରିବନାହିଁ । କାରଣ ଏହି ପରଂପରା ଆଦିବାସୀମାନଙ୍କର ଜୀବନଯାପନ ପ୍ରଣାଳୀର ଏକ ଅବିଚ୍ଛେଦ୍ୟ ଅଂଶ କହିଲେ ଚଳେ । ରାୟଗଡ଼ା ଜିଲ୍ଲାର ନିୟମଗିରି ପର୍ବତରେ ହେଉଥିବା 'ଡଙ୍ଗରିଆ କନ୍ଧ ଉନ୍ନୟନ' କାର୍ଯ୍ୟକ୍ରମ ଅନୁଧ୍ୟାନ କରିବାର ସୁଯୋଗ ଏ ଲେଖକ ପାଇଛି । ସେଠି ଦେଖାଯାଏ, ପାହାଡ଼ର ତଳଭାଗ ଓ ପାଦଦେଶରେ ଯେଉଁଠି ପୋଡୁଚାଷ କରାଯାଉଥିଲା, ସେଠି ଯୋଜନା କରିଥାରେ ଏବେ ପ୍ରଚୁର ସପୁରି, କଦଳୀ, କମଳା ଓ ପଣସ ଆଦି ଫଳଗଛ ଲଗାଯାଇଛି । ଏଥିରୁ ପ୍ରତ୍ୟେକ ଡଙ୍ଗରିଆ କନ୍ଧ ପରିବାର ବେଶ୍ କିଛି ରୋଜଗାର ମଧ୍ୟ କରୁଛନ୍ତି । କିଂତୁ ତଥାପି ଲକ୍ଷ୍ୟ କରାଯାଇଛି, ସେମାନେ ଲୁଚିଛପି ଯାଇ ପାହାଡ଼ର ଅଗମ୍ୟ ଶିଖର ଦେଶରେ ଖଣ୍ଡିଏ ଖଣ୍ଡିଏ ଜମିରେ ପୋଡୁଚାଷ କରୁଛନ୍ତି । ଏଥିରୁ ମନେହୁଏ, ପୋଡୁଚାଷ ସେମାନଙ୍କର ସାମାଜିକ ସଂସ୍କୃତି ସହ ଓତପ୍ରୋତ ଭାବେ ଜଡ଼ିତ । ସେମାନଙ୍କ ମତରେ, ପୋଡୁଚାଷ ନକଲେ 'ଧରଣୀ ପେନୁ' ବା ପୃଥ୍ୱୀମାତା ରାଗିବ ।

ପ୍ରଥମେ ଅନୁଧ୍ୟାନ କରାଯାଉ ଆଦିବାସୀମାନେ ଦୁଇ ତିନିବର୍ଷ ପରେ ଗୋଟିଏ ଜାଗା ଛାଡ଼ି ଅନ୍ୟ ଗୋଟିଏ ଜାଗାକୁ ଚାଲିଯିବାର କାରଣ କ'ଣ ? ପ୍ରଥମ ବର୍ଷ ପୋଡୁଚାଷୀ ଜଙ୍ଗଲରୁ ଭଲ ଫସଲ ଅମଳ ପାଏ । ଏହାର କାରଣ ହେଲା, ଜମିର ନିଜସ୍ୱ ଉତ୍ପାଦିକା ଶକ୍ତି ଥାଏ ଓ ଜଙ୍ଗଲ ପୋଡ଼ି ବିଛାଯାଇଥିବା ପାଉଁଶ ଜୈବିକ ସାରର କାମ ଦିଏ । କିଂତୁ ପାହାଡ଼ର ଗାଲୁ ଓ ଗଡାଣିଆ ଅଂଚଳରେ ଏହି ଜମି ଥିବାରୁ କ୍ରମେ କ୍ରମେ ବର୍ଷାରେ ମାଟିର ଉପର ଅଂଶ ଧୋଇ ହୋଇଯାଏ । ଦ୍ୱିତୀୟତଃ, ସେମାନେ ଖୋଳିକରି ଚାଷ କରୁଥିବାରୁ ଗହୀରିଆ ଚାଷକରିବା ମଧ୍ୟ ସଂଭବ ହୁଏନାହିଁ । ତେଣୁ ଦ୍ୱିତୀୟ ବର୍ଷକୁ ଉତ୍ପାଦନ ଯଥେଷ୍ଟ କମିଯାଏ । ତୃତୀୟ ବର୍ଷକୁ ସେମାନଙ୍କର ପରିଶ୍ରମ ତୁଳନାରେ ଯଥେଷ୍ଟ ଫସଲ ଅମଳ ହୁଏନାହିଁ । ଫଳତଃ ଅନ୍ୟ ଗୋଟିଏ ଜଙ୍ଗଲର ସଂଧାନରେ ସେମାନେ ଚାଲିଯାଆନ୍ତି ଓ ସଂପୃକ୍ତ ପାହାଡ଼ିଆ ପୋଡୁଚାଷ ଜମିଟି ପୁନର୍ବାର ସେଠିକୁ ଫେରିଆସିବା ପର୍ଯ୍ୟନ୍ତ ପଡ଼ିଆ ପଡ଼େ । ଏହି ପଡ଼ିଆ ପଡ଼ିବାର ସମୟ (fallow period) ଯଦି ୧୫ରୁ ୧୮ ବର୍ଷ ହୋଇପାରନ୍ତା, ଯାହାକି ଅତୀତରେ ସଂଭବ ହେଉଥିଲା, ତେବେ ପୋଡୁଚାଷ ହାନିକାରକ ହୁଅନ୍ତାନାହିଁ । କାରଣ ପନ୍ଦର ବର୍ଷ ଭିତରେ ଏହି

ପୋଡୁ ଜମିରେ ଜଙ୍ଗଲ ପୁନର୍ବାର ଆପେ ଆପେ ଆସିଯାଆନ୍ତା । କିଂତୁ ବର୍ତ୍ତମାନ ପୋଡୁଚାଷୀଙ୍କ ସଂଖ୍ୟା ବଢ଼ିଚାଲିଥିଲେ ମଧ୍ୟ, ପୋଡୁଚାଷ ଜମିର ଆୟତନ ପାଖାପାଖି ଆଗଭଳି ରହିଛି । ଏହାର ଅର୍ଥ ହେଲା ଦୁଇ ତିନିବର୍ଷ ଅନ୍ତରରେ ଚାଷୀ ପୁଣି ପୂର୍ବ ଜମିକୁ ଫେରିଆସୁଛି । ଫଳରେ ବାରଂବାର ମୃତ୍ତିକାକ୍ଷୟ ଘଟି ପାହାଡ଼ର ଗଡ଼ାଣିଆ ଢାଲୁଜମି ନଷ୍ଟହୋଇ ପଥୁରିଆ ତଥା କଙ୍କରିଳ ହୋଇଥାଏ ।

ପ୍ରଚଳିତ ପୋଡୁଚାଷ ପଦ୍ଧତିର ସଂପୂର୍ଣ୍ଣ ନିରାକରଣ ରାତାରାତି ସଂଭବନୁହେଁ କି ଆବଶ୍ୟକ ମଧ୍ୟ ନୁହେଁ । କାରଣ ପାହାଡ଼ ତଳେ ଆବଶ୍ୟକ ପରିମାଣର ସମତଳ ଜମି ପାଇବାର ସମସ୍ୟା ଏବଂ ପୋଡୁଚାଷକୁ ଜୀବିକା କରି ଚଳୁଥିବା ଆଦିବାସୀମାନଙ୍କୁ ଅନ୍ୟ ଉପାର୍ଜନ ପନ୍ଥା ଯୋଗାଇଦେବା ଆଦି ସମସ୍ୟା ଏଥି ସହିତ ଜଡ଼ିତ ଅଛି । ତେଣୁ ପୋଡୁଚାଷର ବିକଳ୍ପ ବ୍ୟବସ୍ଥା କଥା ଚିନ୍ତାକଲାବେଳକୁ ପ୍ରଥମେ ଏହି ପ୍ରକାରର ଚାଷଜମିର ପୁନରୁଦ୍ଧାର, ସଂରକ୍ଷଣ ତଥା ପରିବର୍ଦ୍ଧନ କଥା ମନକୁ ଆସିଥାଏ । ପାହାଡ଼ର ସ୍ୱଳ୍ପ ଢାଲୁରେ ଏବଂ ଜଙ୍ଗଲ ଉପକଣ୍ଠରେ ସାମାନ୍ୟ ସମତଳ ଜାଗା ଦେଖି, ସେମାନଙ୍କୁ ସ୍ଥାୟୀ କୃଷି କରିବାପାଇଁ ପ୍ରବର୍ତ୍ତାଯାଇପାରେ । ପାହାଡ଼ର ଢାଲୁକୁ ପାହାଚ ପାହାଚ କରି କାଟି ସେଠି ପାହାଚ ଚାଷକରିବାପାଇଁ ଓ ଗହୀରିଆ ଭାବରେ ଚାଷକରିବାପାଇଁ ଆବଶ୍ୟକୀୟ କୃଷି ଉପକରଣ ଓ ଆର୍ଥିକ ସମ୍ବଳ ଯୋଗାଇ ଦିଆଯାଇପାରେ । ପ୍ରତିବର୍ଷ ଚାଷକରିବା ପୂର୍ବରୁ ଜମିରେ ଦେବାପାଇଁ ରାସାୟନିକ ସାର ଓ ଉନ୍ନତ ଧରଣର ବିହନ ସେମାନଙ୍କୁ ଯୋଗାଇ ଦିଆଯିବ । ଏତଦ୍‌ବ୍ୟତୀତ ଜମିର ଉପରମୁଣ୍ଡରେ ବନ୍ଧ କରି, ପାହାଡ଼ରୁ ଗଡ଼ିଆସୁଥିବା ବର୍ଷାପାଣିକୁ ଅଟକାଇ ରଖି ଆବଶ୍ୟକସ୍ଥଳେ ଜଳସେଚନର ସୁବିଧା କରାଯାଇ ପାରିବ । ଏହାହେଲେ ସବୁବର୍ଷ ସମାନ ପରିମାଣରେ ଫସଲ ସେମାନଙ୍କୁ ଜମିରୁ ମିଳନ୍ତା ଓ ସେମାନେ ସ୍ଥାୟୀ କୃଷି ଛାଡ଼ି ଅନ୍ୟ ସ୍ଥାନକୁ ଯିବାକୁ ଆଗ୍ରହ ପ୍ରକାଶ କରନ୍ତେ ନାହିଁ ।

''ପୁନର୍ବସତି ଓ ଜମି ଆବାଦୀକରଣ'' ନାମରେ ପରିଚିତ ଏହି ଯୋଜନାଟି, ୧୯୪୮-୪୯ ମସିହାରେ ସରକାରଙ୍କଦ୍ୱାରା ପ୍ରଚଳନ କରାଯାଇଥିଲା ଏବଂ ଏହି ଯୋଜନାରେ ପ୍ରତିଟି ଆଦିବାସୀ ପରିବାରକୁ ୫ ଏକର ପର୍ଯ୍ୟନ୍ତ ଆବାଦଯୋଗ୍ୟ ଚାଷଜମି ଦିଆଯିବା ସଙ୍ଗେ ସଙ୍ଗେ ଜମିକୁ ଆବାଦ କରିବାପାଇଁ ଓ ବାସଗୃହ ନିର୍ମାଣପାଇଁ ଆର୍ଥିକ ସହାୟତା ମଧ୍ୟ ଦିଆଯାଉଥିଲା । ହଳ, ଲଙ୍ଗଳ, ବଳଦ, କୃଷି ଉପକରଣ ଓ ବିହନ ଆଦି ମାଗଣାରେ ମିଳୁଥିଲା । କିଂତୁ ଏହି ଯୋଜନା ବିଶେଷଭାବେ ସଫଳ ହୋଇପାରିଲା ନାହିଁ; କାରଣ ପାହାଡ଼ ତଳଦେଶରେ ଆବଶ୍ୟକତା ମୁତାବକ ଚାଷଜମି ମିଳିଲାନାହିଁ । ପୋଡୁଚାଷରୁ ଆଦିବାସୀମାନେ ଧାନ, ମାଣ୍ଡିଆ, ମକା, କାନ୍ଦୁଲ, ରାଶି, ବରଗୁଡ଼ି ଆଦି ଆଠ, ଦଶ ପ୍ରକାରର ଫସଲ ଗୋଟିଏ ଜମିରୁ ପାଉଥିଲେ । କିଂତୁ ସ୍ଥାୟୀ କୃଷିକୁ ଗୋଟିଏ ଜମିରୁ ଏକସମୟରେ ଏକମାତ୍ର ଫସଲ ମିଳିଲା, ଯାହାକି ସେମାନଙ୍କର ନିତିଦିନିଆ ଚଳଣି ସହିତ ଖାପଖାଇଲାନାହିଁ । ଦ୍ୱିତୀୟତଃ, ପୁନର୍ବସତି କଲୋନୀଗୁଡ଼ିକରେ ଆବଶ୍ୟକୀୟ ମୌଳିକ ସୁବିଧା ଯୋଗାଇଦିଆଗଲାନାହିଁ । ଆସାମରେ ପୋଡୁଚାଷକୁ 'ଝୁମ୍' କୁହାଯାଏ । ଆସାମୀୟ ଭାଷାରେ 'ଝୁମ୍' ଅର୍ଥ ସମୂହ । ତେଣୁ

ପୋଡୁଚାଷର ଅର୍ଥ ହେଉଛି 'ସମୂହ ଚାଷ' । ଏହାକୁ ସାମୂହିକ ଭାବେ କରାଯାଇଥାଏ । ଏପରି ଏକ ସାମୂହିକ ପରଂପରାରୁ ହଠାତ୍ ଏକ ବ୍ୟକ୍ତିକୈନ୍ଦ୍ରିକ ପରଂପରାକୁ ଫେରିଆସିବାକୁ ଅନେକ ଆଦିବାସୀ ପରିବାର ଗ୍ରହଣ କରିପାରିଲେନାହିଁ । ଏହିସବୁ କାରଣରୁ ଆଦିବାସୀମାନେ ପୁନର୍ବସତି କଲୋନୀ ଛାଡ଼ି ପୁନର୍ବାର ବଣପାହାଡ଼ଘେରା ଜଙ୍ଗଲକୁ ଫେରିଗଲେ ।

ପୋଡୁଚାଷର ଦ୍ୱିତୀୟ ବିକଳ୍ପ ହେଉଛି, ପାହାଡ଼ ଗାଲୁରେ ଫଳବୃକ୍ଷ ରୋପଣ । ଫଳଗଛ ପ୍ରତି ଆଦିବାସୀମାନଙ୍କର ଆନ୍ତରିକତା ଓ ଦୁର୍ବଳତା ରହିଛି । ଆମ୍ବ, ପଣସ, ମହୁଲ ଆଦି ଗଛରୁ ସେମାନେ ବର୍ଷକର ଛଅମାସ ଖାଦ୍ୟ ଯୋଗାଡ଼ କରିଥା'ନ୍ତି । ପାହାଡ଼ ଗାଲୁରେ ସ୍ଥାୟୀ କୃଷି କରିବା ବ୍ୟୟସାପେକ୍ଷ । କିଂତୁ ସେହି ସବୁ ଜମିରେ ଫଳଗଛ ଲଗାଯାଇପାରେ । ଆଦିବାସୀମାନଙ୍କୁ ପୋଡୁଚାଷ ସହିତ ଚାଷ ଜମିରେ କିଛି କିଛି ଫଳଗଛ ଲଗାଇବାକୁ ଉତ୍ସାହିତ କରାଯାଏ । ପଣସ, ତେନ୍ତୁଳି, ମହୁଲ, ଆମ୍ବ ଆଦି ଫଳଗଛଗୁଡ଼ିକ ଯେତେବେଳେ ବଡ଼ ହୋଇଯାଏ ସେତେବେଳେ ଗଛ ଛାଇରେ ଆଉ ଚାଷ କରିବା ସଂଭବ ହୁଏନାହିଁ । ତେଣୁ ସେହି ସମୟରୁ ସେମାନେ ଲଗାଇଥିବା ଫଳଗଛ ଉପରେ ନିର୍ଭର କରିବେ ବୋଲି ଆଶା କରାଯାଏ । ଏହାବ୍ୟତୀତ ସରକାରଙ୍କ ଅର୍ଥନୈତିକ ଥଇଥାନ କାର୍ଯ୍ୟକ୍ରମରେ ହଜାର ହଜାର ଏକର ପାହାଡ଼ିଆ ଜମି କାଜୁବାଦାମ ଲଗେଇ ଆବାଦ କରି ଆଦିବାସୀ ପରିବାରଙ୍କ ଭିତରେ ବଣ୍ଟନ କରାଯାଇଛି; ଯେଉଁଥିରୁ ସେମାନେ ସ୍ଥାୟୀ ଜୀବିକା ଅର୍ଜନ କରିପାରିବେ ଏବଂ ଆଉ ପୋଡୁଚାଷ କରିବାକୁ ମନ ବଳାଇବେନାହିଁ । ଫଳଗଛ ପ୍ରତି ଆଦିବାସୀଙ୍କ ଦୁର୍ବଳତାକୁ ପାଥେୟ କରି, ଜଙ୍ଗଲ ବିଭାଗ ତରଫରୁ ମଧ୍ୟ ଅତୀତରେ ଏକ ବିକଳ୍ପ ବ୍ୟବସ୍ଥା ପ୍ରବର୍ତ୍ତନ କରାଯାଇଥିଲା । ତାହା ହେଉଛି– ପାହାଡ଼ର ନିମ୍ନ ଗାଲୁ ଅର୍ଥାତ୍ ଏକ-ତୃତୀୟାଂଶ ତଳ ଭାଗକୁ ପାହାଚ ଚାଷ କରିଥାରେ, ସାର ପ୍ରୟୋଗ ଓ ଜଳସେଚନ ଆଦି ବ୍ୟବସ୍ଥାସହ ସ୍ଥାୟୀ କୃଷି ପ୍ରବର୍ତ୍ତନ କରାଯାଇପାରେ । ଦକ୍ଷିଣ ଓଡ଼ିଶାର ସଉରାମାନେ ଏହି ଧରଣର କୃଷି କରିଥା'ନ୍ତି । ପାହାଡ଼ର ମଝି ତୃତୀୟାଂଶରେ ଫଳଗଛ ଲଗାଯିବା ସଂଗେ ସଂଗେ, ଦୁଇଧାଡ଼ି ଗଛ ମଝିରେ ଡାଲିଜାତୀୟ ଗଛ ଓ ଘାସ ଆଦି ଚାଷ କରାଯାଇପାରେ । ଏହା ଫଳରେ ସାମୟିକ ଚାରଣର ସୁବିଧା ଯୋଗାଇଦେଇ ଆଦିବାସୀମାନଙ୍କୁ ପଶୁପାଳନ ଧନ୍ଦାରେ ମଧ୍ୟ ଥଇଥାନ କରାଯାଇପାରିବ । ପାହାଡ଼ର ଉପର ତୃତୀୟାଂଶ ଯେଉଁଠି ଗଡ଼ାଣି ଖୁବ୍ ତୀକ୍ଷ୍ଣ, ସେଠି ଜଙ୍ଗଲ ସୃଷ୍ଟି କରାଯିବ ।

ତୃତୀୟ ବିକଳ୍ପ ବ୍ୟବସ୍ଥା ହେଉଛି 'କୃଷିଭିତ୍ତିକ ବନୀକରଣ ବା ଜଙ୍ଗଲ ଚାଷ ମାଧ୍ୟମରେ ଥଇଥାନ । ପୋଡୁଚାଷ ସହିତ ସମାନ୍ତରାଳ ଭାବରେ ଟଙ୍ଗୟା (Tanguya) ଚାଷପଦ୍ଧତି ଅନୁସରଣ କରି ଜଙ୍ଗଲ ଜାତୀୟ ଗଛ ଲଗାଯାଇପାରେ । ଉତ୍ତର ପ୍ରଦେଶର ଗୋରଖପୁର ଓ ପଶ୍ଚିମବଙ୍ଗର 'ସୁଖନା' ଅଞ୍ଚଳରେ ଅତୀତରେ ଏହା ପରୀକ୍ଷା କରାଯାଇ ବେଶ୍ ଫଳପ୍ରଦ ପ୍ରମାଣିତ ହୋଇଛି । ଏହି ପଦ୍ଧତି ଅନୁସାରେ କଂଟ୍ରାକ୍‌ଟର କୂପ୍ କାମ ସାରିଲା ପରେ, କେବଳ ବଡ଼ ବଡ଼ ଗଛଗୁଡ଼ିକ ନେଇଯାଇ ଡାଳପତ୍ର ସବୁ ସେମିତି ଛାଡ଼ିଦେଇ ଯିବ । ତା'ପରେ ଏହି ଜମିକୁ ଜଙ୍ଗଲ ବିଭାଗ ତରଫରୁ ଗୋଟିଏ ଆଦିବାସୀ ଦଳଙ୍କୁ ଦିଆଯିବ । ସେମାନେ ଶୁଖିଲା ଡାଳପତ୍ରରୁ କିଛି ନିଜର ଜାଳେଣିପାଇଁ ରଖି ବାକିତକ ସେଇଠି ନିଆଁଲଗେଇ ଦେବେ । ପ୍ରଥମ

ବର୍ଷ ସେମାନେ ବିଶେଷକରି ଧାନ ଚାଷ କରନ୍ତି । ଦ୍ୱିତୀୟ ବର୍ଷକୁ ଆବଶ୍ୟକୀୟ ବ୍ୟାବଧାନରେ (୧୨ଫୁଟ ବା ୧୮ ଫୁଟ) ସିଆର କରି ସେଥିରେ ସାଗୁଆନ୍ କିଂବା ଅନ୍ୟ କୌଣସି ଜଙ୍ଗଲ ବିଭାଗ ତରଫରୁ ଯୋଗାଇ ଦିଆଯାଇଥିବା ଗଛ ଲଗେଇବେ ଓ ସିଆର ମଝିରେ ଥିବା ।ଗାରେ ନିଜପାଇଁ ଡାଲିଜାତୀୟ ଫସଲ ଚାଷ କରିଥା'ନ୍ତି । ଜଙ୍ଗଲ ଗଛଗୁଡ଼ିକର ରୋପଣ, ରକ୍ଷଣାବେକ୍ଷଣ ଓ ମରିଗଲେ ଅନ୍ୟ ଚାରା ଆଣି ଲଗେଇବାର ଦାୟିତ୍ୱ ସେମାନଙ୍କର । ତୃତୀୟ ବର୍ଷକୁ ଧାନ ପରିବର୍ତ୍ତେ କାନ୍ଦୁଲ କିଂବା ମକା ଚାଷ ଅଧିକ ଫଳପ୍ରଦ । ଚତୁର୍ଥ, ପଞ୍ଚମ ବର୍ଷରେ ସେମାନଙ୍କୁ ନୂଆକରି ଅନ୍ୟ ଗୋଟିଏ ଜାଗା ଚାଷ କରିବାକୁ ଦିଆଯାଏ; କାରଣ ଜଙ୍ଗଲ ଗଛଗୁଡ଼ିକ ଏ ଭିତରେ ହାରାହାରି ତିନିଫୁଟରୁ ପାଞ୍ଚଫୁଟ ହୋଇଯାଇଥାଏ । ଏହାସତ୍ତ୍ୱେ ପୂର୍ବ ଜମିଟିରେ ଥିବା ଗଛଗୁଡ଼ିକର ରକ୍ଷଣାବେକ୍ଷଣ ଦାୟିତ୍ୱ ସେମାନଙ୍କର ଅଟେ । ଏହି ସମୟରେ ସେମାନେ ପୁରୁଣା ଜାଗାରେ ଅଦା, ହଳଦୀ ଆଦି ଚାଷ କରନ୍ତି । କାରଣ ଏହି ଫସଲ ଅନ୍ୟ ଗଛର ଛାଇରେ ମଧ ବଢ଼ିପାରେ । 'ଟଙ୍ଗାୟା' ପଦ୍ଧତିରେ ଆଦିବାସୀମାନଙ୍କର ପୋଡୁଚାଷ ପ୍ରଥା ଅବ୍ୟାହତ ରହିବା ସଙ୍ଗେ ସଙ୍ଗେ ବିନା ଖର୍ଚ୍ଚରେ ପ୍ରତିବର୍ଷ ଶହ ଶହ ଏକର ଫଳପ୍ରଦ 'ପ୍ଲାଣ୍ଟେସନ୍' ମଧ ଉତୁରିଯାଇପାରିବ ।

ରୟ ବର୍ମନ କମିଟି ରିପୋର୍ଟ ଅନୁସାରେ କେବଳ କୃଷିଭିତ୍ତିକ ଜଙ୍ଗଲ ଚାଷ ପ୍ରଣାଳୀ ଆଦିବାସୀମାନଙ୍କର ପୋଡୁଚାଷ ପ୍ରତି ଥିବା ମାନସିକ ଦୁର୍ବଳତାକୁ ପୂରଣ କରିପାରିବ । ଆମ ରାଜ୍ୟର ସାମାଜିକ ବନୀକରଣ ଯୋଜନାର ଦ୍ୱିତୀୟ ପର୍ଯ୍ୟାୟରେ ଆଦିବାସୀ ବହୁଳ ଜିଲ୍ଲା ମାନଙ୍କରେ ପୋଡୁ ଜମିକୁ ପୁନରୁଦ୍ଧାର କରିବା ନିମନ୍ତେ 'ଗରିବ ଭୂମିହୀନଙ୍କପାଇଁ ବୃକ୍ଷ ଚାଷ' କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା । ଯେଉଁ ଆଦିବାସୀ ଗାଁଟି ଏହି କାର୍ଯ୍ୟକ୍ରମପାଇଁ ବଛାଯିବ, ସେହି ଗାଁର ସମସ୍ତ ପରିବାରଙ୍କୁ ଉପଭୋକ୍ତା ଭାବରେ ନିଆଯିବ ଏବଂ ପ୍ରତିଟି ପରିବାରକୁ ଅଧହେକ୍ଟରେ ସରକାରୀ ଜମି ପାହାଡ଼ ଢାଲୁରେ ଯୋଗାଇଦିଆଯିବ । ସେଥିରେ ସେମାନେ ୪ ମିଟର ଛଡ଼ାରେ ଧାଡ଼ି ଧାଡ଼ି କରି ଜଙ୍ଗଲ ସୃଷ୍ଟିପାଇଁ ଗଛ ଲଗାଇବେ । ଦୁଇଧାଡ଼ି ଗଛ ମଝିରେ ଥିବା ଜମିରେ ଚାଷବାସ କରିବେ । ବିହନ, ସାର, ହଳକରିବା ଖର୍ଚ୍ଚ ଓ ଗଛ ଲଗାଇବାପାଇଁ ସମସ୍ତ ଆନୁଷଙ୍ଗିକ ବ୍ୟୟବରାଦ ରାଜ୍ୟ ବନ ବିଭାଗ ବହନ କରିବେ । କିଂତୁ କୃଷିରୁ ଉତ୍ପାଦିତ ଫସଲ ଓ ଗଛ ବିକ୍ରିରୁ ଲବ୍‌ଧ ସମସ୍ତ ଧନ ଉପଭୋକ୍ତା ଆଦିବାସୀ ପରିବାର ପାଇବେ । ଆଦିବାସୀ ପରିବାରପାଇଁ ଉପାର୍ଜନର ମାଧ୍ୟମ ଯୋଗାଇଦେଇ, ସେମାନଙ୍କୁ ଦାରିଦ୍ର୍ୟ ସୀମାରେଖା ତଳୁ ଉପରକୁ ଉଠାଇହେବ । ସାମାଜିକ ବନୀକରଣ ଯୋଜନାର ପ୍ରଥମ ପର୍ଯ୍ୟାୟରେ ଏହିପରି ୨୧୦୦ ପରିବାରଙ୍କୁ ଥଇଥାନ କରାଯାଇଛି ଓ ଦ୍ୱିତୀୟ ପର୍ଯ୍ୟାୟରେ ମୋଟ ୭୫୦୦ ଆଦିବାସୀ ପରିବାରକୁ ଥଇଥାନ କରାଯିବାର ଲକ୍ଷ୍ୟ ରଖାଯାଇଥିଲା । ମନେହୁଏ, ପୋଡୁଚାଷର ଏହାହିଁ ଏକ ସଫଳ ବିକଳ୍ପ ବ୍ୟବସ୍ଥା ହୋଇପାରେ ।



# ମାନସିକ ବିକାଶ ଓ ଆଦିବାସୀ ଉନ୍ନୟନ

ଆଦିବାସୀମାନଙ୍କର ସାଂସ୍କୃତିକ ଓ ଅର୍ଥନୈତିକ ଜୀବନଧାରା, ଜଙ୍ଗଲ ଓ ତା'ର ଅର୍ଥନୀତି ସହ ଘନିଷ୍ଠଭାବେ ଜଡ଼ିତ । ଭିନ୍ନ ଭିନ୍ନ ଗଛ, ଲତା ଓ ପାହାଡ଼ ସହିତ ଜଡ଼ିତ କାହାଣୀ ହେଉ ବା କୁସଂସ୍କାର ହେଉ, ସେମାନଙ୍କର ଧର୍ମଗତ ପରମ୍ପରା ଗତ ବିଶ୍ୱାସ ହେଉ ବା ଅନ୍ଧବିଶ୍ୱାସ ହେଉ, ତାହା ଯୁଗଯୁଗଧରି ଅରଣ୍ୟ, ଗଛ, ଲତା, ପାହାଡ଼, ପର୍ବତ ତଥା ପ୍ରକୃତି ସହିତ ଆଦିବାସୀମାନଙ୍କ ମଧ୍ୟରେ ଏକ ସୁସଂଗଠିତ ସମନ୍ୱୟ ରକ୍ଷାକରିବାକୁ ସମର୍ଥ ହୋଇଛି । ସାମାଜିକ, ଧର୍ମଗତ ଓ ଅର୍ଥନୈତିକ ଦୃଷ୍ଟିକୋଣରୁ ରହିଆସିଥିବା ଏହି ସୁସଂପର୍କକୁ ପ୍ରତ୍ୟେକ ଗଭୀରଭାବେ ଉପଲବ୍ଧି କରିଥିଲେ ମଧ୍ୟ ଆଦିବାସୀ ଉନ୍ନୟନ ଯୋଜନା ଓ କାର୍ଯ୍ୟକ୍ରମରେ ଏହା ଠିକ୍‌ରୂପେ ପ୍ରତିଫଳିତ ହୋଇପାରିନାହିଁ । ଏହି କାରଣରୁ ଆଦିବାସୀମାନଙ୍କର ଅର୍ଥନୀତି ଓ ଜଙ୍ଗଲର ଅର୍ଥନୀତି ପରସ୍ପରଠାରୁ କ୍ରମଶଃ ଦୂରେଇ ଯିବାରେ ଲାଗିଛି ଏବଂ ଅରଣ୍ୟ ଓ ଆଦିବାସୀ ଉଭୟେ ଏହାର କୁପ୍ରଭାବର ଶିକାର ହୋଇଛନ୍ତି । କେତେକ କ୍ଷେତ୍ରରେ ପରିଣାମ ସ୍ୱରୂପ ଜଙ୍ଗଲ ସଂପଦ ଧ୍ୱଂସ ପାଇବାକୁ ଲାଗିଛି ଏବଂ ଅନ୍ୟକ୍ଷେତ୍ରରେ ଆଦିବାସୀମାନଙ୍କର ଅର୍ଥନୀତି ଓ ଜୀବନଧାରା ବିପର୍ଯ୍ୟସ୍ତ ହୋଇପଡ଼ିଛି । ଯେଉଁ ଆଦିବାସୀ ସଂପ୍ରଦାୟ ପାହାଡ଼ ପର୍ବତର ଅଗମ୍ୟ ଅଞ୍ଚଳରେ ବାସକରନ୍ତି, ସେମାନଙ୍କର ସାମାଜିକ ଓ ଜୈବିକ ଆବଶ୍ୟକତା ଖୁବ୍ ସୀମିତ । ଅଥଚ ସେମାନଙ୍କ ଚାରିପଟେ ପ୍ରଚୁର ପ୍ରାକୃତିକସଂପଦ, ଯାହାକି ସେମାନଙ୍କର ମୌଳିକ ଆବଶ୍ୟକତା ମେଣ୍ଟାଇବାପାଇଁ ଯଥେଷ୍ଟ । ଏ ଦୃଷ୍ଟିରୁ ସେମାନଙ୍କୁ ଆମେ ଦରିଦ୍ର ବୋଲି ଆଖ୍ୟାୟିତ କରିବା କେତେଦୂର ସମୀଚୀନ ? ସେମାନେ ଆଜିପର୍ଯ୍ୟନ୍ତ ଦେଣନେଣ (Barter system) କାରବାରରେ ବିଶ୍ୱାସ କରନ୍ତି । ଅର୍ଥାତ୍ କିଛି ଜିନିଷ ବଦଳ ଦେଇ, ଅନ୍ୟ କିଛି ଜିନିଷ ଆଣିବା ସେମାନଙ୍କର ଚଳଣି । ତେଣୁ ବର୍ତ୍ତମାନର ଟଙ୍କାପଇସା ସେମାନଙ୍କପାଇଁ ମୂଲ୍ୟହୀନ ଏବଂ ସେହି କାରଣରୁ ଆର୍ଥିକ ମାନଦଣ୍ଡରେ ସେମାନଙ୍କର ଆୟବ୍ୟୟକୁ ମାପି କୌଣସି ସିଦ୍ଧାନ୍ତରେ ପହଞ୍ଚିବା ମଧ୍ୟ ପ୍ରମାଦପୂର୍ଣ୍ଣ ।

ଆଦିବାସୀମାନେ ଲଜ୍ଜା ନିବାରଣପାଇଁ ଅଳ୍ପ ଲୁଗା ବ୍ୟବହାର କରିଥା'ନ୍ତି । ଅନେକ ଆଦିବାସୀ ସଂପ୍ରଦାୟର ସ୍ତ୍ରୀମାନେ ନିଜ ଶରୀରର ଉପରିଅଂଶ ବସ୍ତ୍ରଦ୍ୱାରା ଆବୃତ କରନ୍ତି ନାହିଁ । ଏହା ସେମାନଙ୍କର ଦାରିଦ୍ର୍ୟ ବା ଅଭାବର ପରିଚାୟକନୁହେଁ, ବରଂ ଯୁଗ ଯୁଗ ଧରି ଉଲଗ୍ନ ପ୍ରକୃତି ସହିତ ମୁକ୍ତ ଭାବରେ ନିଜକୁ ସଂପୃକ୍ତ କରାଇନେଇଥିବାର ପ୍ରମାଣ । ଆମେ ଯେପରି ସେମାନଙ୍କର ବେଶ, ପୋଷାକ ଦେଖି ନାକଟେକୁଛେ, ସେମାନେ ମଧ୍ୟ ଆମର ପୋଷାକପତ୍ର ଦେଖି ଆଶ୍ଚର୍ଯ୍ୟ ହେଉଥିବେ । ଏଠି ପ୍ରଶ୍ନଉଠେ, ଗୋଟିଏ ସରଳ, ସୀମିତ ଆଶା, ଆକାଂକ୍ଷାର ସମାଜ ଭିତରେ ରହି ଆଦିବାସୀଟିଏ ଯଦି ଅଳ୍ପ ପରିଶ୍ରମ କରି ତା' ପେଟପାଇଁ ଗଣ୍ଡାଏ ଦାନା ଯୋଗାଡ଼ କରିପାରିଲା ତେବେ ସେ ଅଧିକ ପରିଶ୍ରମ କରି ଅଧିକ ଉତ୍ପାଦନ

କରିବ କାହିଁକି ? ତା'ଛଡ଼ା ଆକସ୍ମିକ ବିପଦ ଆପଦରେ ଯାହା ଭରସା ହେବାପାଇଁ ତା'ର ଚିରଦିନର ବଂଧୁ ଜଂଗଲ ରହିଛି । ଏଥିରେ ଯଦି ସିଏ ତା'ର ଅବସର ସମୟ ଆନନ୍ଦ ଉଲ୍ଲାସରେ, ନାଚ ଗୀତରେ ଅବା ଭୋଜିଭାତରେ କଟେଇଲା, ତା'ହେଲେ ଅଳସୁଆ କହିବା ସମୀଚୀନ ହେବକି ?

ଓଡ଼ିଶାରେ ଆଦିବାସୀଙ୍କର ସଂଖ୍ୟା 59,15,067 ଅର୍ଥାତ୍ ମୋଟ ଲୋକସଂଖ୍ୟାର ପ୍ରାୟତଃ ଏକ-ଚତୁର୍ଥାଂଶ ହେଉଛନ୍ତି ଆଦିବାସୀ ସଂପ୍ରଦାୟ । ଏମାନଙ୍କୁ ବାଦ୍‌ଦେଇ ପ୍ରଦେଶର ସର୍ବାଙ୍ଗୀନ ଉନ୍ନତି ବା ପ୍ରଗତି ଆଦୌ ସମ୍ଭବନୁହେଁ । କିନ୍ତୁ ଏହାର ଅର୍ଥ ନୁହେଁ ଯେ, ସେମାନଙ୍କର ପାରଂପରିକ ରୀତି, ନୀତି, ଚଳଣି, ଖାଦ୍ୟପେୟ, ଆଚାର, ବ୍ୟବହାର, ସଂସ୍କୃତି ଓ ବିଶ୍ୱାସକୁ ପୂରାପୂରି ବଦଳେଇ ଦେଇ ଆଧୁନିକ ସଭ୍ୟତାର ଗୋଟିଏ ଗୋଟିଏ ମୁଖା ସେମାନଙ୍କୁ ପିନ୍ଧାଇ ଦେଲେ ପ୍ରଗତି ହୋଇଗଲା ବୋଲି କୁହାଯିବ । ଏହାଫଳରେ ଯେଉଁ କେତେଜଣ ଆଦିବାସୀ ଯୁବକ ଆଜିକାଲି ପାଠଶାଠ ପଢ଼ି ଉଚ୍ଚଶିକ୍ଷିତ ହୋଇ ଭଲ ଚାକିରି କରୁଛନ୍ତି, ଆଧୁନିକ ସଭ୍ୟତାର ସ୍ୱାଦ ଚାଖୁଛନ୍ତି ସେମାନେ କ୍ରମଶଃ ସେମାନଙ୍କର ଜାତି ଭାଇଙ୍କଠାରୁ ଦୂରେଇଯାଉଛନ୍ତି ।

ବ୍ରିଟିଶ୍ ରାଜତ୍ୱ ସମୟରେ ପ୍ରଥମକରି ଆଦିବାସୀ ଉନ୍ନୟନପାଇଁ ପଦକ୍ଷେପ ନିଆଗଲା । ସେମାନେ ପୃଥକ୍‌କରଣ ପଦ୍ଧତିଭିତ୍ତିରେ ଛୋଟ ଛୋଟ ଆଦିବାସୀ ବ୍ଲକ୍‌ଗୁଡ଼ିକୁ ଅଲଗା ଅଲଗା ରଖି ତା'ପାଇଁ ଅଲଗା ଅଲଗା ନୀତି ନିୟମ ପ୍ରଣୟନ କରୁଥିଲେ । କିନ୍ତୁ ସ୍ୱାଧୀନତା ପରେ ସ୍ୱାଧୀନ ଭାରତର ସରକାର ଯେଉଁ ପନ୍ଥା ଅନୁସରଣ କଲେ, ତାହା ହେଲା ସମନ୍ୱୟର ପନ୍ଥା ।

କିନ୍ତୁ ଦୁଃଖର କଥା, ବର୍ତ୍ତମାନ ଯେଉଁସବୁ ସରକାରୀ ଅନୁଷ୍ଠାନ ଓ କର୍ମଚାରୀମାନେ ଆଦିବାସୀ ଉନ୍ନୟନ ସହିତ ସଂପୃକ୍ତ ସେମାନଙ୍କର ଅନଭିଜ୍ଞତା, ଅସାଧୁତା ଓ ସର୍ବୋପରି ସେମାନଙ୍କ ଭିତରେ ଆନ୍ତରିକତା ତଥା ସେବା ମନୋବୃତ୍ତିର ପ୍ରଭୂତ ଅଭାବ ପରିଲକ୍ଷିତ ହେଉଛି । ଅପରପକ୍ଷରେ ସେହି ଅଂଚଳରେ କାମ କରୁଥିବା ମିସ୍‌ନାରୀ ଅନୁଷ୍ଠାନମାନେ ଆଦିବାସୀମାନଙ୍କ ଭିତରେ ନିଜକୁ ଖାପଖୁଆଇ ପାରିବା ଫଳରେ ସରଳବିଶ୍ୱାସୀ ଆଦିବାସୀମାନଙ୍କର ଅକୁଣ୍ଠିତ ବିଶ୍ୱାସ ସେମାନେ ପାଇପାରୁଛନ୍ତି । ମାତ୍ର ଆମେ ଆଦିବାସୀଙ୍କୁ ଆମ ସହିତ ସମାନ ସମତଳରେ ନରଖି ବରଂ ଏକ ନିମ୍ନ ସମତଳରେ ରଖି, ତାକୁ ଟାଣି ଓଟାରି ଉପରକୁ ଉଠାଇବାକୁ ଚେଷ୍ଟା କରୁଛୁ । ଏହାଫଳରେ ଆମେ ତା'ର ଆତ୍ମବିଶ୍ୱାସକୁ କୁଠାରାଘାତ କରୁଛେ ।

ପ୍ରକୃତରେ ଦେଖିବାକୁଗଲେ ଜଣେ ଆଦିବାସୀର ନିଜସ୍ୱ ବ୍ୟକ୍ତିଗତ ବା ପାରିବାର ଶକ୍ତି ତାହା ଶାରୀରିକ ହେଉ ବା ମାନସିକ ହେଉ, ଅନେକ କ୍ଷେତ୍ରରେ ଆମ ସମାଜର ଅନେକଙ୍କର ନିଜସ୍ୱ ବ୍ୟକ୍ତିଗତ ଦକ୍ଷତା ତଥା ପାରିବାର ଶକ୍ତିଠାରୁ ଯଥେଷ୍ଟ ଅଧିକ । କିନ୍ତୁ ଆଦିବାସୀର ସାମାଜିକ ଦକ୍ଷତା ଆମର ସାମାଜିକ ଦକ୍ଷତା ଅପେକ୍ଷା କମ୍ । କାରଣ ଆମର ସମାଜ ଅଧିକ କୁସଂଗଠିତ । ଏହି ସତ୍ୟଟିକୁ ଭୁଲି, ଆମେ ପ୍ରତ୍ୟେକ କ୍ଷେତ୍ରରେ ତାକୁ ବ୍ୟକ୍ତି ଏକକଭାବେ ଧରିନେଇ ତା'ର ନିଜସ୍ୱ ଦକ୍ଷତା ଉପରେ ସଂଦେହ ପ୍ରକାଶ କରିବାଦ୍ୱାରା ଏକପ୍ରକାର ସାମାଜିକ ବ୍ୟବଧାନହିଁ ସୃଷ୍ଟିହେଉଛି ।

ଅନେକ ସମୟରେ ଆମେ କହିବୁଲୁ, ଜଙ୍ଗଲ ବିଭାଗ ତରଫରୁ ଆଦିବାସୀମାନଙ୍କୁ ବର୍ଷସାରା କାମ ଯୋଗାଇଦିଆଯାଇଛି । କୁପ୍‌ରେ କାଠ କାଟିବା, ଥାପି କରିବା, କାଠ ବୋହିବା ଓ ଟ୍ରକ୍‌ରେ ଲୋଡ୍ କରିବା ଇତ୍ୟାଦି କାମ ତାକୁ ମିଳୁଛି । ନର୍ସରୀ ଓ ପ୍ଲାଣ୍ଟେସନ୍‌ରେ ଆଦିବାସୀ ମହିଳାମାନଙ୍କୁ ଅଗ୍ରାଧିକାରଭିତ୍ତିରେ କାମ ଦିଆଯାଉଛି । ତା' ଛଡ଼ା ଲଘୁ ବନଜାତ ଦ୍ରବ୍ୟ ତଥା ଶାଳମଂଜି, ମହୁ, ଝୁଣା, କେନ୍ଦୁପତ୍ର, ହରିଡ଼ା, ବାହାଡ଼ା, ଅଁଳା, ତେନ୍ତୁଳି ଓ ମହୁଲ ଇତ୍ୟାଦି ସଂଗ୍ରହ କାର୍ଯ୍ୟ ତାକୁ ବର୍ଷର ବିଭିନ୍ନ ସମୟରେ ମିଳୁଛି । ତଥାପି ସେ ଜଂଗଲ କାଟି ସଫା କରୁଛି ଓ ପୋଡୁଚାଷ ଅବ୍ୟାହତ ଭାବେ କରିଚାଲିଛି କାହିଁକି ? ଦିନ ଥିଲା, ଯେଉଁ ଜଙ୍ଗଲର ରାଜା ବୋଲି ଆଦିବାସୀ ନିଜକୁ ଭାବୁଥିଲା, ଯେଉଁଠି ଖେଳିବା, ବୁଲିବା, ଶିକାର କରିବା, ଫଳ, ମୂଳ, ଜାଳକାଠ ସଂଗ୍ରହ କରିବାରେ ତା'ର ଅବାଧ ସ୍ୱାଧୀନତା ଥିଲା, ଆଜି ସେଠି ନିଜ ଜାଗାରେ ନିଜେ ସେ ଅପରିଚିତ ହୋଇପଡ଼ିଛି । ଜଙ୍ଗଲ ବିଭାଗର ସମସ୍ତ କାର୍ଯ୍ୟକ୍ରମ ଆଜି ତାକୁ କେବଳ ଦିନମଜୁରିଆ ଭାବେ ପ୍ରତିଷ୍ଠିତ କରିଛି ।

ଏହି ପରିବର୍ତ୍ତିତ ପରିସ୍ଥିତି ଆଦିବାସୀମାନଙ୍କୁ ପ୍ରଗତି ପଥରେ ଆଗେଇନେବା ପରିବର୍ତ୍ତେ ବରଂ ବେଶି ଅସହାୟ କରିଦେଉଛି । ଉନ୍ନତିପାଇଁ ଯେଉଁ ପ୍ରେରଣା ଦରକାର ତାହା ଦୁଇଟି ଉତ୍ସରୁ ମିଳିଥାଏ । ଗୋଟିଏ ହେଲା– ଟାଣିବା (pull) ଅନ୍ୟଟି ହେଲା ଠେଲିବା (push) । ଟାଣିବା ପଦ୍ଧତି ବା pull system ରେ ଆମର ଯେତେପ୍ରକାର ଅର୍ଥନୈତିକ ସାହାଯ୍ୟ ବା ସରକାରୀ ଅନୁଦାନ ଇତ୍ୟାଦି ଦିଆଯାଉଛି, ତାହା ଅନ୍ତର୍ଭୁକ୍ତ । ଠେଲିବା ପଦ୍ଧତି ବା pull system ରେ ସେମାନଙ୍କୁ ଭଲ ଖାଇବା, ଭଲ ପିନ୍ଧିବା, ପାନୀୟ ଜଳ ଓ ବାସଗୃହ ଇତ୍ୟାଦି ଯୋଗାଇଦେବା କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ । କୌଣସି ସମାଜର ଉନ୍ନତିପାଇଁ ମାନବିକ ଦିଗଟର ପରିପ୍ରକାଶପାଇଁ ପ୍ରଥମଟି ଅପେକ୍ଷା ଦ୍ୱିତୀୟଟିର ଆବଶ୍ୟକତା ବେଶି । କାରଣ ପ୍ରଥମଟିକୁ ଥରେ କାଢ଼ିନେଲେ ଯେଉଁ ପ୍ରେରଣା ସାମୟିକ ମିଳିଥାଏ ତାହା ଚାଲିଯାଏ । ଅଥଚ ଆମ ଆଦିବାସୀ ଉନ୍ନୟନର ମୁଖ୍ୟ ଭାଗହିଁ ବର୍ତ୍ତମାନ ଅନୁଦାନ ପଦ୍ଧତି (subsidy system) ଉପରେ ପର୍ଯ୍ୟବସିତ । ଦ୍ୱିତୀୟ କଥା ହେଲା, ଅଧିକାଂଶ ଅନୁଷ୍ଠାନ ଆଦିବାସୀ ଉନ୍ନୟନପାଇଁ କିଛି ନା କିଛି କାମକରି ବାହାବା ନେବାକୁ ଚାହୁଁଛନ୍ତି । କିନ୍ତୁ ଏଇ ସମସ୍ତଙ୍କର ଟଣାଓଟରାରେ ବିଚରା ଆଦିବାସୀ ଆଗକୁ ଯାଉଛି ନା, ଯେଉଁଠି ସେଇଠି ସ୍ଥାଣୁ ହୋଇ ରହିଛି, ତାହା ଦେଖିବା କଥା । ଦୁଃଖର କଥା, ଆଦିବାସୀ ଉନ୍ନୟନ ଯୋଜନାର ଅନେକ ଦିଗନ୍ତ ଏହି ପର୍ଯ୍ୟାୟ ଭିତରେହିଁ ସୀମିତ । ଯେଉଁସବୁ ପରିବର୍ତ୍ତନ ଆମେ ସେମାନଙ୍କ ଭିତରେ ସୃଷ୍ଟିକରୁଛେ, ତାହା ସେମାନଙ୍କୁ ଅଧିକ ଅସହାୟ ଓ ବିସ୍ମିତ କରିଦେଉଛି । ସେମାନଙ୍କର ପାରଂପରିକ ଜୀବନଧାରାରେ ଅଯଥା ଅସ୍ଥିରତା ସୃଷ୍ଟିହୋଇଛି । ସହରାଞ୍ଚଳ ଅଧିବାସୀଙ୍କ ପରି ଆଧୁନିକ ଢଙ୍ଗରେ ରହିବା ଓ ଖାଇବାପାଇଁ ସେମାନଙ୍କୁ ଉତ୍ସାହିତ କରାହେଉଛି । ଏହାଫଳରେ ଅନେକ ଅପରିଚିତ ଓ ଅନାବଶ୍ୟକ ଅଭାବ କ୍ରମେ ସୃଷ୍ଟି ହେବାରେ ଲାଗିଛି । ଅପରପକ୍ଷରେ ଆଧୁନିକ ଜୀବନଯାପନ ପ୍ରଣାଳୀ ସହ ସଂଶ୍ଳିଷ୍ଟ ହୋଇଯିବାଫଳରେ ସେମାନଙ୍କର ସ୍ୱାଭାବିକ କାର୍ଯ୍ୟଦକ୍ଷତା ହ୍ରାସପାଉଛି ।

ଏପରିକି ସେମାନେ ନିଜର ଦୈନନ୍ଦିନ ଚାହିଦା ମଧ୍ୟ ପୂରଣ କରିବାକୁ ଆଉ ସକ୍ଷମ ହୋଇପାରୁନାହାନ୍ତି ।

ତୃତୀୟ କଥା ହେଲା, ଏହି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଦୁଇଟି ସଂପୂର୍ଣ୍ଣ ଭିନ୍ନ ପଦ୍ଧତି ବର୍ତ୍ତମାନ ମିଳିତ ହେଉଛି । ଗୋଟିଏ ହେଲା– ଆଦିବାସୀମାନଙ୍କର ମୌଳିକ ପ୍ରଥା (Oral system) ବା ମୌଳିକ ପଦ୍ଧତି । ଦ୍ୱିତୀୟଟି ହେଲା– ସାଂପ୍ରତିକ ସମାଜର ଅଧିକ ଶକ୍ତିଶାଳୀ ପ୍ରଥା (Documentation system) ବା ଲେଖାପଢ଼ାର ପଦ୍ଧତି । ପ୍ରଥମ ପଦ୍ଧତିଟି ଆଦିବାସୀର ନିଜସ୍ୱ । ସେଠି 'କଥା' ହିଁ ମୂଲ୍ୟବାନ୍ । ଥରେ କଥାଦେଇ କେହି ତାକୁ ଅସ୍ୱୀକାର କରୁନଥିଲେ । ସେଥିରେ ତ୍ରୁଟିବିଚ୍ୟୁତି ହେବାରନାହିଁ । ଯାହା ସମସ୍ତଙ୍କ ଆଖିକୁ ଦିଶିଲା, ଯାହା ସମସ୍ତଙ୍କୁ ଭଲଲାଗିଲା, ତାହାହିଁ ସତ୍ୟ । ଏଥିରେ ଏପଟ ସେପଟ ହେବାରନାହିଁ । କିନ୍ତୁ ନୂଆ ପଦ୍ଧତିରେ କେବଳ ଲେଖାପଢ଼ାରେ ଠିକ୍ ଥିଲେ, କଥାଟା ସତ୍ୟ । ଜମିଖଣ୍ଡକ ଯଦି ତା ନାଁରେ ଲେଖାହୋଇନି, ତା'ହେଲେ ଜମି ତା'ରନୁହେଁ । ଏହି ନୂତନ ପଦ୍ଧତି ତାକୁ ତା'ର ନିଜସ୍ୱ ସାମାଜିକ ସ୍ତରରୁ ଓହ୍ଲେଇଆଣି ଏକପ୍ରକାର ବ୍ୟକ୍ତିକୈନ୍ଦ୍ରିକ ଜୀବନ ଦୃଷ୍ଟି ପ୍ରଦାନ କରିଚାଲିଛି । ଆଗରୁ ସମସ୍ତ ଜମି ସଂପ୍ରଦାୟର ଥିଲା । ଗାଁ ମୁଖିଆର ନିର୍ଦ୍ଦେଶ ଅନୁସାରେ ସମସ୍ତେ ଖଣ୍ଡିଏ ଖଣ୍ଡିଏ ଅଂଶ ଚାଷ କରୁଥିଲେ । ଶିକାର କଲେ ଗାଁସାରା ଆନନ୍ଦ ଉତ୍ସବ କରି ଖାଉଥିଲେ । ଯାହାର କିଛି ଫସଲ ବଳିଗଲା ତାକୁ ସମସ୍ତେ ଭୋଜିଭାତ କରି ଖାଉଥିଲେ । ମାତ୍ର ଏକ ଦୁଇ ପରସ୍ପର ବିରୋଧୀ ଚିନ୍ତାଧାରା ସଂଘର୍ଷଶୀଳ । ଗୋଟିଏ ଆଦିବାସୀର ପରଂପରା, ତା'ର ସାମାଜିକ ରୀତି, ନୀତି ଓ ବିଶ୍ୱାସ ଏବଂ ଅନ୍ୟଟି ତା ନିକଟରେ ସଂପୂର୍ଣ୍ଣ ଅପରିଚିତ । ଲେଖାପଢ଼ା ଓ କାଗଜପତ୍ରର କାରବାର ଯେଉଁଥିରେ ଆଦିବାସୀ ଜାଣିପାରୁନି, ତା'ର ଜମି କେତେବେଳେ ଅନ୍ୟ ଜଣେ କିଣିନେଉଛି । ତା'ର ଋଣ ବଢ଼ି ବଢ଼ି କେତେବେଳେ ଘର ନିଲାମ ହେଉଛି । ଗୋଟିକରେ ସମାଜ ଓ ସାମାଜିକତା, ଅନ୍ୟଟିରେ ବ୍ୟକ୍ତିକୈନ୍ଦ୍ରିକ ଏକକତା, ଏଇ ଦୁଇ ଭିନ୍ନମୁଖୀ ଚିନ୍ତାଧାରାରେ କ୍ଷତିଗ୍ରସ୍ତ ହୋଇଛି ତା'ର ସାଂସ୍କୃତିକ ଚେତନା, ସାମାଜିକ ବିଶ୍ୱାସ ଓ ମାନବିକ ଭାବଧାରା । ଏଇ ପ୍ରସଙ୍ଗରେ ଥରେ ନେହେରୁ କହିଥିଲେ, "ଆମେ ଆଦିବାସୀମାନଙ୍କୁ ଅବହେଳାକରିବା ଯେପରି ଉଚିତ ନୁହେଁ, ସେହିପରି ସେମାନଙ୍କୁ ଅଧିକ ଶାସନର ଅର୍ଗଳି ଦେଇ ଭାରାକ୍ରାନ୍ତ କରିବା ମଧ୍ୟ ଉଚିତ ନୁହେଁ । ଆଦିବାସୀମାନଙ୍କୁ ସେମାନଙ୍କର ନିଜସ୍ୱ ମୌଳିକ ଚିନ୍ତାଧାରା ଓ ଆତ୍ମପ୍ରତ୍ୟୟ ଭିତରେହିଁ ଅଗ୍ରଗତି ଭିତରେହିଁ ଅଗ୍ରଗତି କରିବାକୁ ଛାଡ଼ିଦେବା ଉଚିତ ।"



# ସାମାଜିକ ବନ-ଯୋଜନା

୧୯୭୬ ମସିହାରେ ଜାତୀୟ କୃଷି କମିଶନ୍ ଯେଉଁ ସୁପାରିଶ୍ କରିଥିଲେ, ସେଥିରେ ଦେଶର ଜଙ୍ଗଲ ଉନ୍ନୟନ କ୍ଷେତ୍ରରେ ଦୁଇଟି ପ୍ରଧାନ ଆଭିମୁଖ୍ୟ ପ୍ରତିଫଳିତ ହୋଇଥିଲା । ପ୍ରଥମଟି ସାମାଜିକ ବନୀକରଣ– ଗାଁଗହଳିର ଲୋକମାନଙ୍କର ମୌଳିକ ତଥା ସାମାଜିକ ଚାହିଦା ପୂରଣ କରିବା ଏହି କାର୍ଯ୍ୟକ୍ରମର ଉପସ୍ଥିତ ଲକ୍ଷ୍ୟ । ଦ୍ୱିତୀୟଟି ଉତ୍ପାଦନଭିତ୍ତିକ ବନ; ଯେଉଁଥିରୁ ଜଙ୍ଗଲ ଉପରେ ନିର୍ଭରଶୀଳ କଳକାରଖାନାପାଇଁ କଞ୍ଚାମାଲ ମିଳିପାରିବ । ରାସ୍ତାଘାଟ, କୋଠାବାଡ଼ି ନିର୍ମାଣପାଇଁ କାଠ ଓ ପ୍ରତିରକ୍ଷା ଚାହିଦା ଆଦି ମେଣ୍ଟିପାରିବ ।

ଆମ ରାଜ୍ୟର ଶତକଡ଼ା ୮୮ ଭାଗ ଜନତା ଗାଁଗହଳିରେହିଁ ବାସ କରନ୍ତି । ଜଙ୍ଗଲରୁ ସେମାନଙ୍କର ମୌଳିକ ଚାହିଦାଗୁଡ଼ିକ ହେଲା– ଜାଳେଣିକାଠ, କୃଷି ଉପକରଣ ଓ ବାସଗୃହ ପାଇଁ ଛୋଟ କାଠ, ବାଉଁଶ, ଗାଈଗୋରୁଙ୍କପାଇଁ ଚାରଣ ତଥା ଗୋଖାଦ୍ୟ । ଏହାଛଡ଼ା ଫଳ, ମୂଳ, କନ୍ଦ ଓ ବିଭିନ୍ନ ଲଘୁ ବନଜାତ ଦ୍ରବ୍ୟ ଏବଂ ପରିଶେଷରେ ଏକ ସୁସ୍ଥ, ସବୁଜ ପରିବେଶ ।

ରାଜ୍ୟର ପାରମ୍ପରିକ ସଂରକ୍ଷିତ ଜଙ୍ଗଲ ଗାଁର ସାଧାରଣ ଲୋକଙ୍କର ମୌଳିକ ଆବଶ୍ୟକତା ପୂରଣ କରିବାପାଇଁ ସମର୍ଥନୁହେଁ । ଦିନକୁଦିନ ଆମ ଦେଶର ଲୋକସଂଖ୍ୟା ବଢ଼ିଚାଲିଛି । ସେମାନଙ୍କର ଜାଳେଣି, ଛୋଟ କାଠ ଓ ବଡ଼ କାଠର ଆବଶ୍ୟକତା ମଧ୍ୟ ବଢ଼ି ଚାଲିଛି । ପ୍ରତିଦିନ ନିର୍ବିଚାରରେ ଜଙ୍ଗଲକଟା ଚାଲିଥିବାରୁ ଗାଁ ନିକଟରୁ ବଣଜଙ୍ଗଲ ଅପସରି ଗଲାଣି । ସବୁଜ ପାହାଡ଼ସବୁ ବୃକ୍ଷଲତାଶୂନ୍ୟ ଟାଙ୍ଗରା ପାହାଡ଼ରେ ପରିଣତ ହେଲାଣି । ଜାଳକାଠ ଅଭାବରେ ଲୋକେ ପତର ଗୋଟେଇକରି ଜାଳୁଛନ୍ତି; ଗୋବରକୁ ଘଷିକରି ଜାଳୁଛନ୍ତି । ଝାଟି ଗାଡ଼ିଏ ଆଣିବାକୁ ହେଲେ ପାଞ୍ଚକୋଶ ଯିବାକୁ ପଡୁଛି । ସେଥିପାଇଁ ସାମାଜିକ ବନୀକରଣ ଯୋଜନାର ମୂଳ ଲକ୍ଷ୍ୟ ହେଉଛି, ଗାଁଗଣ୍ଡା ନିକଟରେ ଛୋଟ ଛୋଟ ଜଙ୍ଗଲ ସୃଷ୍ଟି କରିବା । ଉଜୁଡ଼ା ବଣର ପୁନରୁଦ୍ଧାର କରି ଉପରୋକ୍ତ ମୌଳିକ ଚାହିଦାଗୁଡ଼ିକ ଗାଁପାଖ ଜଙ୍ଗଲରୁ ହାସଲ କରିବା । ଅନ୍ୟ ଭାଷାରେ କହିଲେ, ସମୟକ୍ରମେ ଗାଁ ନିକଟରୁ ଦୂରକୁ ଘୁଞ୍ଚିଯାଇଥିବା ଜଙ୍ଗଲକୁ ପୁନଶ୍ଚ ଗାଁ ନିକଟକୁ ଫେରାଇଆଣିବା ଦିଗରେ ସାମାଜିକ ବନୀକରଣ ଏକ ଆନ୍ତରିକ ପ୍ରଚେଷ୍ଟା ।

ସାମାଜିକ ବନୀକରଣ ଯୋଜନା ଏକ ଗ୍ରାମ ବିକାଶ ମୂଳକ ଯୋଜନା । ଏହାଦ୍ୱାରା ଲୋକମାନେ ନିଜେ ନିଜପାଇଁ ସରକାରୀ ପୃଷ୍ଠପୋଷକତାରେ ସ୍ଥାୟୀ ଜଙ୍ଗଲସଂପଦ ସୃଷ୍ଟି କରିପାରିବେ । ଏହି ଯୋଜନାର ପ୍ରଥମ ବିଶେଷତ୍ୱ ହେଲା, ଏହାର ଉଦ୍ଦିଷ୍ଟ ଗୋଷ୍ଠୀ (target group) । ଜନବସତି ନିକଟରେ ସରକାରୀ ସହାୟତାରେ ଓ ଜନସାଧାରଣଙ୍କର ସକ୍ରିୟ ସହଯୋଗରେ ସୃଷ୍ଟି କରାଯାଉଥିବା ଛୋଟ ଛୋଟ ସାମାଜିକ ଜଙ୍ଗଲ ମୁଖ୍ୟତଃ ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ । ଏହି ଲୋକମାନଙ୍କ ଭିତରେ ଖଟିଖିଆ, ଦିନମଜୁରିଆ, ଶ୍ରମିକ, ଭୂମିହୀନ ବ୍ୟକ୍ତି,

ଛୋଟ ଚାଷୀ, ନାମମାତ୍ର ଚାଷୀ, ହରିଜନ, ଆଦିବାସୀ ଓ ଜଙ୍ଗଲ ଉପରେ ସର୍ବତୋଭାବେ ନିର୍ଭରଶୀଳ ସ୍ତ୍ରୀ, ପୁରୁଷ ଅନ୍ତର୍ଭୁକ୍ତ । ଯୋଜନାର ପ୍ରତିଟି ସ୍ତରରେ ସେମାନେ ବ୍ୟକ୍ତିଗତ ତଥା ସାମୂହିକଭାବେ ଜଡ଼ିତ ହେବାର ଆବଶ୍ୟକତା ରହିଛି ।

ଦ୍ୱିତୀୟରେ ଉପଯୁକ୍ତ ଚାରା ନିରୂପଣ । ଲୋକମାନଙ୍କର ସମସ୍ତ ମୌଳିକ ଚାହିଦା ଯଥା— ଜାଳେଣି, ଛୋଟକାଠ, ଚାରଣ, ଫଳ ଇତ୍ୟାଦି କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଗଛରୁ ମିଳିନପାରେ । ଏଥିପାଇଁ ସାମାଜିକ ବନରେ ଗୋଟିଏ କିସମର ଗଛ ନଲଗାଇ; ଭିନ୍ନ ଭିନ୍ନ ଜାତିର ଗଛର ସମାହାର; ଯାହାକୁ କୁହାଯାଏ 'ମିଶ୍ରିତ ଗଛଚାଷ', ପରିକଳ୍ପନା କରିବା ବାଞ୍ଛନୀୟ ।

ତୃତୀୟରେ 'ସଂପ୍ରସାରଣ' । ଅଳ୍ପ କେତୋଟି ବଡ଼ ବଡ଼ ପ୍ଲାଣ୍ଟେସନ୍ ସୃଷ୍ଟି ନକରି, ଗାଁ ଗଣ୍ଡା ନିକଟରେ, ଜନବସତି ପାଖରେ ବିକ୍ଷିପ୍ତ ଭାବରେ ହଜାର ହଜାର ଛୋଟ ବଣ ସୃଷ୍ଟି କରାଯିବା ନିମନ୍ତେ ଏହି ଯୋଜନାରେ ଗୁରୁତ୍ୱ ଦିଆଯାଉଛି । ଗାଁ ପାଖର ଏଇ ବଣଗୁଡ଼ିକ ସଂପ୍ରସାରଣ କେନ୍ଦ୍ରରୂପେ କାମ କରିବ । ଆଖପାଖ ଅନ୍ୟ ଗାଁର ଲୋକମାନେ, ନିଜ ଗାଁରେ ନିଜେ ସାମାଜିକ ଜଙ୍ଗଲ ସୃଷ୍ଟି କରିବାକୁ ଏହି ପ୍ରଦର୍ଶନ କେନ୍ଦ୍ରରୁ ପ୍ରେରଣା ପାଇବେ ।

ଚତୁର୍ଥ ପାର୍ଥକ୍ୟ ହେଉଛି 'ବଣର ସୁରକ୍ଷା' । ଚିରାଚରିତ ପ୍ରଥାରେ ବନ ବିଭାଗ କର୍ମଚାରୀଙ୍କଦ୍ୱାରା ଏହି ଛୋଟ ଛୋଟ ଜଙ୍ଗଲଗୁଡ଼ିକର ସୁରକ୍ଷା ସହଜ ବା ସଂଭବନୁହେଁ । ସେହିପରି ବାଡ଼ବୁଜି, ପରିଖାଖୋଳି ବଣଗୁଡ଼ିକୁ ରକ୍ଷଣାବେକ୍ଷଣ କରିବା ମଧ୍ୟ ଉଚିତନୁହେଁ । ଏଥିପାଇଁ ଦରକାର ସାମାଜିକ ସୁରକ୍ଷା । ଗାଁଲୋକମାନେ ନିଜ ଦାୟିତ୍ୱରେ ସାମାଜିକ ବନଗୁଡ଼ିକର ଜଗାରଖା କରିବେ ।

ସର୍ବଶେଷ ବିଶେଷତ୍ୱ ହେଲା 'ପରିଚାଳନା ହସ୍ତାନ୍ତର' । ନର୍ସରୀରେ ଚାରା ଉତ୍ପାଦନଠାରୁ ଆରମ୍ଭ କରି, ଜଙ୍ଗଲସୃଷ୍ଟି, ବୃକ୍ଷରୋପଣ ଓ ଏହାର ରକ୍ଷଣାବେକ୍ଷଣ ତଥା ପରିଚାଳନା କ୍ଷେତ୍ରରେ ସ୍ଥାନୀୟ ଜନସାଧାରଣଙ୍କୁ ସଂଶ୍ଲିଷ୍ଟ କରି କ୍ରମେ କ୍ରମେ ସେମାନଙ୍କୁ ଏହି ନୂଆ ଜଙ୍ଗଲ ଓ ତା'ର ପରିଚାଳନା ଦାୟିତ୍ୱ ହସ୍ତାନ୍ତର କରିବା ଏହି ଯୋଜନାର ଅନ୍ୟତମ ଲକ୍ଷ୍ୟ । ଏପର୍ଯ୍ୟନ୍ତ ଲୋକମାନେ ବନଜାତ ପଦାର୍ଥର 'ଉପଭୋକ୍ତା' ମାତ୍ର ଥିଲେ, ଏବେ ସେମାନେ ନିଜେ ଉତ୍ପାଦନକାରୀ ହେବେ । ଆଗେ ସରକାରୀ ବଣ ଜଙ୍ଗଲରୁ ହେଉଥିବା ଆୟ ସରକାରୀ ରାଜକୋଷକୁ ଯାଉଥିଲା, ଏବେ ତାହା ଗ୍ରାମ ପଣ୍ଡକୁ ଯିବ । ଗାଁର ଉନ୍ନତିରେ ତାହା ଖର୍ଚ୍ଚ ହେବ ।

ଓଡ଼ିଶାର ସାମାଜିକ ବନଯୋଜନା ଏକ ମିଳିତ ପରିକଳ୍ପନା । ୧୯୮୪ ମସିହାରୁ ସୁଇଡେନ୍ ସରକାରଙ୍କ ଆର୍ଥିକ ସହାୟତାରେ ୨୩ କୋଟି ଟଙ୍କା ସମୂଳ ବିନିଯୋଗ କରି ଓଡ଼ିଶାର ନଅଗୋଟି ଜିଲ୍ଲାରେ ସାମାଜିକ ବନୀକରଣ କାର୍ଯ୍ୟକ୍ରମ ପାଞ୍ଚବର୍ଷପାଇଁ ହାତକୁ ନିଆଯାଇଛି । ଦୈନିକ ମଜୁରିହାର ବଢ଼ିଯିବାରୁ ଏହି ପୁଞ୍ଜିଲଗାଣ ପରେ ୨୮ କୋଟି ଟଙ୍କାକୁ ବଢ଼ାଇ ଦିଆଗଲା । କୋରାପୁଟ, କଳାହାଣ୍ଡି, ସୁନ୍ଦରଗଡ଼ ଓ ଫୁଲବାଣୀ ଏହି ଚାରୋଟି ଜିଲ୍ଲାରେ ଯେଉଁଠି ଏବେ ବି କିଛି କିଛି ଜଙ୍ଗଲ ରହିଛି ସେଗୁଡ଼ିକୁ ପ୍ରଥମ ପର୍ଯ୍ୟାୟରେ ବାଦ ଦିଆଯାଇଛି । ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଶାର ସବୁ ଜିଲ୍ଲାକୁ ସାମାଜିକ ବନଯୋଜନା ପରିସରଭୁକ୍ତ କରାଯିବ । ପ୍ରଥମ ଦଫାରେ ଯୋଜନା ପରିସରଭୁକ୍ତ ଓଡ଼ିଶାର ୯ ଗୋଟି ଜିଲ୍ଲାର ୩୫,୦୦୦ ଗ୍ରାମ ମଧ୍ୟରୁ

କେବଳ ଏକ-ଦଶମାଂଶ ଅର୍ଥାତ୍ ୩୫୦୦ ଗ୍ରାମରେ ସାମାଜିକ ବନୀକରଣ କରାଯିବାର ଲକ୍ଷ୍ୟ ରଖାଯାଇଛି ।

ଆମ ସାମାଜିକ ବନୀକରଣ ଯୋଜନାରେ ପାଞ୍ଚଟି ଉପାଦାନ ରହିଛି । ସେଗୁଡ଼ିକ ହେଲା– ଗ୍ରାମ ଜଙ୍ଗଲ, କ୍ଷୟପ୍ରାପ୍ତ ଜଙ୍ଗଲରେ ପୁନଃବନୀକରଣ, ଉଜୁଡ଼ା ଜଙ୍ଗଲର ପୁନରୁଦ୍ଧାର, ଗ୍ରାମ୍ୟ ଦରିଦ୍ରଙ୍କପାଇଁ ଜଙ୍ଗଲ ଚାଷ ଓ କ୍ଷେତକଢ଼େ ଜଙ୍ଗଲ । ମୋଟାମୋଟି ଦୁଇ କିସମର ଜମିରେ ଏହି ଯୋଜନାରେ ଗଛଲଗାଯାଉଛି । ପ୍ରଥମଟି ସରକାରୀ ଜମି । ଏଥିରେ ଗାଁ ନିକଟରେ ଥିବା ସରକାରୀ ପତିତ, ଅନାବାଦୀ ଜମି, ପଞ୍ଚାୟତ ତୋଟା, ଗୋଚର ଓ ବୃକ୍ଷହୀନ ଗ୍ରାମ୍ୟ ଜଙ୍ଗଲ ଅନ୍ତର୍ଭୁକ୍ତ ।

ଓଡ଼ିଶା ସରକାରଙ୍କର ୧୯୬୬ ମସିହାର ନିୟମ ଅନୁସାରେ ପ୍ରତି ଗାଁର ସରହଦ ଭିତରେ ଶତକଡ଼ା ୧୦ ଭାଗ ଜମି ଗ୍ରାମ୍ୟ ଜଙ୍ଗଲପାଇଁ ଓ ଶତକଡ଼ା ୫ ଭାଗ ଜମି ଗୋଚରପାଇଁ ସଂରକ୍ଷିତ । କାଗଜପତ୍ରରେ ଏହି ଜମି 'ଗ୍ରାମ୍ୟ ଜଙ୍ଗଲ' ବୋଲି ଦର୍ଶାଯାଇଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ସେଥିରୁ ଅଧିକାଂଶ ବେଆଇନ ଜବରଦଖଲ ହୋଇ ଅନ୍ୟଭାବେ ବ୍ୟବହୃତ ହେଉଛି । ତେଣୁ ପ୍ରଥମ ପର୍ଯ୍ୟାୟରେ ୨୧,୭୦୦ ହେକ୍ଟର ଜମିରେ ଛୋଟ ଛୋଟ ଗ୍ରାମ୍ୟଜଙ୍ଗଲ ସୃଷ୍ଟି କରାଯିବାର ଲକ୍ଷ୍ୟ ରହିଛି । ଏହାଛଡ଼ା ଉଜୁଡ଼ିଯାଇଥିବା ଜଙ୍ଗଲର ପୁନରୁଦ୍ଧାର ଓ କେତେକ କ୍ଷେତ୍ରରେ ପୁନଃବନୀକରଣ କାର୍ଯ୍ୟକ୍ରମ 'ଖ' ଶ୍ରେଣୀ ସଂରକ୍ଷିତ ଜଙ୍ଗଲ, ସମତଳ ରକ୍ଷିତ ଜଙ୍ଗଲ ଓ ପ୍ରଜାସ୍ୱତ୍ୱ ସଂରକ୍ଷିତ ଜଙ୍ଗଲମାନଙ୍କରେ କାର୍ଯ୍ୟକାରୀ ହେଉଛି । ୨୦,୩୦୦ ହେକ୍ଟର ସଂପୂର୍ଣ୍ଣଭାବେ ନଷ୍ଟ ହୋଇଯାଇଥିବା ଜଙ୍ଗଲର ପୁନଃବନୀକରଣ ଓ ୧୫,୦୦୦ ହେକ୍ଟର ପତିତ ତଥା କ୍ଷୟପ୍ରାପ୍ତ ଜଙ୍ଗଲ ପୁନରୁଦ୍ଧାର କାର୍ଯ୍ୟକ୍ରମ ଏହାର ଅନ୍ତର୍ଭୁକ୍ତ ।

ଦ୍ୱିତୀୟଟି ଲୋକଙ୍କର ନିଜ ଜମି ବା ବ୍ୟକ୍ତିଗତ ଜମିରେ ବୃକ୍ଷରୋପଣ । ଏଥିରେ ଲୋକେ ନିଜର ଘରବାଡ଼ି, ହତା, ବଗିଚା ବାଡ଼, ଚାଷଜମି ଓ ବିଲ ହିଡ଼ରେ ଗଛ ଲଗାଇପାରିବେ । ଏହାଛଡ଼ା କିଛି ସରକାରୀ ପତିତ ଜମି ଗଛ ଚାଷ କରିଆରେ ଆବାଦ କରାହେଉଛି ଓ ଭୂମିହୀନ, ଗରିବ ଲୋକମାନଙ୍କୁ ବାଣ୍ଟିଦିଆଯାଉଛି । ସେମାନଙ୍କୁ ଗଛ ଉପରେ ମାଲିକାନା ମିଳୁଛି; କିଂତୁ ଜମି ଉପରେ ନୁହେଁ । ଲୋକମାନେ ଦୁଇଧାଡ଼ି ଗଛ ଭିତରେ ଧାନ, ମାଣ୍ଡିଆ, ଆଳୁ, ଚିନାବାଦାମ ଆଦି ଫସଲ ଉପୁଜାଇ ବେଶ୍ ଲାଭବାନ୍ ହେଉଛନ୍ତି । ଏହା ଆମ ରାଜ୍ୟରେ ଚାଲିଥିବା ଅର୍ଥନୈତିକ ଥଇଥାନ କାର୍ଯ୍ୟକ୍ରମର ଅନୁରୂପ । ଏଥିରେ ୧୦୦୦ ହେକ୍ଟର ଜମିରେ ୨୦୦୦ ଦରିଦ୍ରତମ ପରିବାରଙ୍କୁ ଜଙ୍ଗଲଭିତ୍ତିକ କାର୍ଯ୍ୟକ୍ରମରେ ଥଇଥାନ କରାଯିବାର ଲକ୍ଷ୍ୟ ରହିଛି ।

ଗାଁ ପାଖ ସରକାରୀ ପତିତ ଜମିରେ ଯେଉଁ ବଣ ତିଆରି ହେବ, ତାହା ଗାଁର କୋଠ ଜଙ୍ଗଲ ହୋଇ ରହିବ । ଗାଁର ଧନୀ, ଗରିବ, ଛୋଟ ବଡ଼ ସବୁ ପରିବାର ଏହି କୋଠ ଜଙ୍ଗଲରୁ କାଠ, ବାଉଁଶ ପାଇବେ । ବ୍ୟକ୍ତିଗତ ଜମିରେ ଯେଉଁ ଗଛ ଲାଗିବ, ସେଥିରେ କେବଳ ବ୍ୟକ୍ତି ବିଶେଷର ଅଧିକାର ରହିବ । ଏହି ବିଭାଗ ଉପରେ ଯୋଜନାରେ ବିଶେଷ ଗୁରୁତ୍ୱ ଦିଆଯାଉଛି ଓ ଏଥିପାଇଁ ଜଣପିଛା ୫୦୦ ପର୍ଯ୍ୟନ୍ତ ଚାରା ମାଗଣାରେ ଯୋଗାଇଦିଆଯାଉଛି ।

ସାମାଜିକ ବନ-ଯୋଜନାଟି ଅନ୍ୟ ବନୀକରଣ ଯୋଜନାଠାରୁ ଭିନ୍ନ । ଏହାର ସଫଳତାର ମୂଳମନ୍ତ୍ର ହେଲା ଜନସହଯୋଗ । ଜନସାଧାରଣଙ୍କର ସହଯୋଗ ହାସଲପାଇଁ, ଯୋଜନା ଭିତରେ କେତୋଟି ଉପାୟ ଖଞ୍ଜା ହୋଇ ରହିଛି । ସେଗୁଡ଼ିକ ହେଲା–

**ଗ୍ରାମ ବନ-କମିଟି** – ଯୋଜନା ଚାଲୁଥିବା ପ୍ରତିଟି ଗାଁରେ ଗ୍ରାମ ବନ କମିଟି ଗଠନ କରାଯିବ । ସ୍ଥାନୀୟ ସରପଞ୍ଚ ଏହି କମିଟିର ସଭାପତି ରହିବେ । କମିଟିରେ ମହିଳା, ଅନୁସୂଚିତ ଜାତି, ଉପଜାତି ଏବଂ ଗରିବ, ଭୂମିହୀନ ଲୋକଙ୍କର ପ୍ରତିନିଧି ରହିବେ । କେଉଠି ଗଛ ଲଗାଯିବ ଓ କେଉଁଜାତୀୟ ଗଛ ଲଗାଯିବ ତାହା କମିଟି ସ୍ଥିର କରିବ । ଜମି ଚିହ୍ନଟ, ଗାତ ଖୋଳିବା ଓ ଗଛ ଲଗାଇବା କାମ କମିଟି ତଦାରଖରେ ହେବ । ଲଗାଯାଇଥିବା ଗଛଗୁଡ଼ିକର ସୁରକ୍ଷା ତଥା ରକ୍ଷଣାବେକ୍ଷଣ କମିଟିର ଦାୟିତ୍ୱ । ବନ ବିଭାଗ ଓ ଗ୍ରାମବାସୀଙ୍କ ଭିତରେ କମିଟି ଏକ ଯୋଗସୂତ୍ର । ଭବିଷ୍ୟତରେ ସାମାଜିକ ବନର ପରିଚାଳନା ଦାୟିତ୍ୱ କମିଟିକୁ ହସ୍ତାନ୍ତର କରାଯିବ ।

**ଯୌଥ ପରିଚାଳନା ଦଲିଲ୍** – ଗ୍ରାମବାସୀ ଓ ବନବିଭାଗ ଭିତରେ ଏହା ଏକ ମିଳିତ ରାଜିନାମା । ସରକାରୀ କାର୍ଯ୍ୟ ପ୍ରତି ଲୋକମାନଙ୍କର ବିଶ୍ୱାସ ହାସଲ କରାଇବା ଏହାର ଲକ୍ଷ୍ୟ । ସାମାଜିକ ବନର ପରିଚାଳନା, ସୁରକ୍ଷା, ଲୋକମାନଙ୍କର ଦାୟିତ୍ୱ ଓ ଅମଳ ପରେ ସୁଷମ ବଣ୍ଟନ ପ୍ରଣାଳୀ ଆଦି ଏଥିରେ ଉଲ୍ଲେଖ ରହିବ ।

**ଲୋକମାନଙ୍କଦ୍ୱାରା ଚାରା ଉତ୍ପାଦନ (ବିକେନ୍ଦ୍ରୀକୃତ ନର୍ସରୀ)** – ସାମାଜିକ ବନ ଯୋଜନାରେ, ଚାରା ଉତ୍ପାଦନ କେବଳ ବିଭାଗୀୟ ଉଦ୍ୟମରେ ନହୋଇ ଅଧିକରୁ ଅଧିକ ଚାରା ଲୋକମାନଙ୍କ ଜରିଆରେ କରାଇବାର ଉଦ୍ୟମ ହେଉଛି । ଏହାର କାରଣ ହେଲା, ମୂଳରୁ ଚାରା ଉତ୍ପନ୍ନ କାମରେ ଲୋକମାନଙ୍କୁ ଜଡ଼ିତ କଲେ ଭବିଷ୍ୟତରେ ଗଛପ୍ରତି ସେମାନଙ୍କର ଆଦର ବଢ଼ିବ । ସେଥିପାଇଁ ସ୍କୁଲ କଲେଜର ପିଲା, ଯୁବକ ସଂଘ, ମହିଳା ସମିତି, ଗ୍ରାମ ବନ-କମିଟି, ଛୋଟ ଚାଷୀ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଜରିଆରେ ଚାରା କେନ୍ଦ୍ରମାନ ସ୍ଥାପନ କରାଯାଉଛି । ଚାରା ଉପୁଜାଇବା ନିମନ୍ତେ ବୈଷୟିକ ସହାୟତା ସାମାଜିକ ବନ ବିଭାଗର କର୍ମଚାରୀ ଦେଉଛନ୍ତି ।

**ମହିଳା ଓ ଶିଶୁମାନଙ୍କର ଯୋଗଦାନ** – ଗାଁଗହଳିରେ ଚୁଲୀମୁଣ୍ଡ ଓ ଜାଳକାଠ ସଂଗ୍ରହ ଦାୟିତ୍ୱ ମୁଖ୍ୟତଃ ଗୃହିଣୀମାନଙ୍କ ଉପରେ ନ୍ୟସ୍ତ । ଘରର ଯାବତୀୟ କାମଦାମ ସାରିବା ପରେ ସେମାନେ ଜାଳକାଠ, ଝାଟି ଗୋଟେଇବାକୁ ବଣକୁ ଯାଆନ୍ତି । ଏହି କାରଣରୁ ଯୋଜନାରେ ମହିଳାମାନଙ୍କୁ ସାମିଲ୍ କରିବାରେ ଓ ସେମାନଙ୍କୁ କର୍ମନିଯୁକ୍ତି ଦେବାରେ ବିଶେଷ ଜୋର୍ ଦିଆଯାଇଛି । ସେହିପରି ଛୋଟ ଛୋଟ ପିଲାଙ୍କୁ ଗଛ ଲଗାଇବା ଓ ତା'ର ଯତ୍ନ ନେବା ଦିଗରେ 'ପିଲାଟିଏ - ଗଛଟିଏ' କାର୍ଯ୍ୟକ୍ରମ ରହିଛି ।

ପରିଶେଷରେ ଚାଷୀଭାଇମାନଙ୍କପାଇଁ ଦି'ପଦ କହିବାର ଅଛି । କଥାରେ ଅଛି 'ପେଟ ଲାଗି ସବୁ ନାଟ' । ଲୋକମାନଙ୍କ ପାଖରେ ଚାଉଳ ଅଛି, ଡାଲି ଅଛି; ଅଥଚ ରାନ୍ଧିକରି ଖାଇବାପାଇଁ ଜାଳନାହିଁ । ଏ ଅବସ୍ଥାରେ ନୀତି ନିୟମ ମାନୁଛି କିଏ ? ଲୋକେ ଜାଳପାଇଁ

ଫଳନ୍ତି ଆମ୍ବଗଛକୁ କାଟିଦେଉଛନ୍ତି । ମୂଲ୍ୟବାନ୍ ଶାଳ ଗଛକୁ ହାଣୁଛନ୍ତି । ଚାଷୀ ଗୋବରକୁ ବିଲରେ ଖତକରି ବ୍ୟବହାର କରିବା ପରିବର୍ତ୍ତେ ଘଷିକରି ଜାଳୁଛି । ଖତ ନଦେବା ହେତୁ ଜମିର ଉର୍ବରତା କମିଯାଉଛି । ଆଗେ ଗୋଟିଏ ଜମିରୁ ଚାଷୀ ଯେତିକି ଫସଲ ପାଉଥିଲା, ବର୍ତ୍ତମାନ ତା'ଠୁ ଯଥେଷ୍ଟ କମ୍ ପାଉଛି । ଚାଷୀଭାଇମାନେ ଯଦି ୬୦ରୁ ୮୦ଟି ଉପଯୁକ୍ତ ଗଛ ସେମାନଙ୍କର କ୍ଷେତବାଡ଼ି ବା ବିଲ ହିଡ଼ରେ ଲଗାଇଦେଇପାରନ୍ତେ, ତେବେ ପାଞ୍ଚ ବର୍ଷ ପରେ ବର୍ଷକୁ ୧୫, ୧୬ଟି ଗଛ ଅମଳ କରି ସେଥିରୁ ସେମାନଙ୍କର ଜାଳେଣି ଚାହିଦା ମେଣ୍ଟାଇ ପାରନ୍ତେ । ସରକାରୀ ବଣ ଉପରେ ସେମାନଙ୍କୁ ଆଉ ନିର୍ଭର କରିବାକୁ ପଡ଼ନ୍ତା ନାହିଁ । ତା'ଛଡ଼ା ଗୋବର ଆଉ ଚୂଲା ମୁଣ୍ଡକୁ ନଯାଇ ବିଲ ବାଡ଼ିକୁ ଯାଆନ୍ତା । ଆଜି ତେଣୁ ସାମାଜିକ ବନୀକରଣର ସନ୍ଦେଶ ହେଉଛି–

''ହୁଡ଼ା କଡ଼େ କଡ଼େ ବବୁଲ୍, ଗୋହୀରା
ଲଗା ନୀଳଗିରି, ଝାଉଁ,
ବାଡ଼ି ତଳେ ତଳେ ଚାକୁଣ୍ଡା, ବାଉଁଶ
ଅଭାବ ଦୂରେଇଯାଉ ।''



# ସାମାଜିକ ବନୀକରଣ କାହିଁକି ?

**ପ୍ରଶ୍ନ : 'ସାମାଜିକ ବନୀକରଣ' ଯୋଜନାଟି କ'ଣ ? କେବେ ଏହି ଯୋଜନାଟି ଆରଂଭ କରାଯାଇଥିଲା ଏବଂ ସେତେବେଳେ ଏହାର ଲକ୍ଷ୍ୟ ବା ଉଦ୍ଦେଶ୍ୟ କ'ଣ ଥିଲା ?**

ସମାଜର ଲୋକମାନଙ୍କପାଇଁ ଲୋକମାନଙ୍କଦ୍ୱାରା ଅର୍ଥାତ୍ ସେମାନଙ୍କର ସକ୍ରିୟ ସହଯୋଗରେ ଏବଂ ସରକାରୀ ଆର୍ଥିକ ସହାୟତାରେ କରାଯାଉଥିବା ବନୀକରଣ କାର୍ଯ୍ୟକ୍ରମ ହିଁ 'ସାମାଜିକ ବନୀକରଣ' ନାମରେ ପରିଚିତ ।

ଏହି ବନୀକରଣ ଯୋଜନାଟି କାହିଁକି ଓ କିପରି ରୂପରେଖ ନେଲା, ସେ ବିଷୟରେ ଜାଣିବାକୁ ହେଲେ ଆମକୁ ସାମାନ୍ୟ ଅତୀତକୁ ଫେରିଯିବାକୁ ପଡ଼ିବ । ପ୍ରାୟ ୨୦,୩୦ ବର୍ଷ ପୂର୍ବେ, ପ୍ରତି ଗାଁ ପାଖକୁ ଲାଗି ଖଣ୍ଡେ ଖଣ୍ଡେ ଜଙ୍ଗଲ ଥିଲା ଅଥବା ଆମ୍ବ, ପଣସ, ପୋଲାଙ୍ଗ ଗଛର ତୋଟାଟିଏ ଥିଲା । ଏହି ଜଙ୍ଗଲ ବା ତୋଟାଖଣ୍ଡକହିଁ ଥିଲା ଗାଁଲୋକଙ୍କର ଜୀବନ ନାଡ଼ିକା । ସେଠୁ ସେମାନେ ଜାଳେଣି ପାଉଥିଲେ । ଘରଛପରପାଇଁ କାଠ, ବାଉଁଶ ପାଉଥିଲେ । ବାଡ଼ ବୁଜିବାପାଇଁ ମେଢ଼ା ପାଉଥିଲେ । ଗାଁର ଗାଈଗୋରୁ ଏହି ଜଙ୍ଗଲରେ ଚରୁଥିଲେ ।

କିଂତୁ ସମୟକ୍ରମେ ଏହି ଗ୍ରାମ୍ୟ ଜଙ୍ଗଲଗୁଡ଼ିକ ଉଜୁଡ଼ିଗଲା; ଯାହାର ପ୍ରଭାବ ଗାଁର ସାମାଜିକ, ଅର୍ଥନୈତିକ ଏବଂ ପାରିପାର୍ଶ୍ୱିକ ପରିବେଶ ଉପରେ ପଡ଼ିଲା । ପ୍ରଥମ ସମସ୍ୟା ଦେଖାଦେଲା ଜାଳେଣିକାଠର ଅଭାବ । ଗାଁର ଲୋକମାନଙ୍କୁ ଜାଳେଣିକାଠ ଯୋଗାଡ଼ କରିବାପାଇଁ କ୍ରମଶଃ ଦୂରକୁ ଦୂରକୁ ଯିବାକୁ ପଡ଼ିଲା ଏବଂ ଅନେକ ସ୍ଥଳରେ ଜାଳେଣି ଅଭାବରେ ସେମାନେ ଗୋବରକୁ ଘଷିକରି ଜାଳିଲେ ।

ଅନୁସନ୍ଧାନରୁ ଜଣାଯାଇଛି ଆମ ଦେଶରେ ବାର୍ଷିକ ପ୍ରାୟ ୭୩୦ ଲକ୍ଷ ଟନ୍ ଗୋବରକୁ ଘଷି ଆକାରରେ ଜାଳିଦିଆଯାଉଛି । ଗୋଟିଏ ଟନ୍ ଗୋବର ଖତ ବିଲରେ ବ୍ୟବହାର କଲେ ଫସଲ ଉତ୍ପାଦନ ୫୦ କିଲୋଗ୍ରାମ୍ ବୃଦ୍ଧିପାଇବ ବୋଲି କୃଷି ବିଜ୍ଞାନୀମାନଙ୍କର ମତ । ଏଥିରୁ ଅନୁମାନ କରାଯାଇପାରେ, ଜାଳେଣି ଅଭାବରେ ଗୋବରକୁ ଘଷିରୂପେ ଜାଳିବା କାରଣରୁ ଆମେ ଅନ୍ୟ ଏକ ଦିଗରୁ ବିଚାର କଲେ, ଆମ ଦେଶ ଭାରତର ସରକାରୀ ନଥିପତ୍ରରେ ରେକର୍ଡ଼ଭୁକ୍ତ ୭୬୫ ଲକ୍ଷ ହେକ୍ଟର ଜଙ୍ଗଲ ଦେଶର ଏକ-ଦଶମାଂଶ ଜାଳେଣି ଆବଶ୍ୟକତା ପୂରଣ କରିବାକୁ ମଧ୍ୟ ସକ୍ଷମନୁହେଁ । ୧୯୮୧ ମସିହା ଜନଗଣନା ଅନୁଯାୟୀ ଆମ ରାଜ୍ୟର ୨ କୋଟି ୭୦ ଲକ୍ଷ ଲୋକଙ୍କପାଇଁ ବର୍ଷକୁ ୭୫ ଲକ୍ଷ ଘନଫୁଟ ଜାଳେଣି ଦରକାର ହେଉଥିବା ବେଳେ, ଜଙ୍ଗଲରୁ ପ୍ରାୟ ୧୦ରୁ ୧୫ ଲକ୍ଷ ଘନଫୁଟ ଜାଳକାଠ ମିଳିପାରୁଛି । ଏହି ସବୁ କାରଣରୁ ଆଦୌ ବିନିଯୋଗ ନହୋଇ ପଡ଼ିରହିଥିବା ଦେଶର ବିଶାଳ ପତିତ, ଅନାବାଦୀ ଜମି ଓ ଅର୍ଦ୍ଧବିନିଯୋଗ ହେଉଥିବା ସ୍ୱଳ୍ପ ଆବାଦୀ ଜମିଗୁଡ଼ିକର ଉପଯୁକ୍ତ ବିନିଯୋଗ ଉଦ୍ଦେଶ୍ୟରେ 'ସାମାଜିକ ବନୀକରଣ' ଚିନ୍ତାଧାରାର ସୂତ୍ରପାତ ହୋଇଥିଲା । ଲୋକମାନଙ୍କୁ ସେମାନଙ୍କର

ବନଜାତ ଦ୍ରବ୍ୟର ଚାହିଦା ଯୋଗାଇଦେବାକୁ ହେଲେ, ଆମକୁ ପାରଂପରିକ ସଂରକ୍ଷିତ ଜଙ୍ଗଲ ଛାଡ଼ି ଜଙ୍ଗଲ ବାହାରକୁ ଯିବାକୁ ପଡ଼ିବ ଏବଂ ବନୀକରଣ କାର୍ଯ୍ୟକ୍ରମ ସରକାରୀ ତଥା ବେସରକାରୀ ପତିତ ଓ ଅନାବାଦୀ ଜମିକୁ ସଂପ୍ରସାରଣ କରିବାକୁ ପଡ଼ିବ । ଜଙ୍ଗଲକୁ ପୁନର୍ବାର ଜନବସତି ନିକଟକୁ ଫେରାଇ ଆଣିବାକୁ ଉଦ୍ୟମ କରାଯିବ ।

୧୯୫୨ ମସିହାର ଜାତୀୟ ଜଙ୍ଗଲ ନୀତିରେ 'ଗ୍ରାମ୍ୟ ଜଙ୍ଗଲ' ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା । କିନ୍ତୁ ୧୯୭୬ ମସିହାରେ ଜାତୀୟ କୃଷି କମିଶନ୍‌ହିଁ ପ୍ରଥମଥରପାଇଁ ସାମାଜିକ ବନୀକରଣ ଶବ୍ଦ ବ୍ୟବହାର କରିଥିଲେ । ଏହି କମିଶନ୍ ଉପଲବ୍ଧି କରିଥିଲେ ରାଜ୍ୟର ପାରଂପରିକ ସଂରକ୍ଷିତ ଜଙ୍ଗଲ ସାଧାରଣଜନତାର ମୌଳିକ ବନଜାତ ଦ୍ରବ୍ୟର ଆବଶ୍ୟକତା ପୂରଣ କରିବାପାଇଁ ସମର୍ଥନୁହେଁ । ସାମାଜିକ ବନୀକରଣହିଁ ଏହାର ଏକମାତ୍ର ଉତ୍ତର । ତେଣୁ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେହିଁ ଦେଶର ବିଭିନ୍ନ ରାଜ୍ୟରେ ସାମାଜିକ ବନୀକରଣ ଯୋଜନା ହାତକୁ ନିଆଗଲା । ଆମ ଓଡ଼ିଶାରେ ୧୯୮୩-୮୪ ଆର୍ଥିକ ବର୍ଷରେ ସାମାଜିକ ବନୀକରଣ ପ୍ରକଳ୍ପ ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ କରାଗଲା ।

**ପ୍ରଶ୍ନ : କେଉଁ ପ୍ରକାର ଜମିରେ ସାମାଜିକ ବନୀକରଣ କରାଯାଉଛି ?**

ମୂଳତଃ ଦୁଇ ପ୍ରକାର ଜମିରେ ସାମାଜିକ ବନୀକରଣ କରାଯାଉଛି । ପ୍ରଥମଟି ସରକାରୀ ଜମି, ଦ୍ୱିତୀୟଟି ବ୍ୟକ୍ତିଗତ ଜମି ।

**ସରକାରୀ ଜମି**

– ସରକାରୀ ଅନାବାଦୀ, ପତିତ ଜମି ।
– ଗ୍ରାମ୍ୟ ଜଙ୍ଗଲ / ଗୋଚର ।
– ପଞ୍ଚାୟତ ଜମି, ଭାଗବତ ଟୋଙ୍ଗି, ମେଳଣପଡ଼ିଆ ।
– ରାସ୍ତାକଡ଼, କେନାଲବନ୍ଧ, ପୋଖରୀହୁଡ଼ା, ରେଳଲାଇନ୍ କଡ଼ର ଉଦ୍‌ବୃତ୍ତ ଜମି ।
– 'ଖ' ଶ୍ରେଣୀ ରକ୍ଷିତ ଜଙ୍ଗଲ, ଉଜୁଡ଼ିଯାଇଥିବା ଜଙ୍ଗଲ, ପ୍ରଜାସ୍ୱତ୍ୱ ସଂରକ୍ଷିତ ଜଙ୍ଗଲ, ପଟ୍ଟା ଜଙ୍ଗଲ ।
– ଲଣ୍ଡା ପାହାଡ଼ ।

**ବ୍ୟକ୍ତିଗତ / ଅନୁଷ୍ଠାନ ଜମି**

– ଘରବାଡ଼ି, ବିଲହିଡ଼, ଘରଡିହ, ପଡ଼ିଆ ଓ ଢିପ ଜମି ।
– ସ୍କୁଲ, କଚେରୀ ହତା, ଦେବାଳୟ, ଡାକ୍ତରଖାନା ଓ ଧର୍ମାନୁଷ୍ଠାନ ପ୍ରାଙ୍ଗଣ ।

ରାଜ୍ୟ ସରକାରଙ୍କର ୧୯୬୬ ମସିହାର ଅଧିନିୟମ ଅନୁସାରେ, ପ୍ରତି ଗାଁର ସରହଦ ଭିତରେ ଶତକଡ଼ା ୧୦ ଭାଗ ଜମି ଗ୍ରାମ୍ୟ ଜଙ୍ଗଲପାଇଁ ଓ ଶତକଡ଼ା ୫ ଭାଗ ଜମି ଗୋଚର ପାଇଁ ସଂରକ୍ଷିତ । କିନ୍ତୁ ବର୍ତ୍ତମାନ ଏହି ଗ୍ରାମ୍ୟ ଜଙ୍ଗଲଗୁଡ଼ିକ ପ୍ରାୟତଃ ବୃକ୍ଷଶୂନ୍ୟ । ଅନେକ କ୍ଷେତ୍ରରେ ବେଆଇନ୍ ଜବରଦଖଲ ହୋଇ ବ୍ୟବହୃତ ହେଉଛି । ସାମାଜିକ ବନୀକରଣ କାର୍ଯ୍ୟକ୍ରମରେ ଏହି ବୃକ୍ଷଶୂନ୍ୟ ଗ୍ରାମ୍ୟ ଜଙ୍ଗଲଗୁଡ଼ିକୁ ପୁନର୍ଜୀବିତ କରାଯାଇପାରିବ । ସେହିପରି ଚାରଣ ଜାତୀୟ ଗଛ ଓ ଘାସ ଚାଷ କରି ଗୋଚର ଜମିକୁ ଆବାଦ କରାଯାଇପାରିବ । ମେଳଣ ପଡ଼ିଆ, ଭାଗବତ ଟୋଙ୍ଗି ଓ ପଞ୍ଚାୟତ ଜମିରେ ଆମ୍ବ, ପଣସ ଆଦି ଫଳଗଛ ଓ ଲଘୁ ବନଜାତ

ଦ୍ରବ୍ୟ ଗଛ ଲଗାଯାଉଛି । ଏହାଛଡ଼ା ଉଜୁଡ଼ିଯାଇଥିବା ଜଙ୍ଗଲର ପୁନରୁଦ୍ଧାର ଓ ପୁନଃବନୀକରଣ କାର୍ଯ୍ୟ 'ଖ' ଶ୍ରେଣୀ ସଂରକ୍ଷିତ ଜଙ୍ଗଲ, ସମତଳ ରକ୍ଷିତ ଜଙ୍ଗଲ ଓ ପ୍ରଜାସ୍ୱତ୍ୱ ସଂରକ୍ଷିତ ଜଙ୍ଗଲ ମାନଙ୍କରେ କାର୍ଯ୍ୟକାରୀ ହେଉଛି । ପଥପାର୍ଶ୍ୱ ବନୀକରଣ କାର୍ଯ୍ୟକ୍ରମରେ ରାଜପଥ ପାର୍ଶ୍ୱରେ, ରେଳଲାଇନ୍ ଦୁଇକଡ଼ ଜମିରେ ଏବଂ କେନାଲ୍‌ବନ୍ଧରେ ବୃକ୍ଷରୋପଣ କରାଯାଉଛି । ଲଣ୍ଡା ପାହାଡ଼ରେ ମୃତ୍ତିକା ସଂରକ୍ଷଣ କାର୍ଯ୍ୟକ୍ରମ ସହିତ ବୃକ୍ଷରୋପଣ କରାଯାଇ ସବୁଜିମା ଫେରାଇ ଆଣିବାର ପ୍ରୟାସ ହେଉଛି ।

ଦ୍ୱିତୀୟଟି ଲୋକଙ୍କର ନିଜ ଜମି ବା ବ୍ୟକ୍ତିଗତ ଜମିରେ ବୃକ୍ଷରୋପଣ । ଏଥିରେ ଲୋକେ ନିଜର ଘରବାଡ଼ି, ହତା, ବଗିଚାବାଡ଼, ବିଲହିଡ଼, ଢିପ ବା ଢାଲୁ ଚାଷଜମି ଯେଉଁଥିରୁ ଫସଲ ଆଶାନୁରୂପ ମିଳୁନାହିଁ ସେଠି ଗଛ ଲଗାଇପାରିବେ । ଏହାଛଡ଼ା କିଛି ସରକାରୀ ପତିତଜମି ଗଛ ଚାଷ ଜରିଆରେ ଆବାଦ କରି ଭୂମିହୀନ ଗରିବ ଲୋକଙ୍କ ଭିତରେ ବାଣ୍ଟିଦିଆଯାଉଛି । ସେଥିରୁ କେତେକ ଜମିରେ କୃଷିଭିତ୍ତିକ ବୃକ୍ଷଚାଷ ହେଉଛି ଓ ଅନ୍ୟ କେତେକ ଜମିରେ ସଘନ ଗଛ ଚାଷ କରାଯାଉଛି । ହିତାଧିକାରୀମାନଙ୍କୁ ଗଛ ଉପରେ ମାଲିକାନା ଦିଆଯାଉଛି; କିନ୍ତୁ ଜମି ଉପରେ ନୁହେଁ । ଏହା ବ୍ୟତୀତ ସ୍କୁଲ, କଚେରୀ ହତା, ଦେବାଳୟ, ଧର୍ମାନୁଷ୍ଠାନମାନଙ୍କରେ ମଧ୍ୟ ବୃକ୍ଷରୋପଣ କାର୍ଯ୍ୟକ୍ରମକୁ ସାମାଜିକ ବନୀକରଣ ଜରିଆରେ ଉତ୍ସାହିତ କରାଯାଉଛି ।

ସରକାରୀ ପତିତ, ଅନାବାଦୀ ଜମିରେ, ପଞ୍ଚାୟତ ଜମିରେ ବା ପ୍ରଜାସ୍ୱତ୍ୱ ସଂରକ୍ଷିତ ବନରେ ଯେଉଁ ଜଙ୍ଗଲ ସୃଷ୍ଟି କରାଯାଉଛି, ତାହା ଗାଁର କୋଠ ଜଙ୍ଗଲ ବା କୋଠ ସମ୍ପତ୍ତି । ଏଥିରୁ ଗାଁର ଧନୀ, ଗରିବ, ଛୋଟ ବଡ଼ ସବୁ ପରିବାର କାଠ, ବାଉଁଶ ତଥା ଅନ୍ୟାନ୍ୟ ଆବଶ୍ୟକୀୟ ବନଜାତ ଦ୍ରବ୍ୟ ପାଇବେ । ବ୍ୟକ୍ତିଗତ ଜମିରେ ଯେଉଁ ଗଛ ଲାଗିବ, ସେଥିରେ କେବଳ ବ୍ୟକ୍ତିବିଶେଷର ଅଧିକାର ରହିବ । ଲୋକେ ନିଜର ଜାଳେଣି, ଛୋଟ କାଠ ଆବଶ୍ୟକତା ନିଜ ବାଡ଼ି ବଗିଚାରୁ ମେଣ୍ଟାଇପାରିବେ ।

**ପ୍ରଶ୍ନ : ସାମାଜିକ ବନୀକରଣ ଯୋଜନାଦ୍ୱାରା ଲୋକମାନେ କିଭଳି ଭାବରେ ଉପକୃତ ହେଉଛନ୍ତି ?**

ଗ୍ରାମାଞ୍ଚଳରେ ଜାଳେଣି ସମସ୍ୟାର ସମାଧାନପାଇଁ ପ୍ରଥମେ ସାମାଜିକ ବନୀକରଣ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । କିନ୍ତୁ ବର୍ତ୍ତମାନ ସାମାଜିକ ବନୀକରଣରେ ଭିନ୍ନ ଭିନ୍ନ ପ୍ରଜାତିର ଗଛ ଲଗାଯାଉଥିବାରୁ, ଏଥିରୁ ଜାଳେଣି କାଠ, ଖୁଣ୍ଟ ଡାଳ ଓ ଝଡ଼ାପତ୍ର ସାଙ୍ଗକୁ ଚାଷୋପକରଣ ଯଥା– ହଳ, ଲଙ୍ଗଳ, ଶଗଡ଼ ଚକ, ଅଖ, ମଇ ଇତ୍ୟାଦିପାଇଁ ଛୋଟ କାଠ, ଗୃହନିର୍ମାଣପାଇଁ ଛୋଟ କାଠ ଓ ବାଉଁଶ, ଆମ୍ବ, ପଣସ, କାଜୁ ଆଦି ଫଳ; ତେନ୍ତୁଳି, କରଞ୍ଜ, ମହୁଲ, ଅଁଳା, ପୋଲାଙ୍ଗ ଆଦି ଲଘୁ ବନଜାତ ଦ୍ରବ୍ୟ, ଗାଈଗୋରୁଙ୍କପାଇଁ ଗୋଖାଦ୍ୟ ଜାତୀୟ ଡାଳପତ୍ର, ଗାଁଗହଳିରେ କୁଟୀର ଶିଳ୍ପର ବିକାଶପାଇଁ କଞ୍ଚାମାଲ ମିଳିପାରୁଛି । ଗ୍ରାମାଞ୍ଚଳର ପୁରୁଷ ଓ ମହିଳାମାନଙ୍କୁ ନର୍ସରୀ ତଥା ପ୍ଲାଣ୍ଟେସନ୍ କାମରେ ଯଥେଷ୍ଟ କର୍ମନିଯୁକ୍ତି ମିଳୁଛି । ଉତ୍ପାଦନଭିତ୍ତିକ ବନ ଉପରୁ ଚାପ ହ୍ରାସପାଉଛି । ବୃକ୍ଷରୋପଣ ଦିଗରେ ବ୍ୟାପକ ଜନଚେତନା ସୃଷ୍ଟିକରାଯାଉଛି । ପରିଶେଷରେ ଗାଁର ରୁକ୍ଷ, ଧୂସର ପରିବେଶରେ ସାମାଜିକ ବନ ସବୁଜିମା ଭରିଦେଉଛି ।

**ପ୍ରଶ୍ନ : ଅତୀତରେ ଅନେକ ବୃକ୍ଷରୋପଣ ଯୋଜନା ବିଫଳ ହୋଇଛି । ପ୍ରତିବର୍ଷ ଲକ୍ଷ ଲକ୍ଷ ହେକ୍ଟର ଜମିରେ ଗଛ ଲଗାଯାଉଥିଲେ ମଧ୍ୟ, ବଞ୍ଚିରହୁଥିବା ଗଛର ସଂଖ୍ୟା ବେଶ୍ ନଗଣ୍ୟ । ଏହି ପରିପ୍ରେକ୍ଷୀରେ, ସାମାଜିକ ବନୀକରଣ କାର୍ଯ୍ୟକ୍ରମ କିପରି ସଫଳ ହେବ ବୋଲି ଆପଣ ଆଶା କରୁଛନ୍ତି ?**

ଏହା ଏକ ଗ୍ରାମବିକାଶମୂଳକ ଯୋଜନା । ତେଣୁ ଏହାର ସଫଳତାପାଇଁ ମୂଳରୁ ଜନ ସହଯୋଗ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଉଛି । ପ୍ରଥମ ଅବସ୍ଥାରେ ଏକ ସରକାରୀ କାର୍ଯ୍ୟକ୍ରମ ରୂପେ ଆରମ୍ଭ କରାଯାଉଥିଲେ ମଧ୍ୟ, ଯୋଜନାର ପ୍ରତିଟି ସ୍ତରରେ ଲୋକଙ୍କୁ ଜଡ଼ିତ କରାଇ, ସେମାନଙ୍କୁ ଚାରା ଉତ୍ପାଦନ, ବୃକ୍ଷରୋପଣ, ରୋପିତ ବୃକ୍ଷର ରକ୍ଷଣାବେକ୍ଷଣ, ପରିଚାଳନା ଓ ବଣ୍ଟନ ଆଦି କାର୍ଯ୍ୟକ୍ରମରେ ସାମିଲ କରି, ଭବିଷ୍ୟତରେ ଲୋକମାନେ ଯେପରି ନିଜେ ନିଜ ଗ୍ରାମପାଇଁ ଜଙ୍ଗଲ ସୃଷ୍ଟି କରିପାରିବେ, ସେଥିପାଇଁ ପ୍ରସ୍ତୁତ କରାଯାଉଛି ।

କୌଣସି ଗ୍ରାମରେ ସାମାଜିକ ବନୀକରଣ କାର୍ଯ୍ୟକ୍ରମ ଆରମ୍ଭ କରିବା ପୂର୍ବରୁ, ସେହି ଗାଁର ବନଜାତ ଦ୍ରବ୍ୟର ଆବଶ୍ୟକତା ଅନୁଧାନ କରାଯାଉଛି । ଗାଁରେ ଏକ ସାଧାରଣ ସଭା ଡକାଇ, ଲୋକମାନଙ୍କର ମତାମତ ଅନୁଯାୟୀ ଗ୍ରାମ ବନ କମିଟି ଗଠନ କରାଯାଉଛି । ଗାଁର ଚାହିଦାକୁ ଆଖିଆଗରେ ରଖି, କେଉଁଠି ବୃକ୍ଷରୋପଣ କରାଯିବ; କେଉଁ ଜାତୀୟ ଗଛ ଲଗାଯିବ ତାହା ଗ୍ରାମ ବନ-କମିଟି ସ୍ଥିର କରିଥାଏ । ଏହାଛଡ଼ା ଚାରା ଉତ୍ପାଦନ, ଗାତ ଖୋଳିବା, ଗଛ ଲଗାଇବା ଓ ସାରଦେବା ଆଦି କାମଗୁଡ଼ିକ ମଧ୍ୟ କମିଟି ତଦାରଖରେ ହେବ । ଲଗାଯାଇଥିବା ଗଛଗୁଡ଼ିକର ସୁରକ୍ଷା ତଥା ରକ୍ଷଣାବେକ୍ଷଣ କମିଟିର ଦାୟିତ୍ୱ । ବନ ବିଭାଗ ଓ ଗ୍ରାମବାସୀମାନଙ୍କ ଭିତରେ କମିଟି ଏକ ଯୋଗସୂତ୍ର ଏବଂ ଉଭୟଙ୍କ ଭିତରେ ମିଳିତ ରାଜିନାମା ସଦୃଶ ଯେଉଁ ଯୌଥ ପରିଚାଳନା ଦଲିଲ୍ ପ୍ରସ୍ତୁତ କରାଯିବ ସେଥିରେ ସାମାଜିକ ବନର ପରିଚାଳନା ଦାୟିତ୍ୱ କମିଟିକୁ ହସ୍ତାନ୍ତର କରାଯିବା ବିଷୟ ଉଲ୍ଲେଖ ରହିବ । ଭବିଷ୍ୟତରେ ଜଙ୍ଗଲ କଟାଯିବା ପରେ ଗ୍ରାମବାସୀମାନଙ୍କ ଭିତରେ ସୁଷମ ବଣ୍ଟନ କରାଯିବ ଓ ସେମାନଙ୍କର ଚାହିଦା ପୂରଣ ହୋଇସାରିଲା ପରେ ବଳକାକାଠ ବିକ୍ରି କରାଯାଇ, ବିକ୍ରିଲବ୍ଧ ଧନ ଗ୍ରାମପାଣ୍ଠିରେ ଜମା କରାଯିବ । ଏହି ଅର୍ଥରୁ କିଛି ଅଂଶ ଭବିଷ୍ୟତରେ ପୁନର୍ବାର ବୃକ୍ଷରୋପଣ କାର୍ଯ୍ୟରେ ବିନିଯୋଗ କରାଯିବ । ଅର୍ଥାତ୍ ଥରେ ସରକାରୀ ଉଦ୍ୟମରେ ସାମାଜିକ ବନ ସୃଷ୍ଟି ହେଲା ପରେ ଭବିଷ୍ୟତରେ କିପରି ଗ୍ରାମବାସୀମାନେ ନିଜେ ନିଜ ଗୋଡ଼ରେ ଛିଡ଼ାହେବେ ବା ଗ୍ରାମର ଆବଶ୍ୟକତାପାଇଁ ନିଜେ ନିଜେ କିପରି ଜଙ୍ଗଲ ସୃଷ୍ଟିକରିପାରିବେ, ସେଥିପାଇଁ ସେମାନଙ୍କୁ ପ୍ରସ୍ତୁତ କରାଯାଉଛି । ଆଗରୁ ସେମାନେ କେବଳ ବନସଂପଦର ଉପଭୋକ୍ତା ଥିଲେ । ଏବେ ଉପଭୋକ୍ତା ସାଙ୍ଗକୁ ଉତ୍ପାଦନକାରୀ ମଧ୍ୟ ହେବେ । ଏଥିରୁ ମୋଟାମୋଟି ଅନୁମାନ କରିହେବ, ସାମାଜିକ ବନୀକରଣ ଯୋଜନା କେବଳ ସରକାରୀ କାର୍ଯ୍ୟକ୍ରମରେ ସୀମିତ ନୁହେଁ । ପ୍ରଥମରୁ ଏଥିରେ ଗ୍ରାମବାସୀଙ୍କର ସହଯୋଗ କାମନା କରାଯାଉଛି ଏବଂ ପର୍ଯ୍ୟାୟକ୍ରମେ ସାମାଜିକ ବନଗୁଡ଼ିକର ପରିଚାଳନା ମଧ୍ୟ ସେମାନଙ୍କୁ ହସ୍ତାନ୍ତର କରାଯାଉଛି । ଜନସହଯୋଗହିଁ ସାମାଜିକ ବନୀକରଣ ଯୋଜନାର ସଫଳତାର ଚାବିକାଠି ।



# ଜଙ୍ଗଲ ସୁରକ୍ଷା : କେତୋଟି ଅନାଲୋଚିତ ଦିଗ

ପ୍ରାକୃତିକ ଜଙ୍ଗଲର ବିକଳ୍ପ ନାହିଁ । ଘାସ, ଲତା, ଗୁଳ୍ମ, ବୁଦା ଏବଂ ଛୋଟ ବଡ଼ ଗଛରେ ଭରା ପ୍ରାକୃତିକ ଜଙ୍ଗଲ ପ୍ରକୃତିର ଏକ ଅନବଦ୍ୟ ସୃଷ୍ଟି । କୃତ୍ରିମ ଉପାୟରେ ଚାରି ସ୍ତରର ଏପରି ଜଙ୍ଗଲଟିଏ ସୃଷ୍ଟି କରିବା ସଂଭବ ନୁହେଁ । ତେଣୁ ବନୀକରଣ ବା ବୃକ୍ଷରୋପଣ ସଂଗେ ସଂଗେ ପ୍ରାକୃତିକ ଜଙ୍ଗଲର ସଂରକ୍ଷଣ ତଥା ସୁରକ୍ଷା ସମାନଭାବେ ଗୁରୁତ୍ୱପୂର୍ଣ୍ଣ ।

ଏହା ସତ୍ତ୍ୱେ ବର୍ଷକୁବର୍ଷ ପ୍ରାକୃତିକ ଜଙ୍ଗଲର ଅକ୍ଷୟ ଅବାରିତ ଗତିରେ ବଢ଼ିଚାଲିଛି । ମାତ୍ର ୧୦୦ ବର୍ଷତଳେ ଆମ ଦେଶ ଭାରତର ଶତକଡ଼ା ୪୦ ଭାଗ ଅଂଚଳ ବଣ ଜଙ୍ଗଲରେ ପୂର୍ଣ୍ଣ ଥିଲା । ବର୍ତ୍ତମାନ ସରକାରୀ ହିସାବପତ୍ରରେ ଜଙ୍ଗଲର ପରିମାଣ ଶତକଡ଼ା ୨୨ ଭାଗ ବୋଲି କୁହାଯାଉଛି । କିନ୍ତୁ ସାଟେଲାଇଟ୍ ଚିତ୍ରରୁ ଯାହା ଜଣାପଡ଼େ, ଦେଶର ସମଗ୍ର ଭୂଭାଗର ମାତ୍ର ଶତକଡ଼ା ୧୦ରୁ ୧୨ ଭାଗ ଅଂଚଳରେ ଜଙ୍ଗଲ ଅଛି । ଏକ ସରକାରୀ ରିପୋର୍ଟରୁ ଜଣାଯାଏ ୧୯୫୧ରୁ ୧୯୭୨ ମସିହା ଭିତରେ ଦେଶରେ ବର୍ଷକୁ ପ୍ରାୟ ୩ ଲକ୍ଷ ୮୦ ହଜାର ଏକର ହିସାବରେ ଜଙ୍ଗଲ ନଷ୍ଟହୋଇଛି । ୧୯୭୨ ପରଠାରୁ ଏହି କ୍ଷୟକ୍ଷତିର ପରିମାଣ ଅନେକ ଗୁଣ ବୃଦ୍ଧିପାଇଛି ।

ପ୍ରଗତିକାମୀ ରାଷ୍ଟ୍ରର ଉନ୍ନୟନମୂଳକ କାର୍ଯ୍ୟକ୍ରମ ଓ ପରିବେଶ ସଂରକ୍ଷଣ ଭିତରେ ଯେଉଁ ଅନ୍ତର୍ଦ୍ୱନ୍ଦ୍ୱ ବା ସଂଘର୍ଷ ଲାଗିରହିଛି, ତା'ର ସୂଚନା ଏକ ସରକାରୀ ବିବରଣୀରୁ ଜଣାପଡ଼େ । ପଞ୍ଚବାର୍ଷିକ ଯୋଜନା ଆରଂଭ ପରଠାରୁ ୧୯୭୬ ମସିହା ପର୍ଯ୍ୟନ୍ତ ୨୫ ବର୍ଷ ଭିତରେ ଦେଶର ୪୨ ଲକ୍ଷ ହେକ୍ଟର ଅରଣ୍ୟ ଯୋଜନା କାର୍ଯ୍ୟପାଇଁ ନଷ୍ଟହୋଇଛି । ସେଥିରୁ ୨୫ ଲକ୍ଷ ହେକ୍ଟର ଚାଷ ଜମିରେ ପରିଣତହୋଇଛି । ନଦୀବନ୍ଧ ଯୋଜନାରେ ୪ ଲକ୍ଷ ୭୯ ହଜାର ହେକ୍ଟର ଜଙ୍ଗଲ କଟାଯାଇଛି । ଶିଳ୍ପ ସ୍ଥାପନପାଇଁ ୧ ଲକ୍ଷ ୨୭ ହଜାର ହେକ୍ଟର ଓ ରାସ୍ତାନିର୍ମାଣପାଇଁ ୫୭ ହଜାର ହେକ୍ଟର ଜଙ୍ଗଲ ସଫାକରାଯାଇଛି । ଅନ୍ୟ ବାବଦରେ ଅର୍ଥାତ୍ କୋଠାବାଡ଼ି, ସହର ବଜାର ନିର୍ମାଣ ଉଦ୍ଦେଶ୍ୟରେ ୯ ଲକ୍ଷ ୬୫ ହଜାର ହେକ୍ଟର କଟାଯାଇଛି ବୋଲି ଏହି ତଥ୍ୟରେ ପ୍ରକାଶ ପାଇଛି ।

ଆମ ରାଜ୍ୟ ଓଡ଼ିଶାରେ ମଧ୍ୟ ଅନୁରୂପ ଅବସ୍ଥା । 'ଓରସାକ୍' ଦ୍ୱାରା ସଂଗୃହୀତ ତଥ୍ୟ ଅନୁଯାୟୀ ୧୯୭୨-୭୫ ମଧ୍ୟରେ ଓଡ଼ିଶାରେ ଜଙ୍ଗଲର ଆୟତନ ୪୮ ଲକ୍ଷ ୩୮ ହଜାର ହେକ୍ଟର ଅର୍ଥାତ୍ ଶତକଡ଼ା ୩୧.୦୬ ଭାଗ ଥିଲାବେଳେ, ୧୯୮୦-୮୨ ବେଳକୁ ଏହା ୩୯ ଲକ୍ଷ ୪୨ ହଜାର ହେକ୍ଟରକୁ ଅର୍ଥାତ୍ ୨୫.୩୧ ଭାଗକୁ ହ୍ରାସପାଇଛି । ଅବଶ୍ୟ କେତେକ ପରିବେଶ ବିଜ୍ଞାନୀ, ଏହି ହ୍ରାସର ପରିମାଣକୁ ସରଳ ସମୀକରଣ କରି ଚଳିତ ଶତାବ୍ଦୀ ଶେଷ ବେଳକୁ ଓଡ଼ିଶାରେ ଜଙ୍ଗଲର ପରିମାଣ ଶତକଡ଼ା ୪ ଭାଗରେ ପହଞ୍ଚିବ ବୋଲି ଘୋଷଣା କଲେଣି ! ଜଙ୍ଗଲ ସୁରକ୍ଷା ଦୃଷ୍ଟିକୋଣରୁ ଉଲ୍ଲିଖିତ ତଥ୍ୟର ବିଜ୍ଞାନଭିତ୍ତିକ ପ୍ରକ୍ଷେପଣ (Projection) ନିତ୍ୟାନ୍ତ ଆବଶ୍ୟକ । ଆମ ରାଜ୍ୟରେ ହୀରାକୁଦ, ବାଲିମେଳା ଓ ମାଛକୁଣ୍ଡ

ଆଦି ନଦୀବନ୍ଧ ଯୋଜନାରେ ଏବଂ ବର୍ତ୍ତମାନ କାର୍ଯ୍ୟକାରୀ ହେଉଥିବା ରେଙ୍ଗାଲୀ, ଇନ୍ଦ୍ରାବତୀ ଓ କୋଲାବ ନଦୀବନ୍ଧ ଯୋଜନା ଓ ଅନୁଷଙ୍ଗିକ ଥଇଥାନ କାର୍ଯ୍ୟକ୍ରମରେ ଅନେକ ଜଙ୍ଗଲ ନଷ୍ଟ ହୋଇଛି । ଶିଳ୍ପ ସ୍ଥାପନପାଇଁ ଯେତେ ପରିମାଣରେ ଜଙ୍ଗଲ ସଫାହୋଇଯାଇଛି; ସେଥିରେ ଓଡ଼ିଶାର ସ୍ଥାନ ମଧ୍ୟପ୍ରଦେଶ ତଳକୁ ଦ୍ୱିତୀୟ ।

ଦ୍ରୁତ ଗତିରେ ଜଙ୍ଗଲ ନଷ୍ଟ ହୋଇଯିବାର ଅନ୍ୟଏକ କାରଣ ହେଉଛି, ଉତ୍କଟ ଜାଳେଣି ସମସ୍ୟା । ଗ୍ରାମାଞ୍ଚଳରେ ରନ୍ଧନ କାର୍ଯ୍ୟରେ ଯେତିକି ଜାଳେଣି ଆବଶ୍ୟକ ହୁଏ, ତା'ର ଶତକଡ଼ା ୮୦ରୁ ୮୫ ଭାଗ ଜାଳେଣି କାଠରୁହିଁ ମିଳିଥାଏ । ସେହିପରି ସହରାଞ୍ଚଳରେ ମଧ୍ୟ ରନ୍ଧନ କ୍ରିୟାରେ ବ୍ୟବହୃତ ହେଉଥିବା ଇନ୍ଧନର ଶତକଡ଼ା ୬୦ ଭାଗ ଜାଳେଣିକାଠ ଯୋଗାଇଥାଏ । ଆମ ରାଜ୍ୟର ୨ କୋଟି ୭୦ ଲକ୍ଷ ଲୋକଙ୍କପାଇଁ ବାର୍ଷିକ ୭୫ ଲକ୍ଷ ଘନଫୁଟ ଜାଳେଣିକାଠ ଆବଶ୍ୟକ ହୁଏ । ଶତାବ୍ଦୀ ଶେଷ ବେଳକୁ ଏହି ଚାହିଦା ୧ କୋଟି ଘନଫୁଟରେ ପହଞ୍ଚିବ । ଜାତୀୟ କୃଷି କମିଶନଙ୍କ ନିର୍ଦ୍ଧାରଣ ଅନୁସାରେ ଭାରତୀୟ ଜଙ୍ଗଲକୁ ହେକ୍ଟରପିଛା ୦.୩୧ ଘନଫୁଟ କାଠ ବାର୍ଷିକ ଅମଳ କରାଯାଇପାରେ । ସେଥିରୁ ୦.୧୩ ଘନଫୁଟ ବଡ଼କାଠ ଓ ବଳକା ୦.୧୮ ଘନଫୁଟ ଜାଳକାଠ । ଏହି ହିସାବରେ ଓଡ଼ିଶାରେ ବର୍ତ୍ତମାନ ଥିବା ୩୯,୪୨୫ ବର୍ଗକିଲୋମିଟର ବା ପାଖାପାଖି ୪୦ ଲକ୍ଷ ହେକ୍ଟର ଜଙ୍ଗଲରୁ ବାର୍ଷିକ ମିଳୁଥିବା ଜାଳକାଠର ପରିମାଣ ୭ରୁ ୮ ଲକ୍ଷ ଘନଫୁଟ ମାତ୍ର । ଏହା ବ୍ୟତୀତ ୧୯୮୧-୮୨ ରୁ ୧୯୮୬-୮୭ ମସିହା ଭିତରେ ପ୍ରାୟ ୨ ଲକ୍ଷ ୨୩ ହଜାର ହେକ୍ଟର ଜମିରେ ବୃକ୍ଷରୋପଣ କରାଯାଇଛି । ଏଥିରୁ ଆଉ ୭ ବା ୮ ଲକ୍ଷ ଘନଫୁଟ ଜାଳକାଠ ମିଳିବାର ଆଶା କରାଯାଇପାରେ । ବଳକା ୬୦ ଲକ୍ଷ ଘନଫୁଟ ଜାଳେଣିକାଠ ଚାହିଦାର ଅଳ୍ପକିଛି ଅଂଶ କୃଷିଜାତ ଦ୍ରବ୍ୟର ଅବଶିଷ୍ଟାଂଶ ଓ ଗୋବରଘଷିରୁ ମେଣ୍ଟାଯାଉଛି । କିଂତୁ ମୁଖ୍ୟ ଅଂଶ ବିଶେଷକରି ବଣ ଜଙ୍ଗଲରୁ ଚୋରାରେ ଅଣାଯାଉଛି । ବର୍ଷକୁ ଯଦି ୫୦ ଲକ୍ଷ ଘନଫୁଟ ଜାଳେଣିକାଠ ଜଙ୍ଗଲରୁ ଚୋରାରେ ଆସୁଥାଏ, ସେଥିରେ କେତେ ପରିମାଣରେ ଜଙ୍ଗଲର କ୍ଷୟକ୍ଷତି ଘଟୁଛି, ଏହା ସହଜରେ ଅନୁମେୟ । ଜାଳେଣିକାଠ, ଲୋକମାନଙ୍କର ଏକ ମୌଳିକ ଆବଶ୍ୟକତା ହୋଇଥିବାରୁ ଏହାର ବିକଳ୍ପ ବ୍ୟବସ୍ଥା ନହେଲା ପର୍ଯ୍ୟନ୍ତ, କୌଣସି ସରକାରୀ ବା ବେସରକାରୀ ସଂସ୍ଥାଦ୍ୱାରା ଚୋରାକାରବାରକୁ ବନ୍ଦକରିବା ଏକ ଅବାସ୍ତବ ପରିକଳ୍ପନା ।

କେବଳ ଜାଳକାଠ କାହିଁକି, କାଠର ମଧ୍ୟ କୌଣସି ବିଭିନ୍ନ ବ୍ୟବସ୍ଥା ଏପର୍ଯ୍ୟନ୍ତ ହୋଇପାରିନାହିଁ । ଦିନକୁଦିନ ଯେତିକି ଲୋକସଂଖ୍ୟା ବଢୁଛି, ସେମାନଙ୍କପାଇଁ ସେତିକି ଅଧିକ ବାସଗୃହ ଦରକାର ପଡୁଛି । ପ୍ରତ୍ୟେକ ଘର ତିଆରିରେ ହାରାହାରି ୫୦ରୁ ୬୦ ଘନଫୁଟ କାଠ ଦରକାର ପଡୁଛି । ତା'ଛଡ଼ା ଖଟ, ଟେବୁଲ୍ ଓ ଚୌକି ଆଦି ଆସବାବପତ୍ରର ଚାହିଦା ମଧ୍ୟ ବଢ଼ିଚାଲିଛି । ଆଗକାଳରେ ସାଧାରଣ ଲୋକେ ତଳେ ବସୁଥିଲେ, ସପଉପରେ ଶୋଉଥିଲେ । ଏବେ ଚୌକି ବା ସୋଫାରେ ବସୁଛନ୍ତି । ଖଟ ପଲଙ୍କରେ ଶୋଉଛନ୍ତି । ପ୍ରଗତିର ଅନ୍ୟ ଏକ ଦିଗ ହେଲା ଶିକ୍ଷା ବିସ୍ତାର । ଶିକ୍ଷା ବିସ୍ତାର ନିମନ୍ତେ କାଗଜ ଶିଳ୍ପର ସଂଖ୍ୟା ଦେଶରେ ବଢ଼ି ବଢ଼ି ଚାଲିଛି । ସେ ଦିଗରେ ବର୍ଦ୍ଧିତ କଞ୍ଚାମାଲର ଚାହିଦା ମେଣ୍ଟାଇବାକୁ ଅଧିକରୁ ଅଧିକ କାଠ ଓ ବାଉଁଶର ଆବଶ୍ୟକତା ପଡୁଛି । ନିର୍ମାଣ ଶିଳ୍ପ ବ୍ୟତୀତ ବିଭିନ୍ନ କଳକାରଖାନା, ରେଳ ବିଭାଗ

ଓ ପ୍ରତିରକ୍ଷା ବିଭାଗରେ ମଧ୍ୟ କାଠର ଯଥେଷ୍ଟ ଆବଶ୍ୟକତା ରହିଛି । ଜଙ୍ଗଲ ବିଭାଗ ଦେଶକୁ ବାର୍ଷିକ ପ୍ରାୟ ୪୫୦ରୁ ୫୦୦ କୋଟି ଟଙ୍କା ରାଜସ୍ୱ ଦେଇଥାଏ । ଏହାର ମୁଖ୍ୟ ଅଂଶ କେବଳ ପାଞ୍ଚଟି ରାଜ୍ୟରୁ ମିଳିଥାଏ । ସେହି ରାଜ୍ୟଗୁଡ଼ିକ ହେଉଛି ମଧ୍ୟପ୍ରଦେଶ, ଓଡ଼ିଶା, ମହାରାଷ୍ଟ୍ର, କର୍ଣ୍ଣାଟକ ଓ କେରଳ । ଏଥିରୁ ଦେଶର ଉନ୍ନୟନମୂଳକ କାର୍ଯ୍ୟରେ କାଠର ଆବଶ୍ୟକତା ଓ କାଠର କ୍ରମବର୍ଦ୍ଧିଷ୍ଣୁ ଚାହିଦା ବିଷୟରେ ସବିଶେଷ ଅନୁମାନ କରାଯାଇପାରେ ।

ଆମ ରାଜ୍ୟରେ ଜଙ୍ଗଲସଂପଦ ଧ୍ୱଂସ ପାଇଯିବାର ବିଶେଷ କାରଣ ହେଲା ଗାଁଗହଳିର ଅର୍ଦ୍ଧାଧିକ ଲୋକ କାଠ, ଜାଳକାଠ ଓ ଅନ୍ୟ ଜଙ୍ଗଲଜାତ ଦ୍ରବ୍ୟ ବିକ୍ରୟ କରି ଜୀବିକା ନିର୍ବାହ କରୁଛନ୍ତି । ଜୟପୁର, କୋରାପୁଟ ଓ ରାୟଗଡ଼ା ଆଦି ସହରକୁ ପ୍ରତିଦିନ ହଜାର ହଜାର ଲୋକ କାଠକୋଇଲା ଭାରଧରି ବିକିବାକୁ ଆସନ୍ତି । ଏହାକୁ ସେମାନେ ଜଙ୍ଗଲର କାଠ, ମୂଳ ଓ ଖୁଣ୍ଟାକୁ ପୋଡ଼ି ପ୍ରସ୍ତୁତ କରିଥା'ନ୍ତି । ସେହିପରି ପ୍ରତିଦିନ ମୁହଁସଂଜବେଳକୁ ଅନେକ ସହର ବଜାର, ଗ୍ରାମ୍ୟ ଉପକଣ୍ଠରେ ଏକାଧିକ ସ୍ତ୍ରୀ, ପୁରୁଷ, ଛୋଟପିଲା ଡାଳପତ୍ର, ଝାଟି ଆଦି ମୁଣ୍ଡେଇକରି ଆଣୁଥିବାର ଦୃଶ୍ୟ ଦେଖିବାକୁମିଳେ । ଶହ ଶହ ଲୋକ ସାଇକେଲ୍ ପଛରେ ଜାଳକାଠ ଲଦି ବିକ୍ରୟ କରିବାକୁ ନେଉଥିବାର ଦେଖାଯାଏ । ଛୋଟ ଛୋଟ ଶାଳଗଛକୁ କାଟି ଦାନ୍ତକାଠି କରି ବିକ୍ରୟ କରି ହଜାର ହଜାର ସ୍ତ୍ରୀଲୋକ ଅର୍ଥ ଉପାର୍ଜନ କରନ୍ତି । ଏକ ସମୀକ୍ଷାରୁ ଜଣାଯାଉଛି, ଗାଁଗହଳିରେ ୬୪ ଭାଗ ଲୋକ ଜାଳକାଠ ମାଗଣାରେ ସଂଗ୍ରହ କରିଥା'ନ୍ତି; କିନ୍ତୁ ସହରାଞ୍ଚଳରେ ପ୍ରାୟ ୭୫ ଭାଗ ଲୋକ ଏହି ଜାଳକାଠ ଖରିଦ କରନ୍ତି ଏବଂ ବାକି ୧୮ ଭାଗ ନିଜେ ସଂଗ୍ରହ କରିଥା'ନ୍ତି । ସହରାଞ୍ଚଳରେ ଯେଉଁ ୭୫ ଭାଗ ଲୋକ ଜାଳକାଠ ଖରିଦ କରନ୍ତି; ସେଥିରୁ ଅତିବେଶୀରେ ୧୦ ଭାଗ ଲୋକ ସରକାରୀ କାଠଗୋଲାରୁ କିଣନ୍ତି । ବାକିତକ ଜାଳକାଠକୁ ବେଉସା କରି ଚଳୁଥିବା ଗାଉଁଲି ଲୋକଙ୍କଠାରୁ କିଣିଥା'ନ୍ତି । ଅନେକ ଜାଗାରେ ମୂଲ୍ୟବାନ୍ ଶାଳ, ଶାଗୁଆନ୍ ଗଛ ଏବଂ ଫଳନ୍ତି ଆମ୍ବଗଛକୁ ହାଣି ଜାଳକରିଦିଆଯାଉଛି । ଏହି ଉତ୍କଟ ଜାଳେଣି ସମସ୍ୟାର ସମାଧାନ ନହେଲା ପର୍ଯ୍ୟନ୍ତ, ଜଙ୍ଗଲ ସୁରକ୍ଷା ଅତି କଷ୍ଟକର ବ୍ୟାପାର ।

ଓଡ଼ିଶାର କୋରାପୁଟ, ଗଞ୍ଜାମ, ସୁନ୍ଦରଗଡ଼, ଫୁଲବାଣୀ, କଳାହାଣ୍ଡି ଓ କେନ୍ଦୁଝର ଆଦି ଜିଲ୍ଲାମାନଙ୍କରେ ଆଦିବାସୀମାନେ ସାଧାରଣତଃ ପୋଡୁଚାଷ କରିଥା'ନ୍ତି । ଜଙ୍ଗଲର ବଣବୁଦାକୁ କାଟି ପୋଡ଼ିଦିଆଯାଏ ଓ ସେଠାରେ ଏହି ଚାଷ କରାଯାଏ । ଓଡ଼ିଶାର ପ୍ରାୟ ୭ ଲକ୍ଷ ଆଦିବାସୀ ଏହି ପୋଡୁଚାଷ କରିଥା'ନ୍ତି ଏବଂ ୧ ଲକ୍ଷ ୮୪ ହଜାର ହେକ୍ଟର ଜଙ୍ଗଲ ଏଥିପାଇଁ ନଷ୍ଟ ହୋଉଛି । ପୋଡୁଚାଷ ଅନେକ ଆଦିବାସୀ ସଂପ୍ରଦାୟର ସାମାଜିକ ଚଳଣି । ଏହା ସେମାନଙ୍କର ରୀତି, ନୀତି ଓ ସଂସ୍କୃତି ସହିତ ନିବିଡ଼ଭାବେ ଜଡ଼ିତ । ଏପର୍ଯ୍ୟନ୍ତ ସେମାନଙ୍କୁ ଏହି ପୋଡୁଚାଷରୁ ନିବର୍ତ୍ତାଇବାପାଇଁ କିଛି ଆଖିଦୃଶିଆ ଅଗ୍ରଗତି ହୋଇପାରିନାହିଁ । ତେଣୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ମାନେ, 'ଜଙ୍ଗଲ ଆଦିବାସୀଙ୍କର ଜୀବନ ଓ ଆଦିବାସୀମାନେ ଜଙ୍ଗଲ ଆଦୌ ନଷ୍ଟକରନ୍ତିନାହିଁ ବୋଲି ଯେଉଁ ମତ ପ୍ରକାଶ କରିଥା'ନ୍ତି; ତାହା ଏକ କଳ୍ପନାବିଳାସ ମାତ୍ର ।

ଜଙ୍ଗଲ ଏକ ମୁକ୍ତ ରାଜକୋଷ । ଏକଥା ନିଶ୍ଚିତ ଯେ, ଲୋକମାନେ ଜାଳେଣିକାଠ ଅଭାବରେ ଭୋକ ଉପାସରେ ରହିବେନାହିଁ । କାଠ ନମିଳିଲେ ମୂଳକୁ ତାଡ଼ିକରି ଜାଳିବେ । ପତ୍ର ଗୋଟେଇକରି ଜାଳିବେ । ମୂଲ୍ୟବାନ୍ ଗଛକୁ କାଟିପକାଇବେ । ଯେପର୍ଯ୍ୟନ୍ତ

ଲୋକମାନଙ୍କର ଜାଳକାଠର ଚାହିଦା ମେଣ୍ଟାଯାଇ ନପାରିଛି; କାଠର କୌଣସି ବିକଳ୍ପ ବ୍ୟବସ୍ଥା ନହୋଇଛି ଏବଂ ଜଙ୍ଗଲ ଧ୍ୱଂସକୁ ଜୀବିକାକରି ଚଳୁଥିବା ଲୋକମାନଙ୍କପାଇଁ ବିକଳ୍ପ କର୍ମ ସଂସ୍ଥାନର ବ୍ୟବସ୍ଥା କରାଯାଇନପାରିଛି, ସେପର୍ଯ୍ୟନ୍ତ କୌଣସି ସରକାରୀ ବା ବେସରକାରୀ ଅନୁଷ୍ଠାନଦ୍ୱାରା ଏହି ମୁକ୍ତ ରାଜକୋଷର ସୁରକ୍ଷା ସଂଭବନୁହେଁ ।

ଏହି ପରିପ୍ରେକ୍ଷୀରେ ସାମାଜିକ ବନୀକରଣ ଯୋଜନାରେ କୌଣସି ବାଡ଼ବନ୍ଦୀ, ଜଗୁଆଳି ବା ଫରେଷ୍ଟ ଗାର୍ଡ଼ଦ୍ୱାରା ଜଙ୍ଗଲ ସୁରକ୍ଷାନକରି, ସାମାଜିକ ସୁରକ୍ଷା ଉପରେ ଜୋର୍ ଦିଆଯାଉଛି । ଏହି ଯୋଜନାରେ ଲୋକମାନେ ନିଜର ଜାଳକାଠ, ଛୋଟକାଠ ଓ ବାଉଁଶ କୃଷି ଉପକରଣପାଇଁ କାଠ, ଗାଈଗୋରୁଙ୍କପାଇଁ ଚାରଣ ନିଜ ଗାଁପାଖ ଗ୍ରାମ୍ୟ ଜଙ୍ଗଲରୁ ପାଇପାରିବେ । ଏହି ଜଙ୍ଗଲଗୁଡ଼ିକର ସୁରକ୍ଷା ତଥା ପରିଚାଳନା ଦାୟିତ୍ୱ ଗ୍ରାମବାସୀଙ୍କର । ପ୍ରଥମ ପର୍ଯ୍ୟାୟରେ ବୃକ୍ଷରୋପଣ ନିମନ୍ତେ ସମସ୍ତ ଆର୍ଥିକ ତଥା ବୈଷୟିକ ସାହାଯ୍ୟ ବନବିଭାଗ ଯୋଗାଇଦେବ । ପରିଚାଳନାରେ ମଧ୍ୟ ସହାୟତା କରିବ । କିଂତୁ ତିନିବର୍ଷ ପରେ ରକ୍ଷଣାବେକ୍ଷଣ ଓ ପରିଚାଳନା ଦାୟିତ୍ୱ ଗ୍ରାମବାସୀଙ୍କର ପ୍ରତିନିଧି ଗ୍ରାମ-କମିଟିକୁ ହସ୍ତାନ୍ତର କରାଯିବ । ଅନେକ କ୍ଷେତ୍ରରେ ଦେଖାଯାଉଛି, ଜଙ୍ଗଲ ହସ୍ତାନ୍ତର ଠିକ୍‌ଭାବେ କାର୍ଯ୍ୟକାରୀ ହୋଇପାରୁନାହିଁ । ଅଧିକାଂଶ ଗ୍ରାମବାସୀ ପରିଚାଳନା ଓ ରକ୍ଷଣାବେକ୍ଷଣର ଗୁରୁଦାୟିତ୍ୱ ମୁଣ୍ଡେଇବାକୁ ପ୍ରସ୍ତୁତନୁହନ୍ତି । ଏପରିକି ପ୍ରଥମ ବର୍ଷରୁ ମଧ୍ୟ ବାଡ଼ବୁଜିବା ଓ ଜଗୁଆଳି ଦେବାପାଇଁ ଜଙ୍ଗଲ ବିଭାଗକୁ ଅନୁରୋଧ କରୁଛନ୍ତି ।

ଜଙ୍ଗଲ ସୁରକ୍ଷା ଏକ ଜଟିଳ ସମସ୍ୟା । ଏକ ୧୦ ହେକ୍ଟର ଗ୍ରାମ୍ୟ ଜଙ୍ଗଲର ମୂଲ୍ୟ ଏକ ଲକ୍ଷ ଟଙ୍କା ବା ଅଧିକ ହୋଇପାରେ । ଗ୍ରାମବାସୀମାନେହିଁ ଏହି ସଂପଦର ଏକକ ଉପଭୋକ୍ତା । ତଥାପି ମଧ୍ୟ ଜଙ୍ଗଲର ପରିଚାଳନା ଓ ସୁରକ୍ଷା ଦାୟିତ୍ୱ ନେବାକୁ ସେମାନେ ଅନେକ ଜାଗାରେ ଆଗଭର ହେଉନାହାନ୍ତି । ଏହା ପଛରେ ବହୁବିଧ କାରଣ ଥାଇପାରେ । ପ୍ରଥମତଃ ବନ ବିଭାଗ ଗ୍ରାମବାସୀମାନଙ୍କୁ ଉପଯୁକ୍ତଭାବେ ଅନୁପ୍ରାଣିତ କରିପାରିନଥାଏ । ଦ୍ୱିତୀୟତଃ ବନ ବିଭାଗ ପ୍ରତି ଲୋକମାନଙ୍କର ବହୁଯୁଗରୁ ରହିଆସିଥିବା ଆଶଙ୍କା ଓ ଅବିଶ୍ୱାସ ! କିଂତୁ ମୁଖ୍ୟ କାରଣ ହେଲା ଦାୟିତ୍ୱ ନେବାକୁ ଓ ଝଞ୍ଜାଳରେ ପଶିବାକୁ ଜନସାଧାରଣଙ୍କର ଅନିଚ୍ଛା । ସେମାନେ ଉପଭୋକ୍ତା ହେବାକୁ ଚାହାନ୍ତି; କିଂତୁ ଉତ୍ପାଦନକାରୀ ହେବାକୁ ଚାହାନ୍ତିନାହିଁ ।

ଏ କଥା ସତ ଯେ, ଢେଙ୍କାନାଳ ଓ କୋରାପୁଟ ଜିଲ୍ଲାର ଅନେକ ଗ୍ରାମରେ ଲୋକମାନେ କ୍ଷୟପ୍ରାପ୍ତ ଶାଳ ଜଙ୍ଗଲର ରକ୍ଷଣାବେକ୍ଷଣ ଓ ସୁରକ୍ଷା ଦାୟିତ୍ୱ ନେଇଛନ୍ତି; କିଂତୁ ଏହି ଜଗାରଖା ସେମାନେ ପ୍ରାୟ ତିନି, ଚାରି ବର୍ଷପାଇଁ କରନ୍ତି । ଶାଳଗଛଗୁଡ଼ିକ ବାଡ଼ବୁଜିବାପାଇଁ ଉପଯୁକ୍ତ ହୋଇଗଲେ, ରାତାରାତି ସେଗୁଡ଼ିକ କାଟିନିଅନ୍ତି । ଏଥିପାଇଁ ସମୟେ ସମୟେ ଭୀଷଣ ଗୋଷ୍ଠୀକନ୍ଦଳର ମଧ୍ୟ ସୂତ୍ରପାତ ହୋଇଥାଏ । ତେଣୁ ସାଧାରଣ ଲୋକଙ୍କ ଉପରେ ଜଙ୍ଗଲ ସୁରକ୍ଷା ଛାଡ଼ିଦେଲେ ଯେ ଜଙ୍ଗଲ ଧ୍ୱଂସ ବନ୍ଦହୋଇଯିବ; ଏହା ଏକ ଅପରିପକ୍ୱ ଚିନ୍ତାଧାରା । ପ୍ରଥମେ ଏ ଦିଗରେ ବ୍ୟାପକ ଜନସଚେତନତା ସୃଷ୍ଟି ହେବା ଦରକାର । ଲୋକମାନେ ଗାଁ ପାଖ ଗ୍ରାମ୍ୟ ଜଙ୍ଗଲରୁ ନିଜନିଜର ମୌଳିକ କାଠ ଓ ଜାଳକାଠ ଆବଶ୍ୟକତା ଯେପରି ପୂରଣ କରିପାରିବେ; ସେଥିପାଇଁ ନିର୍ଦ୍ଦିଷ୍ଟ ପଦକ୍ଷେପ ନିଆଯିବା ଉଚିତ । ଏହା ସଂଭବ ହୋଇପାରିଲେ ପ୍ରାକୃତିକ ଜଙ୍ଗଲର ସୁରକ୍ଷା ଆୟାସସାଧ୍ୟ ହେବ ।



# ''ସାବଧାନ ! କାଠଖିଆ ବାଘ ଆସିଛି !''

''ସାବଧାନ୍ ! କାଠଖିଆ ବାଘ ଆସିଛି ।'' ଏହା ଏକ ପ୍ରାଚୀର ପତ୍ରର ଶିରୋନାମା । ଶୀର୍ଷକଟି ଶୁଣିବାକୁ ଯେତିକି ଚମକପ୍ରଦ; ଟିକିଏ ଅନୁଧ୍ୟାନ କଲେ ସେତିକି ଦୁଃଖଦାୟକ ମଧ ମନେହୁଏ । ଦୁଃଖର କାରଣ ହେଲା, କାଠଖିଆ ବାଘ ହିସାବରେ ପ୍ରାଚୀର ପତ୍ରଟିରେ ଯାହାକୁ ଚିତ୍ରଣ କରାଯାଇଛି ସେ ଅନ୍ୟ କେହି ନୁହେଁ; ତାହା ହେଉଛି 'ସାମାଜିକ ବନୀକରଣ' ବିଭାଗ । ଏହି ପ୍ରାଚୀର ପତ୍ରଟି ପ୍ରସ୍ତୁତ କରାଯାଇ ବହୁଳଭାବରେ ବିତରଣ କରାଯାଉଛି; ନୟାଗଡ଼ ଜିଲ୍ଲାସ୍ଥ କେଶରପୁର ଗ୍ରାମର ଏକ ପ୍ରତିଷ୍ଠିତ ସ୍ୱେଚ୍ଛାସେବୀ ଅନୁଷ୍ଠାନ 'ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ' ଆନୁକୂଲ୍ୟରେ ।

'ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ' ବିଗତ ବର୍ଷମାନଙ୍କରେ ନୟାଗଡ଼ ଓ ତା'ର ଆଖପାଖ ଅଂଚଳରେ ଜନସାଧାରଣଙ୍କ ଭିତରେ ପରିବେଶ ସଚେତନତା ସୃଷ୍ଟି କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଆସିଛି । ୧୯୮୫ ମସିହାରେ ଯେତେବେଳେ ପୁରୀ ଜିଲ୍ଲାରେ ସାମାଜିକ ବନୀକରଣ କାର୍ଯ୍ୟକ୍ରମ ଆରମ୍ଭ କରାଗଲା, ସେ ସମୟରୁ ମଧ ଏହି ଅନୁଷ୍ଠାନ ତରଫରୁ ସାମାଜିକ ବନୀକରଣ ବିଭାଗକୁ ଯଥେଷ୍ଟ ସାହାଯ୍ୟ ଓ ସହଯୋଗ ମିଳିଛି । ଆଖପାଖ ଗାଁଗଣ୍ଡାମାନଙ୍କରେ ଜନଜାଗରଣ ସୃଷ୍ଟି କରି ସାମାଜିକ ବନୀକରଣ କାର୍ଯ୍ୟକ୍ରମକୁ ସଫଳ ରୂପାୟନ କରିବାରେ ସେହି ଅନୁଷ୍ଠାନର ଅବଦାନକୁ ଅସ୍ୱୀକାର କରିହେବନାହିଁ । ତେବେ ବର୍ତ୍ତମାନ ପ୍ରଶ୍ନଉଠୁଛି; ଏପରି ଅବିଶ୍ୱାସର ବାତାବରଣ ସୃଷ୍ଟିହେଲା କିପରି ? ସାମାଜିକ ବନୀକରଣ ବିଭାଗ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମଧରେ ଭାବର ଆଦାନ ପ୍ରଦାନରେ ଫାଟ ରହିଲା କେଉଁଠି ?

ଓଡ଼ିଶାରେ ଏକଦା କାର୍ଯ୍ୟକାରୀ ହେଉଥିବା, ସାମାଜିକ ବନୀକରଣ ଯୋଜନାର ମୂଳଲକ୍ଷ୍ୟ ଥିଲା, ଜନସାଧାରଣଙ୍କୁ ସେମାନଙ୍କର ଜଙ୍ଗଲଜାତ ଦ୍ରବ୍ୟର ମୌଳିକ ଆବଶ୍ୟକତା ପୂରଣ କରିବାରେ ସ୍ୱାବଲମ୍ବୀ କରାଇବା । ଏହି ମୌଳିକ ଚାହିଦାଗୁଡ଼ିକ ହେଲା ଜାଳେଣିକାଠ, ଗୃହ ନିର୍ମାଣ ତଥା ହଳ ଲଙ୍ଗଳପାଇଁ ଛୋଟ କାଠ, ଘର ଛପରପାଇଁ ବାଉଁଶ, ଗାଈଗୋରୁଙ୍କ ପାଇଁ ଚାରଣ ଏବଂ ଲଘୁ ବନଜାତ ଦ୍ରବ୍ୟ ଇତ୍ୟାଦି । ଗ୍ରାମୀଣ ଜନସାଧାରଣ ନିଜ ନିଜର ବନଜାତ ଦ୍ରବ୍ୟର ଚାହିଦା ନିଜ ଗାଁପାଖ ଗ୍ରାମ୍ୟ ଜଙ୍ଗଲରୁ ପୂରଣକରିପାରିବେ । ଫଳତଃ ସରକାରୀ ଜଙ୍ଗଲ ଉପରେ ସେହି ପରିମାଣର ଚାପ ହ୍ରାସପାଇବ । ଆଜିପର୍ଯ୍ୟନ୍ତ ଜନସାଧାରଣ ବିଭିନ୍ନ ସତ୍ୱାଧିକାର ସୂତ୍ରରେ ନିଜର ଆବଶ୍ୟକତା ମେଣ୍ଟାଇବା ନିମନ୍ତେ ବନଜାତ ପଦାର୍ଥର 'ଉପଭୋକ୍ତା' ମାତ୍ର ଥିଲେ । ପର୍ଯ୍ୟାୟକ୍ରମେ ସେମାନଙ୍କୁ 'ଉତ୍ପାଦନକାରୀ'ରେ ପରିବର୍ତ୍ତିତ କରିବାର ଲକ୍ଷ୍ୟ ରଖାଯାଇଥିଲା । ଏକଥା ନିଶ୍ଚିତ ଯେ ପ୍ରକଳ୍ପ ଆରମ୍ଭରୁ କର୍ତ୍ତୃପକ୍ଷଙ୍କ ଦ୍ୱାରା ନୁହେଁ, ଏହି ଯୋଜନାଟି କେବଳ ପରିବେଶର ସୁରକ୍ଷାପାଇଁ ଗାଁମାନଙ୍କରେ ସ୍ଥାୟୀ ଜଙ୍ଗଲସମ୍ପଦ ସୃଷ୍ଟି କରାଯିବାର ଲକ୍ଷ୍ୟ ରଖାଯାଇନଥିଲା । କିନ୍ତୁ ଉଦ୍ଦେଶ୍ୟ ଥିଲା, ଗ୍ରାମବାସୀମାନେ ନିରବଚ୍ଛିନ୍ନ ଭାବରେ ଗ୍ରାମ୍ୟ ଜଙ୍ଗଲରୁ

ଅମଳ ପାଇପାରିବେ ଓ ଉପକୃତ ହେବେ । ଅମଳକ୍ଷମ ହେଲା ପରେ ଜଙ୍ଗଲକୁ ପର୍ଯ୍ୟାୟକ୍ରମେ କାଟିବେ ଓ କଟାଯାଇଥିବା ସ୍ଥାନରେ ପୁନର୍ବାର ବୃକ୍ଷରୋପଣ କରିବେ । ବୃକ୍ଷରୋପଣ ପ୍ରାରମ୍ଭରୁ ପ୍ରତ୍ୟେକ ପ୍ରକଳ୍ପ ଗ୍ରାମରେ ଏକ ଯୌଥ ପରିଚାଳନା ଦଲିଲ୍ ପ୍ରସ୍ତୁତ କରାଯାଇଥିଲା । ଅମଳ ପାଇଁ ମଧ୍ୟ ଏକ ପରିଚାଳନା କାର୍ଯ୍ୟସୂଚୀ ପ୍ରସ୍ତୁତ ହେଉଥିଲା ।

ଅନେକ ଆଶା ଓ ଆକାଂକ୍ଷାକୁ ଭିତ୍ତିକରି ସାମାଜିକ ବନ ଯୋଜନାର ରୂପାୟନ କରାଯାଇଥିଲା । କିଂତୁ ସମୟକ୍ରମେ, କେତେକ ଘଟଣା ଘଟିଲା, ଯାହାଫଳରେ କି କାର୍ଯ୍ୟଧାରା ଲକ୍ଷ୍ୟଚ୍ୟୁତ ହେବାକୁ ଲାଗିଲା । ଯୋଜନାର ନିୟମ ଅନୁସାରେ ଗ୍ରାମ୍ୟ ଜଙ୍ଗଲରୁ ଉତ୍ପାଦିତ ଦ୍ରବ୍ୟର ଶତକଡ଼ା ଶହେ ଭାଗ (୧୦୦%) ଗ୍ରାମବାସୀମାନଙ୍କୁହିଁ ମିଳିଥାଏ । ବୃକ୍ଷରୋପଣ ତଥା ତିନିବର୍ଷପାଇଁ ରକ୍ଷଣାବେକ୍ଷଣର ସମସ୍ତ ଖର୍ଚ୍ଚ ସରକାର ବହନ କରୁଥିବା ସତ୍ତ୍ୱେ ଉତ୍ପାଦିତ ଜଙ୍ଗଲଜାତ ଦ୍ରବ୍ୟରେ ସରକାରଙ୍କର କିଛି ଭାଗନାହିଁ । ଏହା ସଂପୂର୍ଣ୍ଣରୂପେ ଗ୍ରାମବାସୀଙ୍କର । ତେଣୁ ଦୁଇ ବର୍ଷ ପୂରିବା ସଙ୍ଗେ ସଙ୍ଗେ ଏହି ଜଙ୍ଗଲଗୁଡ଼ିକୁ ଆନୁଷ୍ଠାନିକ ଭାବେ ଗ୍ରାମବାସୀଙ୍କୁ ହସ୍ତାନ୍ତର କରିଦିଆଯାଇଥିଲା । ଗ୍ରାମବାସୀମାନଙ୍କ ମନରେ ସରକାର ଓ ବନ ବିଭାଗ ପ୍ରତି ବିଶ୍ୱସନୀୟତା ସୃଷ୍ଟିକରିବାହିଁ ଏହାର ଲକ୍ଷ୍ୟ ଥିଲା ।

ଗ୍ରାମ୍ୟ ଜଙ୍ଗଲଗୁଡ଼ିକର ସୁପରିଚାଳନା ଉଦ୍ଦେଶ୍ୟରେ ୧୯୮୫ ମସିହାରେ ଗ୍ରାମ୍ୟ ଜଙ୍ଗଲ ଆଇନ୍ (Village Forest Rule) ପ୍ରଣୟନ କରାଗଲା । ଏହାଦ୍ୱାରା ଗ୍ରାମ ବନ-କମିଟି (Village Forest Committee) ଆଇନ ଅନୁଯାୟୀ ନୀତିଗତ ଭାବରେ ପରିଚାଳନା ଅଧିକାର ପାଇଲେ । ଏହି ଆଇନ୍‌ରେ ଉଲ୍ଲେଖ ଥିଲା, ଗ୍ରାମବାସୀ ବା ଉପଭୋକ୍ତା କେବଳ ନିଜସ୍ୱ ବ୍ୟବହାର ନିମନ୍ତେ ଗ୍ରାମ୍ୟ ଜଙ୍ଗଲରୁ ବନଜାତ ଦ୍ରବ୍ୟ ପାଇବା ନିମନ୍ତେ ହକ୍‌ଦାର ହେବେ । ମାତ୍ର ତାହା ସେମାନେ ବିକ୍ରିବଟା କରିପାରିବେନାହିଁ । ପରବର୍ତ୍ତୀ କାଳରେ ୧୯୮୯ ମସିହାରେ ଏହି ଆଇନ୍‌ରେ ପରିବର୍ତ୍ତନ କରାଯାଇ ଗ୍ରାମ୍ୟ ଜଙ୍ଗଲରୁ ଉତ୍ପାଦିତ ବଳକା ଦ୍ରବ୍ୟକୁ ବିକ୍ରି କରିବା ପାଇଁ ହିତାଧିକାରୀମାନଙ୍କୁ ତଥା ଗ୍ରାମ ବନ-କମିଟିକୁ ଅନୁମତି ଦିଆଗଲା । ଥରେ ବିକ୍ରି କରିବାର ଅଧିକାର ମିଳିଗଲା ପରେ, ଉତ୍ପାଦିତ ସମସ୍ତ ବନଜାତ ଦ୍ରବ୍ୟ ଗ୍ରାମବାସୀମାନଙ୍କପାଇଁ ବଳକା ମନେହେଲା । ସେମାନେ ଆଗରୁ ଯେପରି ପାଖ ସରକାରୀ ଜଙ୍ଗଲରୁ ଜାଳେଣି, ଖୋଟୋଠ ଆଦି ସଂଗ୍ରହ କରି ନିଜର ଚାହିଦା ମେଣ୍ଟାଉଥିଲେ, ସେପରି କରିବାକୁ ଲାଗିଲେ ଏବଂ ଗ୍ରାମ୍ୟ ଜଙ୍ଗଲର ସମସ୍ତ ଉତ୍ପାଦିତ ଦ୍ରବ୍ୟକୁ ବିକ୍ରି କରିଦେବାକୁ ମସୁଧା କଲେ ।

୧୯୯୨ ମସିହାରେ ଜଙ୍ଗଲରୁ ଉପଲବ୍ଧ ହେଉଥିବା ଜଙ୍ଗଲଜାତ ଦ୍ରବ୍ୟର ଚାଲାଣ ଉପରେ ଥିବା ସରକାରୀ କଟକଣା ୧୮ ଟି ଗଛପାଇଁ ସରକାର ଉଠାଇଦେଲେ । ଏହି ଗଛଗୁଡ଼ିକ ମଧ୍ୟରେ ଗ୍ରାମ୍ୟ ଜଙ୍ଗଲରେ ଲଗାଯାଇଥିବା ଇଉକାଲିପଟସ୍, ଆକାସିଆ ଓ ଚାକୁଣ୍ଡା ଆଦି ଅନ୍ତର୍ଭୁକ୍ତ । ନିଜ ଘରବାଡ଼ିର ବା ଗ୍ରାମ୍ୟ ଜଙ୍ଗଲର ଗଛ ବିକିବାକୁ ପରମିଟ୍ ହାସଲପାଇଁ ଗ୍ରାମବାସୀମାନଙ୍କୁ ଯେଉଁ ଧାଁଧପଡ଼ କରିବାକୁ ପଡୁଥିଲା, ସେଥିରୁ ମୁକ୍ତି ମିଳିଲା । କିଂତୁ ଏହି ସୁବିଧା ନେଇ ଗ୍ରାମ ବନ-କମିଟିର କେତେକ ପ୍ରଭାବଶାଳୀ ବ୍ୟକ୍ତି ଓ ଅସାଧୁ ବ୍ୟବସାୟୀମାନେ ମେଣ୍ଟ କରି ଗ୍ରାମ୍ୟ ଜଙ୍ଗଲକୁ ରାତାରାତି କାଟି ନିମ୍ନ ଦରରେ ବିକ୍ରି କରିବାକୁ ଲାଗିଲେ । ସେଥିରୁ ନିଜର ମୁନାଫା

ଉଠାଇଲେ । ପ୍ରକୃତ ଉପଭୋକ୍ତା ଅର୍ଥାତ୍ ଗ୍ରାମବାସୀ ବିଶେଷକିଛି ଲାଭ ପାଇଲେନାହିଁ । କିଂତୁ ଯେଉଁ ସବୁ ଗଛର ମାଲାଣ ଉପରୁ ସରକାରୀ କଟକଣା ଉଠିଲାନାହିଁ, ସେଠି ଗଛ ବିକ୍ରିପାଇଁ ଗ୍ରାମବାସୀମାନେ ପ୍ରକଳ୍ପର ସହାୟତା ଲୋଡ଼ିଲେ । ଫଳରେ ଉତ୍ପାଦନ କାର୍ଯ୍ୟକ୍ରମକୁ ନିୟନ୍ତ୍ରଣ କରାଯାଇପାରିଲା । ସେମାନେ କାଠପାଇଁ ଉପଯୁକ୍ତ ଦର ପାଇଲେ ଏବଂ ପୁନଃବନୀକରଣ ମଧ୍ୟ କଲେ ।

ସାମାଜିକ ବନ ପ୍ରକଳ୍ପ ତରଫରୁ ଯେଉଁ କାର୍ଯ୍ୟକ୍ରମଗୁଡ଼ିକ ଗ୍ରହଣ କରାଯାଇଥିଲା, ତା'ର ଅନେକ ମହତ୍ ଉଦ୍ଦେଶ୍ୟ ଥିଲା । ଗ୍ରାମବାସୀମାନେହିଁ ଗ୍ରାମ୍ୟ ଜଙ୍ଗଲର ମାଲିକ । ଏହି ଅଧିକାର ସାବ୍ୟସ୍ତ ଦିଗରେ ସେମାନଙ୍କୁ କିପରି ଆଇନ୍‌ଗତ ସୁରକ୍ଷା ଦିଆଯାଇପାରିବ ଏଥିପାଇଁ ଅବିରତ ଚେଷ୍ଟା ଜାରିରହିଥିଲା । ମୁଦ୍ରାର ଦୁଇପାଖ ପରି ପ୍ରତ୍ୟେକ କାର୍ଯ୍ୟକ୍ରମର ଭଲ ଦିଗ ଥାଏ, ମନ୍ଦ ଦିଗ ମଧ୍ୟ ଥାଏ । ଗ୍ରାମ ବନ-କମିଟିର କେତେକ ପ୍ରଭାବଶାଳୀ ବ୍ୟକ୍ତି ବା ଗାଁର ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଏହି ମନ୍ଦ ଦିଗଟିର ଫାଇଦା ଉଠାଇଲେ । ବିଧିବିଧାନ ଓ ଆଇନ୍ ବ୍ୟବସ୍ଥାର ଯେଉଁ ସରଳୀକରଣ କରାଗଲା, ତା'ର ଦୁରୂପଯୋଗ କଲେ । ଫଳରେ ଗ୍ରାମବାସୀମାନଙ୍କୁ କ୍ଷମତାପନ୍ନ (empowerment) କରିବାପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ରମ ସେମାନଙ୍କୁ ଶୋଷଣ କରିବା ଦିଗରେ ବ୍ୟବହାର କରାଗଲା । ପରିଶେଷରେ ଯୋଜନାର ସୁଫଳ ପାଇବାରୁ ସେମାନେ ବଂଚିତ ହେଲେ । ତେଣୁ ଯେଉଁ 'କାଠଖିଆ ବାଘ' କଥା 'ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ' ଦ୍ୱାରା ପ୍ରସାରିତ ପ୍ରାଚୀର ପତ୍ରରେ ଉଲ୍ଲେଖ କରାଯାଇଛି, ସେ ବାଘଟି ସାମାଜିକ ବନୀକରଣ ବିଭାଗ ନୁହେଁ । ବରଂ ସେ ବାଘଟି ମଣିଷ ମନ ଭିତରେ ଲୁଚିଛପି ରହିଥିବା ଲୋଭ, ଅବାଞ୍ଛିତ ଲାଳସା ଓ ଅର୍ଥ ଆତ୍ମସାତ୍‌ର ପ୍ରବୃତ୍ତି । ବାସ୍ତବିକ୍ ଲୋଭ ଓ ଲାଳସାର ବିକଳ୍ପନାହିଁ । କେବଳ ଆଇନ୍‌କାନୁନ୍ ସରଳ କରିଦେଲେ ବା ଗ୍ରାମବାସୀମାନଙ୍କୁ କ୍ଷମତା ହସ୍ତାନ୍ତର କରିଦେଲେ, ସମସ୍ୟାର ସମାଧାନ ହୋଇଯିବନାହିଁ । ଏଥିପାଇଁ ସେମାନଙ୍କର ସାମାଜିକ ଚେତନା ବିକଶିତ ହେବା ଦରକାର । ଚିନ୍ତାଧାରାରେ ପରିବର୍ତ୍ତନ ହେବା ଆବଶ୍ୟକ । ନିଜ ଭଲ ମନ୍ଦର ନିଷ୍ପତ୍ତି ସେମାନେ ନିଜେ ନେଇପାରୁଥିବା ଉଚିତ । ଏହି ପରିପ୍ରେକ୍ଷୀରେ 'ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ' ପରି ଗାଁଗହଳିରେ କାର୍ଯ୍ୟକରୁଥିବା ସମସ୍ତ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର ଗୁରୁଦାୟିତ୍ୱ ରହିଛି ।



# ଜଙ୍ଗଲ ସୁରକ୍ଷାପାଇଁ ପଦକ୍ଷେପ

ବିଗତ ବର୍ଷମାନଙ୍କରେ ଲକ୍ଷ୍ୟ କରାଯାଇଛି, ଆମ ଦେଶର ତଥା ରାଜ୍ୟର ଜଙ୍ଗଲସମ୍ପଦ ଦିନକୁଦିନ ଦ୍ରୁତ ଗତିରେ ହ୍ରାସପାଇଚାଲିଛି । ଷଷ୍ଠ ଦଶକରେ ରାଜ୍ୟର ମୋଟ ଭୌଗୋଳିକ ଆୟତନର ଶତକଡ଼ା ୪୩ ଭାଗ ଅଞ୍ଚଳ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । କିନ୍ତୁ ବିଗତ ଦଶକରେ ଜଙ୍ଗଲ ବିଭାଗ ରେକର୍ଡ଼ରେ ଦର୍ଶାଯାଇଥିବା ଜଙ୍ଗଲର ପରମାଣ ୫୭,୧୮୪ ବର୍ଗ କି.ମି. ଅର୍ଥାତ୍ ରାଜ୍ୟର ଆୟତନର ଶତକଡ଼ା ୩୬.୭୩ ଭାଗ ଅଟେ । ଭାରତୀୟ ଜଙ୍ଗଲ ସର୍ଭେ ବିଭାଗ ୧୯୯୧ ମସିହାରେ ସାଟେଲାଇଟ୍ ଫଟୋଚିତ୍ର ଅନୁଶୀଳନ କରି ଯେଉଁ ତଥ୍ୟ ପ୍ରକାଶ କଲେ, ସେଥିରେ ରାଜ୍ୟରେ ଜଙ୍ଗଲର ପରିମାଣ ୪୭,୨୦୭ ବର୍ଗ କି.ମି. ଦର୍ଶାଯାଇଛି; ଯାହା କି ଭୌଗୋଳିକ ଆୟତନର ମାତ୍ର ଶତକଡ଼ା ୩୦ ଭାଗକୁ ହ୍ରାସପାଇଛି । ତନ୍ମଧ୍ୟରୁ ଘଞ୍ଚ ଜଙ୍ଗଲ ଅର୍ଥାତ୍ ଶତକଡ଼ା ୪୦ ଭାଗରୁ ଅଧିକ ସାନ୍ଦ୍ରତା ଥିବା ଜଙ୍ଗଲର ଆୟତନ ୨୭,୩୪୯ ବର୍ଗ କି.ମି. ଥିଲାବେଳେ, ଖୋଲା ଜଙ୍ଗଲ ବା ଶତକଡ଼ା ୧୦ ଭାଗରୁ ୪୦ ଭାଗ ସାନ୍ଦ୍ରତା ଥିବା ଜଙ୍ଗଲ ୧୯,୬୬୧ ବର୍ଗ କି.ମି. ଅଟେ । ପୁନଶ୍ଚ ୧୯୯୭ ମସିହାରେ ସେହି ବିଭାଗ ତରଫରୁ ଯେଉଁ ସର୍ଭେ ରିପୋର୍ଟ ବାହାରିଛି, ସେଥିରେ ରାଜ୍ୟର ମୋଟ ଜଙ୍ଗଲର ଆୟତନ ୪୬,୯୪୧ ବର୍ଗ କି.ମି. ଦର୍ଶାଯାଇଛି । ଯାହାକି ପୂର୍ବାପେକ୍ଷା ୨୬୬ ବର୍ଗ କି.ମି. କମ୍ ଅଟେ । ଏହି ରିପୋର୍ଟ ଅନୁସାରେ ଘଞ୍ଚ ଜଙ୍ଗଲର ଆୟତନ ୨୬,୧୦୧ ବର୍ଗ କି.ମି.କୁ ଖସିଆସିଛି । ଏଥିରୁ ପ୍ରତିପାଦିତ ହୁଏ, ବିଗତ ୬ ବର୍ଷ ମଧ୍ୟରେ ପ୍ରାୟ ୧୨୪୮ ବର୍ଗ କି.ମି. ଘଞ୍ଚ ଜଙ୍ଗଲ କ୍ଷୟପ୍ରାପ୍ତ ହୋଇ ଖୋଲା ଜଙ୍ଗଲରେ ପରିଣତ ହୋଇଥିବାସ୍ଥଳେ, ପ୍ରାୟ ୨୮୦ ବର୍ଗ କି.ମି. ଖୋଲା ଜଙ୍ଗଲ ସଂପୂର୍ଣ୍ଣ ଧ୍ୱଂସପାଇ ଲତା, ଗୁଳ୍ମ ଶୂନ୍ୟହେଲାଣି ବା ନଣ୍ଡା ପାହାଡ଼ରେ ପରିଣତହେଲାଣି । ଯେଉଁ ସବୁ ଜିଲ୍ଲାରେ ଅଧୁନା ଜଙ୍ଗଲର ଆୟତନରେ ଅବକ୍ଷୟ ଘଟିଛି, ସେଗୁଡ଼ିକ ହେଲା– କେଉଁଝର, ମୟୂରଭଞ୍ଜ, କୋରାପୁଟ ଓ ମାଲ୍‌କାନ୍‌ଗିରି ।

ସ୍ୱାଭାବିକ ଭାବେ ଏଠି ପ୍ରଶ୍ନ ଉଠିପାରେ, ସରକାରଙ୍କର ଏତେବଡ଼ ଜଙ୍ଗଲ ବିଭାଗ ବା ବନ ବିଭାଗ ରହି ମଧ୍ୟ ଜଙ୍ଗଲର ଆୟତନ କାହିଁକି କମି କମି ଯାଉଛି । ଜଙ୍ଗଲ ହେଉଛି ଏକ ଖୋଲା ଗନ୍ତାଘର ବା ମୁକ୍ତ ରାଜକୋଷ । ଜାତୀୟ ଜଙ୍ଗଲ ନୀତି ଅନୁସାରେ, ସ୍ଥାନୀୟ ଲୋକମାନଙ୍କର ଜଙ୍ଗଲଜାତ ଦ୍ରବ୍ୟର ମୌଳିକ ଆବଶ୍ୟକତା ପୂରଣକରିବାହିଁ ଜଙ୍ଗଲର ପ୍ରଥମ ଲକ୍ଷ୍ୟ । ଏହି ମୌଳିକ ଚାହିଦାଗୁଡ଼ିକ ହେଲା– ଜାଳେଣିପାଇଁ କାଠ, କୃଷିପାଇଁ ଓ ଘର ଛପରପାଇଁ ଛୋଟକାଠ ତଥା ବାଉଁଶ ଏବଂ ଗାଈ ଗୋରୁଙ୍କପାଇଁ ଚାରଣ । ରାଜ୍ୟର ଦ୍ରୁତ ଜନସଂଖ୍ୟା ବିସ୍ଫୋରଣ ପରିପ୍ରେକ୍ଷୀରେ ଏହା ବିଚାର କରାଯାଉ । ୧୯୯୧ ମସିହା ଜନଗଣନା ଅନୁସାରେ, ଆମ ରାଜ୍ୟର ଲୋକସଂଖ୍ୟା ୩ କୋଟି ୧୫ ଲକ୍ଷ ଥିଲାବେଳେ ୧୯୯୮ ବେଳକୁ ଏହା ୩ କୋଟି ୬୦ ଲକ୍ଷରେ ପହଞ୍ଚିଲାଣି । ସେହିପରି ରାଜ୍ୟର ଗୋସମ୍ପଦ ସଂଖ୍ୟା ୨ କୋଟି ୫୦

ଲକ୍ଷ । ଏତେସଂଖ୍ୟକ ଲୋକଙ୍କପାଇଁ ଜାଳେଣିକାଠ ଓ ଗାଈଗୋରୁଙ୍କପାଇଁ ଚାରଣର ଯେଉଁ ବିପୁଳ ଆବଶ୍ୟକତା ରହିଛି, ତା'ର ପ୍ରଭାବ ଜଙ୍ଗଲ ଉପରେ ପଡୁଛି । ଶତାବ୍ଦୀ ଶେଷ ବେଳକୁ ଜାଳକାଠ, ବାଉଁଶ ଏବଂ ଚାରଣ ଆବଶ୍ୟକତାର ଯେଉଁ ଆକଳନ କରାଯାଇଛି ତାହା ତୁଳନାରେ ଆମ ଜଙ୍ଗଲରୁ ମିଳୁଥିବା ଏହି ସବୁ ଦ୍ରବ୍ୟର ପରିମାଣ ଅତି ନଗଣ୍ୟ । ଚାହିଦା ବା ଆବଶ୍ୟକତା ଓ ଉପଲବ୍ଧି ଭିତରେ ଏହି ଯେଉଁ ବ୍ୟବଧାନ ରହିଛି, ତାହା ଦିନକୁଦିନ ଜନସଂଖ୍ୟା ଓ ପଶୁଧନ ସହିତ ବଢ଼ି ବଢ଼ି ଚାଲିଛି ।

ଅନ୍ୟପକ୍ଷରେ ଜଙ୍ଗଲସମ୍ପଦ ରକ୍ଷାକରିବା ଦାୟିତ୍ୱରେ ଥିବା ବନରକ୍ଷୀମାନଙ୍କର ସଂଖ୍ୟା ବିଗତ କୋଡ଼ିଏ ବର୍ଷ ତଳେ ଯାହା ଥିଲା, ପ୍ରାୟ ସେହି ସଂଖ୍ୟାରେ ସୀମିତ ଅଛି । ସଂପ୍ରତି ଆମ ରାଜ୍ୟରେ ସିଧାସଳଖ ଜଙ୍ଗଲ ସୁରକ୍ଷା ଦାୟିତ୍ୱରେ ଥିବା ବନପକ୍ଷୀଙ୍କ ସଂଖ୍ୟା ପ୍ରାୟ ତିନି ହଜାର । ଅନେକ କ୍ଷେତ୍ରରେ ଜଣେ ବନରକ୍ଷୀ ଦାୟିତ୍ୱରେ ପ୍ରାୟ ୧୫ରୁ ୧୭ ବର୍ଗ କିଲୋମିଟର ଜଙ୍ଗଲ ଅଞ୍ଚଳର ସୁରକ୍ଷା ଦାୟିତ୍ୱ ପଡୁଛି । ତାକୁ ଆମେ ଜଙ୍ଗଲ ସୁରକ୍ଷାପାଇଁ ସାଇକେଲ୍‌ଟିଏ ବା ଠେଙ୍ଗାଖଣ୍ଡେ ଦେଇନାହୁଁ । ଦିନ ଥିଲା ବନରକ୍ଷୀର ଖାକି ପୋଷାକକୁ ଦେଖି କାଠଚୋରମାନେ ଭୟ କରୁଥିଲେ । ଏବେ କିନ୍ତୁ ସେମାନେ ଅଧିକ ସୁସଂଗଠିତ ଏବଂ ବିଭିନ୍ନ ମାରଣାସ୍ତ୍ରରେ ସଜ୍ଜିତ ହୋଇ ଜଙ୍ଗଲସମ୍ପଦ ଲୁଟ୍ କରୁଛନ୍ତି । ବନ ବିଭାଗ ଚିନ୍ତାକରୁଛିଯେ, ପ୍ରତି ବନରକ୍ଷୀର ଇଲାକା, ଜଙ୍ଗଲ ଥିବା ଅଞ୍ଚଳରେ ୫,୬ ବର୍ଗ କିଲୋମିଟରକୁ କମେଇଦେବା ଦରକାର ଏବଂ ଜଙ୍ଗଲ ନଥିବା ଅଞ୍ଚଳରେ ତାକୁ ମାତ୍ର ୫,୬ଟି ଗାଁର ଦାୟିତ୍ୱ ଦିଆଗଲେ, ଜଙ୍ଗଲ ସୁରକ୍ଷା କାର୍ଯ୍ୟ ଅଧିକ ଫଳପ୍ରଦ ହୋଇପାରିବ । କିନ୍ତୁ ଏଥିପାଇଁ ଆହୁରି ଅଧିକ ୫୦୦୦ରୁ ୬୦୦୦ ବନରକ୍ଷୀ ବା ଫରେଷ୍ଟ ଗାର୍ଡ଼ଙ୍କର ଆବଶ୍ୟକତା ରହିଛି । ତାହା ପୂରଣକରିବାପାଇଁ ରାଜ୍ୟର ଆର୍ଥିକ ସମ୍ବଳର ଘୋର ଅଭାବ ।

ଜଙ୍ଗଲ ଆମର ଜାତୀୟ ସମ୍ପତ୍ତି । ଯାହା ଲକ୍ଷ୍ୟକରାଯାଉଛି, ଏହି ବିଶାଳ ଜାତୀୟ ସମ୍ପତ୍ତିର ସୁରକ୍ଷା କେବଳ ସରକାରୀ ସ୍ତରରେ ସଂଭବନୁହେଁ । ଜନସାଧାରଣଙ୍କ ସକ୍ରିୟ ସହଯୋଗ ବିନା, ଯେତେ କର୍ମଚାରୀଙ୍କ ସଂଖ୍ୟା ବଢ଼ାଇଲେ ବା ଯେତେ ଆଧୁନିକ ଅସ୍ତ୍ର-ଶସ୍ତ୍ରରେ ସେମାନଙ୍କୁ ସଜ୍ଜିତ କଲେ ମଧ, ଜଙ୍ଗଲ ନଷ୍ଟ ହେବାକୁ ରୋକାଯାଇ ପାରିବନାହିଁ । ଆମ ରାଜ୍ୟ ଓଡ଼ିଶାରେ ଏହି କ୍ଷୟପ୍ରାପ୍ତ ଜଙ୍ଗଲର ସୁରକ୍ଷା ଓ ପୁନର୍ବିନ୍ୟାସପାଇଁ ଗୋଷ୍ଠୀଗତ ଉଦ୍ୟମ ୧୯୫୦ ମସିହାଠାରୁ ଆରମ୍ଭ ହୋଇଛି । ବିଭିନ୍ନ ଗ୍ରାମର ଗ୍ରାମବାସୀମାନେ ନିଜ ଉଦ୍ୟମରେ ଏବଂ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ପ୍ରେରଣା ଓ ସହାୟତାରେ ଗତ ସତୁରୀ ଓ ଅଶୀ ଦଶକରୁ ଜଙ୍ଗଲ ସୁରକ୍ଷା କାର୍ଯ୍ୟ ଆରମ୍ଭ କରିଥିଲେ ।

କିନ୍ତୁ ଆମ ରାଜ୍ୟରେ ବିଧିବଦ୍ଧ ଭାବରେ ଗ୍ରାମବାସୀମାନଙ୍କର ସହଯୋଗରେ ଜଙ୍ଗଲ ସୃଷ୍ଟିକରିବା ଓ ତା'ର ରକ୍ଷଣାବେକ୍ଷଣ କାର୍ଯ୍ୟକ୍ରମ ଆରମ୍ଭ ହେଲା ୧୯୮୪ ମସିହାରେ; ଯେତେବେଳେ ସୁଇଡେନ୍ ସରକାରଙ୍କର ସହାୟତାରେ ରାଜ୍ୟରେ ସାମାଜିକ ବନୀକରଣ ଯୋଜନା କାର୍ଯ୍ୟକାରୀ କରାଗଲା । ଏହି ଯୋଜନାରେ ଗ୍ରାମବାସୀ ଓ ଜଙ୍ଗଲ ବିଭାଗର ସହଯୋଗରେ ଗ୍ରାମ୍ୟ ଜଙ୍ଗଲର ଯୁଗ୍ମ ପରିଚାଳନା ବା ଯୌଥ ପରିଚାଳନା ଚିନ୍ତାଧାରା ପ୍ରଥମେ

ପ୍ରକାଶ ପାଇଥିଲା । ସାମାଜିକ ବନୀକରଣ କରାଯାଇଥିବା ପ୍ରତ୍ୟେକଟି ଗ୍ରାମରେ ଗ୍ରାମ ବନ କମିଟି ଗଠନ କରାଯାଇଥିଲା ଓ 'ଯୌଥ ପରିଚାଳନା ଦଲିଲ୍' ପ୍ରସ୍ତୁତ କରାଯାଇ ଗ୍ରାମବାସୀଙ୍କ ସହଯୋଗରେ ଜଙ୍ଗଲର ସୁରକ୍ଷା ତଥା ପରିଚାଳନା କରାଯାଉଥିଲା । ୧୯୮୮ ମସିହା ଅଗଷ୍ଟ ମାସରେ ରାଜ୍ୟ ସରକାର ଗାଁର ପରିସୀମାକୁ ଲାଗିଥିବା ସଂରକ୍ଷିତ ଜଙ୍ଗଲକୁ ସଂପୃକ୍ତ ଗ୍ରାମବାସୀମାନଙ୍କ ସହାୟତାରେ ସୁରକ୍ଷା ପ୍ରଦାନକରିବାପାଇଁ ଏକ ଯୋଜନା ପ୍ରସ୍ତୁତ କଲେ । ପୁନଶ୍ଚ ୧୯୯୦ ମସିହାରେ ଏହି ଘୋଷଣାନାମାର ପରିସରକୁ ବଢ଼ାଯାଇ ଯୁଗ୍ମ ବନ ପରିଚାଳନା କାର୍ଯ୍ୟକ୍ରମରେ ରକ୍ଷିତ ଜଙ୍ଗଲକୁ ମଧ୍ୟ ଅନ୍ତର୍ଭୁକ୍ତ କରାଗଲା । ଏହି ନିର୍ଦ୍ଦେଶନାମାରେ ଗ୍ରାମ୍ୟ ସ୍ତରୀୟ ସୁରକ୍ଷା କମିଟିମାନ ଗଠନ କରିବାକୁ ପରାମର୍ଶ ଦିଆଯାଇଥିଲା । ଗ୍ରାମ କମିଟିମାନେ ସରକାରଙ୍କର ଜଙ୍ଗଲ ବିଭାଗକୁ ସଂରକ୍ଷିତ ଓ ରକ୍ଷିତ ଜଙ୍ଗଲର ସୁରକ୍ଷାପାଇଁ ଯେଉଁ ସାହାଯ୍ୟ କରିବେ; ତା'ର ପ୍ରତିବଦଳରେ ନିଜନିଜର ଆବଶ୍ୟକତା ମୁତାବକ ଛୋଟକାଠ ଓ ଜାଳେଣି କାଠ ବିନାରୟାଲ୍‌ଟିରେ ପାଇପାରିବାର ବ୍ୟବସ୍ଥା ରହିଛି ।

କିଂତୁ କେତେକ କାରଣରୁ ଏହି ଯୋଜନା ଅନୁଯାୟୀ ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମରେ ଜନସହଯୋଗ ହାସଲକରିବା ଲକ୍ଷ୍ୟ ଆଶାନୁରୂପ ସଫଳ ହୋଇପାରିଲାନାହିଁ । କାରଣ, ଯୋଜନାରେ ଜଙ୍ଗଲ ସୁରକ୍ଷା ସରକାରଙ୍କର ତଥା ବନ ବିଭାଗର ପ୍ରାଥମିକ ଓ ସାମୂହିକ ଦାୟିତ୍ୱ ରୂପେ ଗଣାଯାଇଥିଲା ଏବଂ ଗ୍ରାମବାସୀମାନଙ୍କୁ କେବଳ ରୟାଲ୍‌ଟି ଛାଡ଼ କରିବାର ଆଶା ଦେଖାଇ କିଛି ସାହାଯ୍ୟ ମଗାଯାଇଥିଲା । ଜଙ୍ଗଲ ସୁରକ୍ଷା ଯେ ଜନସାଧାରଣଙ୍କର ପ୍ରାଥମିକ ଦାୟିତ୍ୱ ଏବଂ ମୌଳିକ ବନଜାତ ଦ୍ରବ୍ୟ ଉପରେ ସେମାନଙ୍କର ପ୍ରଥମ ଅଧିକାର ଥିବା ବିଷୟ ନିର୍ଦ୍ଦେଶନାମାରେ ସ୍ପଷ୍ଟ କରାଯାଇନଥିଲା; ତେଣୁ ଲୋକମାନେ ନିଜ ଜଙ୍ଗଲକୁ ନିଜେ ସୁରକ୍ଷାଦେବେ ଓ ବନ ବିଭାଗ ସେମାନଙ୍କୁ ଏ କାର୍ଯ୍ୟରେ ସହାୟତା କରିବ; ଏଭଳି ଏକ ଦିକ୍‌ଦର୍ଶନର ଆବଶ୍ୟକତା ପରେ ଅନୁଭୂତ ହେଲା । ୧୯୯୩ ମସିହାରେ ପ୍ରକାଶିତ ହୋଇଥିବା ରାଜ୍ୟ ସରକାରଙ୍କ ଘୋଷଣାଟି ଏହି ଆବଶ୍ୟକତା ପୂରଣ କଲା । ଏହି ଘୋଷଣାରେ ମିଳିତ ଜଙ୍ଗଲ ପରିଚାଳନାର ରୂପରେଖ ଦିଆଗଲା ଏବଂ ଜଙ୍ଗଲ ସୁରକ୍ଷାରେ ଅଂଶଗ୍ରହଣ କରୁଥିବା ଗ୍ରାମଗୁଡ଼ିକରେ 'ବନ ସଂରକ୍ଷଣ ସମିତି' ଗଠନ କରାଗଲା । ଜଙ୍ଗଲ ବିଭାଗ ଓ ଗ୍ରାମବାସୀ କ୍ଷୟପ୍ରାପ୍ତ ଜଙ୍ଗଲର ପୁନରୁଦ୍ଧାର ଓ ସୁରକ୍ଷା ଦିଗରେ ସମାନ ଅଂଶୀଦାର ଭାବରେ କାର୍ଯ୍ୟ କରିବେ । ସେମାନଙ୍କ ଭିତରେ କର୍ତ୍ତା ଓ ଅନୁଗୃହୀତାର ସମ୍ବନ୍ଧ ନରହି ସମାନ ବା ପାର୍ଟନରର ସମ୍ବନ୍ଧ ରହିବ । ଯୋଜନା ଅନୁଯାୟୀ ରାଜ୍ୟ ବନ ବିଭାଗ ଓ ବନ ସଂରକ୍ଷଣ ସମିତି ମଧ୍ୟରେ ଏକ ବୁଝାମଣା ପତ୍ର ସ୍ୱାକ୍ଷରିତ ହେବ । ସେଥିରେ ଥିବା ପ୍ରତିଶ୍ରୁତି ଅନୁଯାୟୀ ଗ୍ରାମବାସୀମାନେ ଶୁଖିଲା ଝଡ଼ା ଡାଳପତ୍ର, ଘାସ, ଝୁଣା, ଲାଖ ଓ ଅନ୍ୟାନ୍ୟ ଲଘୁ ବନଜାତ ଦ୍ରବ୍ୟକୁ କୌଣସି ମାସୁଲ୍ ବା ରୟାଲ୍‌ଟି ନଦେଇ ସଂଗ୍ରହକରିବାପାଇଁ ଅଧିକାର ପାଇବେ । ତା'ଛଡ଼ା ସମୟ ସମୟରେ ସେହି ଜଙ୍ଗଲରୁ ଯେଉଁ ଶୁଖିଲା ଅଧାପୋଡ଼ା କାଠ, ସରୁକାଠ ବା ବଲ୍ଲୀ ବାହାରିବ, ତାକୁ ଶତ ପ୍ରତିଶତ ଗ୍ରାମବାସୀମାନଙ୍କ ମଧ୍ୟରେ କାର୍ଯ୍ୟନିର୍ବାହୀ ସଭ୍ୟମାନଙ୍କଦ୍ୱାରା ସୁଷମ ଭାବେ ବଣ୍ଟନ କରାଯିବ । କିଛି ବର୍ଷ ପର୍ଯ୍ୟନ୍ତ ଯଦି ଯୁଗ୍ମ ପରିଚାଳନା ଯୋଜନା ସନ୍ତୋଷଜନକ

ଭାବେ କାର୍ଯ୍ୟକାରୀ ହୁଏ ତେବେ ଗ୍ରାମାବାସୀମାନଙ୍କୁ ପରିପକ୍ୱ କାଠ ଓ ବାଉଁଶ ଅମଳ ସମୟରେ ଶତକଡ଼ା ୫୦ ଭାଗ କାଠ, ବାଉଁଶ ବା ତହିଁର ବିକ୍ରିଲବ୍ଧ ଅର୍ଥ ପ୍ରାପ୍ୟ ହେବ ।

୧୯୯୬ ମସିହା ସେପ୍ଟେମ୍ବର ମାସରେ ରାଜ୍ୟ ସରକାର ଏହି ଘୋଷଣାନାମାର ପରିସରକୁ ଅଧିକ ସଂପ୍ରସାରିତ କରି 'ସଂକଳ୍ପ' ନାମରେ ଏକ ନିର୍ଦ୍ଦେଶନାମା ଜାରିକରିଛନ୍ତି । ଏଥିରେ କୁହାଯାଇଛି ଯେ, ବନ ପରିଚାଳନାରେ ଗ୍ରାମବାସୀମାନଙ୍କୁ ସମ ଅଂଶୀଦାର ଭାବେ ସଂଶ୍ଳିଷ୍ଟ କରି, ସେମାନଙ୍କୁ ଜଙ୍ଗଲଜାତ ସାମଗ୍ରୀ ଉପରେ ପୂର୍ବରୁ ସ୍ଥିରୀକୃତ ନିର୍ଦ୍ଦିଷ୍ଟ ସ୍ୱତ୍ୱ ଓ ଅଧିକାର ପ୍ରଦାନ କରାଯିବ ଏବଂ ଗ୍ରାମକୁ ଜଙ୍ଗଲ ପରିଚାଳନାର ମୌଳିକ ସୋପାନରୂପେ ଧରିବାକୁ ହେବ । ଏଥିପାଇଁ ଯୌଥ ପରିଚାଳନା ଅନ୍ତର୍ଭୁକ୍ତ ପ୍ରତିଟି ଜଙ୍ଗଲକୁ ପ୍ରଥମେ 'ଗ୍ରାମ୍ୟ ଜଙ୍ଗଲ' ରୂପେ ଘୋଷଣା କରାଯିବ ।

ଏହି ପରିପ୍ରେକ୍ଷୀରେ ଏ କଥା ନିଶ୍ଚିତ ଯେ, ଏବେ ଜଙ୍ଗଲ ଗ୍ରାମାବାସୀଙ୍କର ନିଜସ୍ୱ ସଂପତ୍ତି । ତେଣୁ ଆଉ ବିଳମ୍ବ ନକରି ନିଜ ଜଙ୍ଗଲର ସୁରକ୍ଷା ତଥା ରକ୍ଷଣାବେକ୍ଷଣ ଓ ପରିଚାଳନାପାଇଁ ଆମେ ନିଜେ ଆଗେଇଆସିବା ଉଚିତ । ଡେରି କଲେ ନେଡ଼ିଗୁଡ଼ କହୁଣୀକୁ ବୋହିଯିବ ।



# ଜନସହଯୋଗରେ ଜଙ୍ଗଲ ସୁରକ୍ଷା

ଜଙ୍ଗଲ ଆମର ଜାତୀୟ ସଂପତ୍ତି । ଏହା ଏକ ମୁକ୍ତ ରାଜକୋଷ ବା ଖୋଲା ଗନ୍ତାଘର କହିଲେ ଅତ୍ୟୁକ୍ତି ହେବନାହିଁ । ବିଗତ ବର୍ଷମାନଙ୍କରେ ଲକ୍ଷ୍ୟ କରାଯାଇଛି, ଆମ ଦେଶର ତଥା ରାଜ୍ୟର ଜଙ୍ଗଲସମ୍ପଦ ଦିନକୁ ଦିନ ଦ୍ରୁତଗତିରେ ହ୍ରାସପାଇଚାଲିଛି । ଷଷ୍ଠ ଦଶକରେ ଆମ ରାଜ୍ୟର ମୋଟ ଭୌଗୋଳିକ ଆୟତନର (ଭୌଗୋଳିକ ଆୟତନ = ୧,୫୫,୭୦୭ ବର୍ଗ କିଲୋମିଟର) ଶତକଡ଼ା ୪୩ ଭାଗ ଅଞ୍ଚଳ ଜଙ୍ଗଲ ପରିପୂର୍ଣ୍ଣ ଥିଲା । ବିଗତ ଦଶକରେ ଜଙ୍ଗଲ ବିଭାଗର ରେକର୍ଡ଼ରେ ଦର୍ଶାଯାଇଥିବା ଜଙ୍ଗଲର ପରିମାଣ ୫୭,୧୮୪ ବର୍ଗ କି.ମି. ଅର୍ଥାତ୍ ଭୌଗୋଳିକ ଆୟତନର ଶକକଡ଼ା ୩୬,୨୩ ଭାଗ ଅଟେ । ତନ୍ମଧ୍ୟରୁ –

ସଂରକ୍ଷିତ ଜଙ୍ଗଲ (Reserve forest) = ୨୭,୦୮୭ ବର୍ଗ କି.ମି.

ରକ୍ଷିତ ଜଙ୍ଗଲ (Protected forest) = ୩୦,୦୮୦ ବର୍ଗ କି.ମି.

ଅନ୍ୟାନ୍ୟ (Unclassed forest) = ୧୭ ବର୍ଗ କି.ମି.

ମୋଟ ଜଙ୍ଗଲ = ୫୭,୧୮୪ ବର୍ଗ କି.ମି.

ଭାରତୀୟ ଜଙ୍ଗଲ ସର୍ଭେ ବିଭାଗ, ସାଟେଲାଇଟ୍ ଫଟୋଚିତ୍ର ଅନୁଶୀଳନରୁ ବିଭିନ୍ନ ବର୍ଷ ମାନଙ୍କରେ ରାଜ୍ୟରେ ଥିବା ଜଙ୍ଗଲର ଆୟତନ ସମ୍ପର୍କରେ ଯାହା ତଥ୍ୟ ପ୍ରକାଶ କରିଛନ୍ତି ତା'ର ଏକ ତୁଳନାତ୍ମକ ବିବରଣୀ ତଳେ ଦିଆଗଲା ।

## ଫଟୋଚିତ୍ର ସର୍ଭେର ପ୍ରାମାଣିକ ତଥ୍ୟ :

ଆୟତନ = ବର୍ଗ କିଲୋମିଟର

| ସାନ୍ଦ୍ରତା ଦୃଷ୍ଟିରୁ ଜଙ୍ଗଲର ବିଭକ୍ତୀକରଣ | ସର୍ଭେ ରିପୋର୍ଟ ପ୍ରକାଶନ ବର୍ଷ | | | | | |
|---|---|---|---|---|---|---|
| | ୧୯୮୭ | ୧୯୮୯ | ୧୯୯୧ | ୧୯୯୩ | ୧୯୯୫ | ୧୯୯୭ |
| ୧ । ଘଞ୍ଚ ଜଙ୍ଗଲ (୪୦ ଭାଗରୁ ଅଧିକ ସାନ୍ଦ୍ରତା) | ୨୮,୫୭୩ | ୨୭,୫୬୧ | ୨୭,୩୪୯ | ୨୭,୧୫୧ | ୨୭,୧୬୩ | ୨୬,୧୦୧ |
| ୨ । ଖୋଲା ଜଙ୍ଗଲ (ଶତକଡ଼ା ୧୦ରୁ ୪୦ ଭାଗ ସାନ୍ଦ୍ରତା) | ୨୪,୩୯୧ | ୧୯,୩୮୪ | ୧୯,୬୬୧ | ୧୯,୬୯୯ | ୧୯,୭୪୯ | ୨୦,୬୨୯ |
| ୩ । ଲୁଣା ଜଙ୍ଗଲ | ୧୯୯ | ୧୯୨ | ୧୯୫ | ୧୯୫ | ୧୯୫ | ୨୧୧ |
| ମୋଟ ଜଙ୍ଗଲର ଆୟତନ | ୫୩,୧୬୩ | ୪୭,୧୩୭ | ୪୭,୨୦୭ | ୪୭,୧୪୫ | ୪୭,୧୦୭ | ୪୬,୯୪୧ |

୧୯୯୭ ମସିହାରେ ପ୍ରକାଶିତ ସର୍ଭେ ରିପୋର୍ଟ ମୁତାବକ ସାଟେଲାଇଟ୍ ଫଟୋଚିତ୍ର ଅନୁଶୀଳନରୁ ଜଣାଯାଏ, ପ୍ରକୃତପକ୍ଷେ ସଂପ୍ରତି ଜଙ୍ଗଲର ଆୟତନ ଶତକଡ଼ା ୩୦ ଭାଗକୁ କମିଯାଇଛି । ତନ୍ମଧ୍ୟରୁ ଘଞ୍ଚଜଙ୍ଗଲ ଅର୍ଥାତ୍ ଶତକଡ଼ା ୪୦ ଭାଗରୁ ଅଧିକ ସାନ୍ଦ୍ରତା ଥିବା ଜଙ୍ଗଲର ଆୟତନ ୨୬,୧୦୦ ବର୍ଗ କି.ମି.; ଅର୍ଥାତ୍ ଅପାତତଃ ମାତ୍ର ୧୬ରୁ ୧୭ ଭାଗ ଅଞ୍ଚଳରେ ଘଞ୍ଚ ଜଙ୍ଗଲ ରହିଛି । ପୁନଶ୍ଚ ୧୯୯୫ ଓ ୧୯୯୭ ମସିହାର ସର୍ଭେ ରିପୋର୍ଟକୁ ତୁଳନା କଲେ ଦେଖାଯିବ, ଘଞ୍ଚ ଜଙ୍ଗଲର ଆୟତନ ୧,୦୬୨ ବର୍ଗ କି.ମି. କମିଯାଇଥିବାବେଳେ, ଖୋଲା ଜଙ୍ଗଲ ଏବଂ ଲୁଣା ଜଙ୍ଗଲର ଆୟତନ ଯଥାକ୍ରମେ ୮୮୦ ଓ ୧୬ ବର୍ଗ କିଲୋମିଟର ବଢ଼ିଛି । ଏଥିରୁ ପ୍ରତିପାଦିତ ହୁଏ, ଦୁଇବର୍ଷ ମଧ୍ୟରେ ପ୍ରାୟ ୧୦୦୦ ବର୍ଗ କି.ମି. ଘଞ୍ଚଜଙ୍ଗଲ କ୍ଷୟପ୍ରାପ୍ତ ହୋଇ ଖୋଲାଜଙ୍ଗଲରେ ପରିଣତ ହୋଇଥିବାସ୍ଥଳେ, ପ୍ରାୟ ୬୩୩ ବର୍ଗ କି.ମି. ଖୋଲାଜଙ୍ଗଲ ସଂପୂର୍ଣ୍ଣ ଧ୍ୱଂସ ହୋଇ ଲତା, ଗୁଳ୍ମ ଶୂନ୍ୟହୋଇଗଲାଣି । ଯେଉଁ ଜିଲ୍ଲାମାନଙ୍କରେ ଜଙ୍ଗଲର ଆୟତନରେ ଅବକ୍ଷୟ ଘଟିଛି, ସେଗୁଡ଼ିକ ହେଲା– କେଉଁଝର, ମୟୂରଭଞ୍ଜ, କୋରାପୁଟ ଓ ମାଲ୍‌କାନଗିରି । ବର୍ଷକୁବର୍ଷ ଜଙ୍ଗଲର ଆୟତନ ବିଶେଷକରି ସଂରକ୍ଷିତ ଜଙ୍ଗଲ ଓ ଘଞ୍ଚ ଜଙ୍ଗଲର ଆୟତନ ଯେପରି ବିପଜ୍ଜନକ ଭାବେ ହ୍ରାସପାଇଚାଲିଛି, ତାହା ଅତ୍ୟନ୍ତ ଉଦ୍‌ବେଗଜନକ ।

**ଚିରାଚରିତ ଜଙ୍ଗଲ ସୁରକ୍ଷା ବ୍ୟବସ୍ଥା –**

୧୯୮୮ ମସିହାରେ ପ୍ରଣୀତ ଜଙ୍ଗଲ ଆଇନ୍‌ରେ ଜଙ୍ଗଲ ନିକଟରେ ବସବାସ କରୁଥିବା ଲୋକମାନଙ୍କର ଜଙ୍ଗଲଜାତ ଦ୍ରବ୍ୟର ମୌଳିକ ଆବଶ୍ୟକତା ପୂରଣ କରିବା ଜଙ୍ଗଲ ପରିଚାଳନାର ଅନ୍ୟତମ ଲକ୍ଷ୍ୟରୂପେ ଦର୍ଶାଯାଇଥିଲା । ଏହି ମୌଳିକ ଚାହିଦାଗୁଡ଼ିକ ହେଲା– ଜାଳେଣିପାଇଁ କାଠ, କୃଷି ତଥା ଘର ଛପରପାଇଁ କାଠ ଓ ବାଉଁଶ ଏବଂ ଗାଈଗୋରୁଙ୍କପାଇଁ ଚାରଣ । ରାଜ୍ୟର ଦ୍ରୁତ ଜନସଂଖ୍ୟା ବିସ୍ଫୋରଣ ପରିପ୍ରେକ୍ଷୀରେ ଏହି ଆବଶ୍ୟକତାଗୁଡ଼ିକ ପୂରଣ କରିବା ଆଦୌ ସମ୍ଭବନୁହେଁ । ୧୯୯୧ ମସିହା ଜନଗଣନା ଅନୁସାରେ ଆମ ରାଜ୍ୟର ଲୋକସଂଖ୍ୟା ୩ କୋଟି ୧୫ ଲକ୍ଷ ଥିଲାବେଳେ, ୨୦୦୦ ମସିହା ବେଳକୁ ବାର୍ଷିକ ୨.୧ ପ୍ରତିଶତ ବୃଦ୍ଧିହାରରେ ପ୍ରାୟ ୩ କୋଟି ୮ ଲକ୍ଷରେ ପହଞ୍ଚିଥିବ । ସେହିପରି ରାଜ୍ୟରେ ଗୋସମ୍ପଦ ସଂଖ୍ୟା ମଧ୍ୟ ପ୍ରାୟ ୨ କୋଟି ୫୦ ଲକ୍ଷ । ଏତେସଂଖ୍ୟକ ଲୋକଙ୍କପାଇଁ ଜାଳେଣିକାଠର ଚାହିଦା ଓ ଗାଈଗୋରୁଙ୍କପାଇଁ ଚାରଣର କ୍ରମବର୍ଦ୍ଧିଷ୍ଣୁ ଆବଶ୍ୟକତାର ପ୍ରଭାବ ଜଙ୍ଗଲ ଉପରେ ସିଧାସଳଖ ପଡୁଛି । ଶତାବ୍ଦୀ ଶେଷବେଳକୁ ଜାଳକାଠ, ବାଉଁଶ ଓ ଚାରଣ ଆବଶ୍ୟକତାର ଯାହା ଆକଳନ କରାଯାଇଛି ତାହା ତୁଳନାରେ ଆମ ଜଙ୍ଗଲରୁ ମିଳୁଥିବା ଏହି ସବୁ ଦ୍ରବ୍ୟର ପରିମାଣ ଅତି ନଗଣ୍ୟ । ଚାହିଦା ବା ଆବଶ୍ୟକତା ଏବଂ ଉପଲବ୍ଧି ଭିତରେ ଏହି ଯେଉଁ ବ୍ୟବଧାନ ତାହା ଦିନକୁଦିନ ବଢ଼ିଚାଲିଛି ।

ଅନ୍ୟପକ୍ଷରେ ରାଜ୍ୟର ଜଙ୍ଗଲସମ୍ପଦ ରକ୍ଷା କରିବା ଦାୟିତ୍ୱରେ ଥିବା ବନରକ୍ଷୀମାନଙ୍କର ସଂଖ୍ୟା ବିଗତ କୋଡ଼ିଏ ବର୍ଷ ତଳେ ଯାହା ଥିଲା, ଏବେବି ସେହି ସଂଖ୍ୟାରେ ସୀମିତ ଅଛି । ସଂପ୍ରତି ଆମ ରାଜ୍ୟରେ ସିଧାସଳଖ ଜଙ୍ଗଲ ସୁରକ୍ଷା ଦାୟିତ୍ୱରେ ଥିବା ବନରକ୍ଷୀଙ୍କ ସଂଖ୍ୟା ପ୍ରାୟ ତିନି ହଜାର । ଅନେକ କ୍ଷେତ୍ରରେ ଜଣେ ବନରକ୍ଷୀ ଦାୟିତ୍ୱରେ ପ୍ରାୟ ୧୫ରୁ ୧୭ ବର୍ଗ

କି.ମି. ଜଙ୍ଗଲ ସୁରକ୍ଷା ଦାୟିତ୍ୱ ରହୁଛି, ତା'ଛଡ଼ା ଆମେ ଜଙ୍ଗଲ ସୁରକ୍ଷାପାଇଁ ସାଇକେଲ୍‌ଟିଏ ବା ଠେଙ୍ଗା ଖଣ୍ଡେ ଦେଇନାହୁଁ । ଦିନ ଥିଲା, ବନରକ୍ଷୀର ଖାକିପୋଷାକକୁ ଦେଖି ଲୋକେ ଭୟଭୀତ ହୋଇପଡୁଥିଲେ । ଏବେ ସମୟ ବଦଳିଯାଇଛି । କାଠଚୋରମାନେ ଅଧିକ ସୁସଂଗଠିତ ହୋଇ ଏବଂ ବିଭିନ୍ନ ମାରଣାସ୍ତ୍ରରେ ସଜ୍ଜିତ ହୋଇ ଜଙ୍ଗଲସମ୍ପଦ ଲୁଟ୍ କରୁଛନ୍ତି । ବନରକ୍ଷୀମାନଙ୍କର ସଂଖ୍ୟା ଅଧିକ ବଢ଼ାଇବାପାଇଁ ରାଜ୍ୟରେ ଆର୍ଥିକ ସମ୍ବଳର ଅଭାବ ।

ଉପରୋକ୍ତ ତଥ୍ୟକୁ ଅନୁଶୀଳନ କଲେ ହୃଦ୍‌ବୋଧ ହୁଏ, ବିଶାଳ ଓ ମୁକ୍ତ ଜଙ୍ଗଲସମ୍ପଦର ସୁରକ୍ଷା କେବଳ ସରକାରୀ ସ୍ତରରେ ସଂଭବନୁହେଁ । କାରଣ ବିଗତ ୪୦,୫୦ ବର୍ଷ ଧରି ଜଙ୍ଗଲର ସୁରକ୍ଷାପାଇଁ ଯେତେ କୌଶଳ ବା ଉପାୟ ଅବଲମ୍ବନ କରାଯାଇଛି, ସେଗୁଡ଼ିକ ଆଶାନୁରୂପ ଫଳପ୍ରଦ ହୋଇନାହିଁ । ଜନସାଧାରଣଙ୍କ ସକ୍ରିୟ ସହଯୋଗ ବିନା, ଯେତେ ବନ କର୍ମଚାରୀଙ୍କ ସଂଖ୍ୟା ବଢ଼ାଇଲେ ବା ଯେତେ ଆଧୁନିକ ଅସ୍ତ୍ର-ଶସ୍ତ୍ରରେ ସେମାନଙ୍କୁ ସଜ୍ଜିତ କଲେ ମଧ ଜଙ୍ଗଲର ଦ୍ରୁତ ଅବକ୍ଷୟକୁ ବନ୍ଦ କରାଯାଇପାରିବନାହିଁ ।

## ଜନସହଯୋଗରେ ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମ –

ଗୋଷ୍ଠୀଗତ ଉଦ୍ୟମରେ ଜଙ୍ଗଲ ସୁରକ୍ଷା ଓ ପରିଚାଳନା କ୍ଷେତ୍ରରେ ଆମ ରାଜ୍ୟ ଓଡ଼ିଶା ଅଗ୍ରଣୀ କହିଲେ ଅତ୍ୟୁକ୍ତି ହେବନାହିଁ । ସ୍ୱାଧୀନତା ପରବର୍ତ୍ତୀ କାଳରେ ସମ୍ଭବତଃ ୧୯୫୦ ମସିହାରୁ ଜଙ୍ଗଲର ସୁରକ୍ଷା ଓ ପରିବର୍ଦ୍ଧନପାଇଁ ଗୋଷ୍ଠୀଗତ ବା ସାମୂହିକ ଉଦ୍ୟମ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଲକ୍ଷ୍ୟ କରାଯାଉଛି । ଆମ ରାଜ୍ୟରେ ବିଧିବଦ୍ଧ ଭାବରେ ଗ୍ରାମବାସୀମାନଙ୍କ ସହଯୋଗରେ ଜଙ୍ଗଲ ସୃଷ୍ଟି କରିବା ଓ ତା'ର ରକ୍ଷଣାବେକ୍ଷଣ କାର୍ଯ୍ୟକ୍ରମ ଆରମ୍ଭ ହେଲା ୧୯୮୪ ମସିହାରେ; ଯେବେ ସୁଇଡ଼େନ୍ ସରକାରଙ୍କ ସହାୟତାରେ ରାଜ୍ୟରେ 'ସାମାଜିକ ବନୀକରଣ ଯୋଜନା' କାର୍ଯ୍ୟକାରୀ କରାଗଲା । ପ୍ରତ୍ୟେକଟି ଗ୍ରାମରେ ଯେଉଁଠି ସାମାଜିକ ବନୀକରଣ କରାଯାଇଥିଲା, ସେଠି ଯୌଥ ପରିଚାଳନା ଦାଲିଲ୍ (Joint Management Plan) ପ୍ରସ୍ତୁତ କରାଯାଇ ଗ୍ରାମବାସୀମାନଙ୍କର ପ୍ରତ୍ୟକ୍ଷ ସହଯୋଗରେ ଜଙ୍ଗଲ ସୃଷ୍ଟି, ରକ୍ଷଣାବେକ୍ଷଣ ଓ ପରିଚାଳନା କରାଯାଉଥିଲା । ଏଥିପାଇଁ 'ଓଡ଼ିଶା ଗ୍ରାମ୍ୟ ଜଙ୍ଗଲ ଆଇନ୍' (Orissa Village Forest Rule) ୧୯୯୫ ମସିହାରେ ପ୍ରଣୟନ କରାଯାଇ ବନୀକରଣ ହୋଇଥିବା ପ୍ରତ୍ୟେକଟି ଗ୍ରାମରେ ବିଧିବଦ୍ଧ ଭାବରେ ଗ୍ରାମ ବନ-କମିଟି ଗଠିତ ହୋଇଥିଲା । ଏହି କମିଟିର ତତ୍ତ୍ୱାବଧାନରେ ଗ୍ରାମ୍ୟ ଜଙ୍ଗଲଗୁଡ଼ିକର ସୁପରିଚାଳନା କରାଯାଇ ଗ୍ରାମବାସୀଙ୍କୁ ଜଙ୍ଗଲଜାତ ଦ୍ରବ୍ୟ ଉପରେ ଶତକଡ଼ା ଶହେଭାଗ ଫଳଭୋଗ ସ୍ୱତ୍ୱାଧିକାର ଦିଆଯାଇଥିଲା ।

## ଯୁଗ୍ମ ଜଙ୍ଗଲ ପରିଚାଳନା ଅଧିସୂଚନା –

ଜନସାଧାରଣଙ୍କ ସହଯୋଗ ଫଳରେ ଗ୍ରାମ୍ୟ ଜଙ୍ଗଲଗୁଡ଼ିକର ସୁରକ୍ଷା ଓ ପରିଚାଳନା କ୍ଷେତ୍ରରେ ସଫଳତାକୁ ଲକ୍ଷ୍ୟ କରି ୧୯୮୮ ମସିହା ଅଗଷ୍ଟ ମାସରେ ରାଜ୍ୟ ସରକାର ଗାଁର ପରିସୀମାକୁ ଲାଗିଥିବା ସଂରକ୍ଷିତ ଜଙ୍ଗଲକୁ ନିକଟସ୍ଥ ଗ୍ରାମବାସୀମାନଙ୍କଦ୍ୱାରା ସୁରକ୍ଷା ପ୍ରଦାନ କରିବାପାଇଁ ଗୋଟିଏ ଯୋଜନା ପ୍ରସ୍ତୁତ କଲେ; ପୁନଶ୍ଚ ୧୯୯୦ ମସିହାରେ ଏହି ଘୋଷଣାନାମାର ପରିସର ବୃଦ୍ଧି କରାଯାଇ ସଂରକ୍ଷିତ ଜଙ୍ଗଲ ସହିତ ରକ୍ଷିତ ଜଙ୍ଗଲର ସୁରକ୍ଷା

ଦାୟିତ୍ୱ ମଧ୍ୟ ଗ୍ରାମବାସୀଙ୍କୁ ଦେବାକୁ ଉଲ୍ଲେଖ କରାଗଲା, ବିଭିନ୍ନ ଗ୍ରାମରେ ଏହି ଉଦ୍ଦେଶ୍ୟରେ ଗଠିତ ଜଙ୍ଗଲ ସୁରକ୍ଷା କମିଟିଗୁଡ଼ିକ ସଂରକ୍ଷିତ ଓ ରକ୍ଷିତ ଜଙ୍ଗଲର ସୁରକ୍ଷାପାଇଁ ବନ ବିଭାଗକୁ ଯେଉଁ ସାହାଯ୍ୟ କରିବେ ତା' ବଦଳରେ ଓଡ଼ିଶା ଜଙ୍ଗଲ ନିୟମ, ୧୯୭୨ (Orissa Forest Act, 1972) ଧାରା ୨୪ ଅନୁଯାୟୀ ନିଜ ନିଜର ଆବଶ୍ୟକତା ମୁତାବକ ଛୋଟକାଠ ଓ ଜାଳେଣିକାଠ ବିନାରୟାଲ୍‌ଟିରେ ପାଇବାପାଇଁ ରିହାତି ତଥା ଅନୁମତି ଦିଆଗଲା ।

କିନ୍ତୁ କେତେକ କାରଣରୁ ଏହି ଯୋଜନା ଅନୁଯାୟୀ ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମରେ ଜନସହଯୋଗ ହାସଲ କରିବା ଲକ୍ଷ୍ୟ ଆଶାନୁରୂପ ସଫଳତା ପାଇପାରିଲାନାହିଁ । ଏହାର କାରଣ ଥିଲା, ଜଙ୍ଗଲ ସୁରକ୍ଷା ସରକାରଙ୍କର ତଥା ବନ ବିଭାଗର ପ୍ରାଥମିକ ଦାୟିତ୍ୱ ଦର୍ଶାଯାଇଥିବା ବେଳେ, କେବଳ ରୟାଲ୍‌ଟି ଛାଡ଼ କରିବାର ଆଶା ଦେଖାଇ ଜନସାଧାରଣଙ୍କର ସହଯୋଗ କାମନା କରାଯାଇଥିଲା । ଜଙ୍ଗଲ ସୁରକ୍ଷା ଜନସାଧାରଣଙ୍କର ପ୍ରାଥମିକ ଦାୟିତ୍ୱ ଓ ଜଙ୍ଗଲସମ୍ପଦ ଉପରେ ସେମାନଙ୍କର ନିର୍ଦ୍ଦିଷ୍ଟ ଅଧିକାର ଅଛି, ଏକଥା ଅଧିସୂଚନାରେ ସ୍ପଷ୍ଟ କରାଯାଇନଥିଲା । କାର୍ଯ୍ୟକ୍ରମରେ ବନ ବିଭାଗ ଓ ଗ୍ରାମବାସୀ କିପରି ଦୁଇ ସମାନ ଅଂଶୀଦାର ଭାବରେ କାର୍ଯ୍ୟକରିବେ, ଏହି ପରିପ୍ରେକ୍ଷୀରେ ଉଭୟଙ୍କର ସ୍ୱତ୍ୱ, ଅଧିକାର ତଥା ଦାୟିତ୍ୱ ନିର୍ଦ୍ଦିଷ୍ଟ କରି ଏକ ଦିଗ୍‌ଦର୍ଶନ ଦେବାର ଆବଶ୍ୟକତା ଅନୁଭୂତ ହେଲା ।

୧୯୯୩ ମସିହାରେ ରାଜ୍ୟ ସରକାରଙ୍କଦ୍ୱାରା ପୁନର୍ବାର ଜାରି କରାଯାଇଥିବା ଅଧିସୂଚନା ଏହି ଦିଗରେ ଏକ ନିର୍ଦ୍ଦିଷ୍ଟ ପଦକ୍ଷେପ । ଏହି ଘୋଷଣାରେ 'ଯୁଗ୍ମ ବନ ପରିଚାଳନା'ର (Joint Forest Management) ରୂପରେଖ ଦିଆଗଲା ଓ ସହଯୋଗୀ ଗ୍ରାମମାନଙ୍କରେ 'ବନ ସଂରକ୍ଷଣ ସମିତି' ମାନ ଗଠନ କରାଗଲା । ବନ ବିଭାଗ ଓ ଗ୍ରାମବାସୀ କ୍ଷୟପ୍ରାପ୍ତ ଜଙ୍ଗଲର ପୁନରୁଦ୍ଧାର ଓ ସୁରକ୍ଷା ଦିଗରେ ସମାନ ଅଂଶୀଦାର ଭାବରେ କାର୍ଯ୍ୟକରିବେ ଓ ଏମାନଙ୍କ ମଧ୍ୟରେ କର୍ତ୍ତା ଏବଂ ସହାୟକର ସମ୍ବନ୍ଧ ନରହି ଅଂଶୀଦାର ବା ପାର୍ଟନରର ସମ୍ବନ୍ଧ ରହିବ । ଯୋଜନା ଅନୁଯାୟୀ ରାଜ୍ୟ ବନ ବିଭାଗ ଓ ବନ ସଂରକ୍ଷଣ ସମିତି ମଧ୍ୟରେ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହେବ ଓ ସେଥିରେ ଥିବା ପ୍ରତିଶ୍ରୁତି ଅନୁଯାୟୀ ସମିତିର ସଭ୍ୟମାନେ ଉଜୁଡ଼ା ଜଙ୍ଗଲ ଗୁଡ଼ିକୁ ପୁନରୁଦ୍ଧାର କରିବାରେ ସକ୍ରିୟ ଭୂମିକା ଗ୍ରହଣ କରିବା ସହିତ ଜଙ୍ଗଲକୁ ନିଆଁ ଓ କାଠଚୋରୀରୁ ରକ୍ଷା କରିବେ ଏବଂ ଜଙ୍ଗଲ ପରିଚାଳନାରେ ବନ ବିଭାଗକୁ ସହାୟତା କରିବେ । ବିନିମୟରେ ଜଙ୍ଗଲରୁ ଉପଲବ୍ଧ ହେଉଥିବା ସମସ୍ତ ମଧ୍ୟବର୍ତ୍ତୀକାଳୀନ ବନଜାତ ଦ୍ରବ୍ୟ ଉପଭୋଗ କରିବେ । ପାଞ୍ଚବର୍ଷ ପର୍ଯ୍ୟନ୍ତ ଯଦି ଜଙ୍ଗଲ ସୁରକ୍ଷା କାର୍ଯ୍ୟ ଠିକ୍ ଭାବେ କରାଯାଏ ତେବେ ଗ୍ରାମବାସୀମାନଙ୍କୁ ପରିପକ୍ୱ କାଠ ଓ ଅମଳ ହେଉଥିବା ବାଉଁଶର ବିକ୍ରିଲବ୍ଧ ଧନର ଶତକଡ଼ା ୫୦ ଭାଗ ଅର୍ଥ ପ୍ରାପ୍ୟହେବ ଅଥବା ପରିପକ୍ୱ କାଠ ଓ ବାଉଁଶ ଅମଳ କରି ତହିଁରୁ ଅର୍ଦ୍ଧେକ ଗ୍ରାମବାସୀମାନେ ନିଜ ନିଜ ଭିତରେ ସମାନ ଭାବରେ ବାଣ୍ଟିନେବେ ।

୧୯୯୬ ମସିହା ସେପ୍ଟେମ୍ବର ମାସରେ ରାଜ୍ୟ ସରକାର ପୁନର୍ବାର ଏହି ଘୋଷଣାନାମାର ପରିସରକୁ ଅଧିକ ସଂପ୍ରସାରିତ କରି 'ସଂକଳ୍ପ' ନାମରେ ଏକ ନିର୍ଦ୍ଦେଶନାମା ଜାରିକରିଛନ୍ତି । ଏଥିରେ କୁହାଯାଇଛି ଯେ, ବନ ପରିଚାଳନାରେ ଗ୍ରାମବାସୀମାନଙ୍କୁ ସମ ଅଂଶୀଦାର ଭାବେ

ସଂଶ୍ଳିଷ୍ଟ କରି ସେମାନଙ୍କୁ ଜଙ୍ଗଲଜାତ ସାମଗ୍ରୀ ଉପରେ ନିର୍ଦ୍ଦିଷ୍ଟ ସ୍ୱତ୍ୱ ଓ ଅଧିକାର ଦିଆଯିବ ଓ ଗ୍ରାମକୁ ଜଙ୍ଗଲ ପରିଚାଳନାର ମୌଳିକ ସୋପାନରୂପେ ଧରିବାକୁ ହେବ । ଉତ୍କୃଷ୍ଟ ଜଙ୍ଗଲ ସମେତ ସବୁପ୍ରକାର ଜଙ୍ଗଲ ଗ୍ରାମବାସୀଙ୍କ ସହଯୋଗରେ ସୁରକ୍ଷା କରାଯିବ ଓ ଏପରି ସୁରକ୍ଷା ବଦଳରେ ଗ୍ରାମାବାସୀ ତାଙ୍କର ନିଜର ଆବଶ୍ୟକତାପାଇଁ ଉକ୍ତ ଜଙ୍ଗଲରୁ ବନଜାତ ସାମଗ୍ରୀ ନେବାପାଇଁ ହକ୍‌ଦାର ହେବେ । ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ କରି ତାକୁ ଗଚ୍ଛିତ ରଖିବା ଓ ସେଥିରୁ ଅନ୍ୟାନ୍ୟ ସାମଗ୍ରୀ ପ୍ରସ୍ତୁତ କରିବାର ପୂର୍ଣ୍ଣ ଅଧିକାର ଗ୍ରାମଗୋଷ୍ଠୀ ସଦସ୍ୟମାନଙ୍କର ରହିବ । ଯେଉଁ ଗ୍ରାମବାସୀ ସାମାଜିକ ବନୀକରଣ ଯୋଜନାରେ ଗଢ଼ିଉଠିଥିବା ଗ୍ରାମ୍ୟ ଜଙ୍ଗଲର ରୋପଣ, ପୁନରୁଦ୍ଧାର, ରକ୍ଷଣାବେକ୍ଷଣ ଓ ସୁରକ୍ଷାରେ ଅଂଶ ଗ୍ରହଣ କରିଛନ୍ତି, ସେମାନେ ଶତକଡ଼ା ଶହେଭାଗ ଫଳଭୋଗ ସ୍ୱତ୍ୱ ପାଇବେ ।

ସଂପ୍ରତି ଜଙ୍ଗଲର ସୁରକ୍ଷା ଓ ରକ୍ଷଣାବେକ୍ଷଣ କେବଳ ରାଜ୍ୟ ସରକାରଙ୍କର ବନ ବିଭାଗର ଦାୟିତ୍ୱ ନୁହେଁ । ବରଂ ଜଙ୍ଗଲ ସୁରକ୍ଷା ଏକ ସାମୂହିକ ଦାୟିତ୍ୱ । ଏହି କାର୍ଯ୍ୟକ୍ରମରେ ଭାଗ ନେଉଥିବା ସଂସ୍ଥାଗୁଡ଼ିକ ମଧ୍ୟରେ ବନ ସଂରକ୍ଷଣ ସମିତି, ଗ୍ରାମ ବନ କମିଟି, ବନ ସୁରକ୍ଷା ସମିତି ଏବଂ ଏପରିକି ଅନେକ ଅଣସ୍ୱୀକୃତିପ୍ରାପ୍ତ ସ୍ୱେଚ୍ଛାସେବୀ ଗୋଷ୍ଠୀ ମଧ୍ୟ ଅନ୍ତର୍ଭୁକ୍ତ । ନିଶ୍ଚିତ ଭାବରେ ଏହା ଏକ ଶୁଭ ସଙ୍କେତ । ଗାଁ ଚାରିକଡ଼ରେ ଥିବା ଜଙ୍ଗଲ ଗ୍ରାମବାସୀଙ୍କର ନିଜ ସମ୍ପତ୍ତି । ନିଜ ସମ୍ପତ୍ତିର ରକ୍ଷଣାବେକ୍ଷଣ ଦାୟିତ୍ୱ ନିଜେ ନନେଲେ, ନେଢ଼ି ଗୁଡ଼ କହୁଣୀକୁ ବୋହିଯିବ ।



# ଓଡ଼ିଶାରେ ଜଙ୍ଗଲ ସୁରକ୍ଷା – ଯୁଗ୍ମ ବନପରିଚାଳନା

ଜଙ୍ଗଲ ଆମର ଜାତୀୟ ସମ୍ପତ୍ତି । ଏହା ଏକ ମୁକ୍ତ ରାଜକୋଷ ବା ଖୋଲା ଗନ୍ତାଘର କହିଲେ ଅତ୍ୟୁକ୍ତି ହେବନାହିଁ । ବିଗତ ବର୍ଷମାନଙ୍କରେ ଲକ୍ଷ୍ୟ କରାଯାଇଛି, ଆମ ଦେଶର ତଥା ରାଜ୍ୟର ଜଙ୍ଗଲସମ୍ପଦ ଦିନକୁଦିନ ଦ୍ରୁତ ଗତିରେ ହ୍ରାସପାଇଚାଲିଛି । ଭାରତୀୟ ଜଙ୍ଗଲ ସର୍ଭେ ବିଭାଗ, ସାଟେଲାଇଟ୍ ଫଟୋଚିତ୍ର ଅନୁଶୀଳନରୁ ବିଭିନ୍ନ ସମୟରେ ଆମ ରାଜ୍ୟର ଜଙ୍ଗଲସମ୍ପଦର ଆୟତନ ସଂପର୍କରେ ଯାହା ତଥ୍ୟ ପ୍ରକାଶ କରିଛନ୍ତି ତାହାର ଏକ ତୁଳନାମୂଳକ ବିବରଣୀ ତଳେ ପ୍ରକାଶ କରାଗଲା – ଆୟତନ (ବର୍ଗ କିଲୋମିଟର)

| ଜଙ୍ଗଲର ବିଭକ୍ତୀକରଣ | ୧୯୮୭ | ୧୯୮୯ | ୧୯୯୧ | ୧୯୯୩ | ୧୯୯୫ |
|---|---|---|---|---|---|
| ୧। ଘଞ୍ଚଜଙ୍ଗଲ (୪୦ ଭାଗରୁ ଅଧିକ ସାନ୍ଦ୍ରତା) | ୨୮,୫୭୩ | ୨୭,୫୬୧ | ୨୭,୩୪୯ | ୨୭,୧୫୧ | ୨୭,୧୬୩ |
| ୨।ଖୋଲାଜଙ୍ଗଲ (୧୦ରୁ ୪୦ ଭାଗ ସାନ୍ଦ୍ରତା) | ୨୪,୩୯୧ | ୧୯,୩୮୪ | ୧୯,୬୬୧ | ୧୯,୭୯୯ | ୧୯,୭୪୯ |
| ୩। ଲୁଣାଜଙ୍ଗଲ | ୧୯୯ | ୧୯୨ | ୧୯୫ | ୧୯୫ | ୧୯୫ |
| ମୋଟ ଜଙ୍ଗଲର ଆୟତନ | ୫୩,୧୬୩ | ୪୭,୧୩୭ | ୪୭,୨୦୫ | ୪୭,୧୪୫ | ୪୭,୧୦୭ |

୧୯୯୧ ମସିହାର ସର୍ଭେ ରିପୋର୍ଟ ତୁଳନାରେ ୧୯୯୩ ରିପୋର୍ଟରେ ଆମ ରାଜ୍ୟରେ ଜଙ୍ଗଲର ଆୟତନ ୬୦ ବର୍ଗ କିଲୋମିଟର କମିଯାଇଥିବା ବେଳେ, ୧୯୯୫ ସର୍ଭେ ରିପୋର୍ଟରେ ଏହା ପୁନର୍ବାର ୩୮ ବର୍ଗ କିଲୋମିଟର ହ୍ରାସପାଇଛି । ଯେଉଁ ଜିଲ୍ଲାମାନଙ୍କରେ ଜଙ୍ଗଲର ଆୟତନରେ ଅବକ୍ଷୟ ଘଟିଛି, ସେଗୁଡ଼ିକ ହେଲା– ନବରଙ୍ଗପୁର, କେଉଁଝର, ବଲାଙ୍ଗୀର, ଗଞ୍ଜାମ ଓ ସମ୍ବଲପୁର । ବର୍ଷକୁବର୍ଷ ଜଙ୍ଗଲର ଆୟତନ ବିଶେଷକରି ସଂରକ୍ଷିତ ଜଙ୍ଗଲ ଓ ଘଞ୍ଚଜଙ୍ଗଲର ଆୟତନ ଯେପରି ହ୍ରାସପାଇଚାଲିଛି ତାହା ଅତ୍ୟନ୍ତ ଉଦ୍‌ବେଗଜନକ ।

ଷଷ୍ଠ ଦଶକରେ ଆମ ରାଜ୍ୟର ମୋଟ ଭୌଗୋଳିକ ଆୟତନର (୧,୫୫,୭୦୭ ବର୍ଗ କି.ମି.) ଶତକଡ଼ା ୪୩ ଭାଗ ଅଞ୍ଚଳ ଜଙ୍ଗଲ ପରିପୂର୍ଣ୍ଣ ହେଲାବେଳେ ୧୯୯୫ ସର୍ଭେ ରିପୋର୍ଟରେ ତାହା ଶତକଡ଼ା ୩୦ ଭାଗକୁ ଖସିଆସିଛି । ତନ୍ମଧ୍ୟରୁ ମାତ୍ର ଶତକଡ଼ା ୧୭ ଭାଗ ଅଞ୍ଚଳରେ ଘଞ୍ଚ ଜଙ୍ଗଲ ରହିଛି । ଏହା ବ୍ୟତୀତ ପ୍ରାୟ ଶତକଡ଼ା ୧୩ ଭାଗ ଅଞ୍ଚଳରେ ରହିଥିବା ଜଙ୍ଗଲ, କ୍ଷୟପ୍ରାପ୍ତ

ଜଙ୍ଗଲ । ଦ୍ରୁତ ଅବକ୍ଷୟଯୋଗୁଁ ଧୀରେ ଧୀରେ ଏଗୁଡ଼ିକ ଖୋଲା ଜଙ୍ଗଲରେ ପରିଣତ ହେବାରେ ଲାଗିଛି ଓ ଜଙ୍ଗଲର ସାନ୍ଦ୍ରତା କମି କମି ୧୦ରୁ ୪୦ ଭାଗ ଭିତରେ ସୀମିତ ରହିଛି । ଅନେକ ସ୍ଥାନରେ ଜଙ୍ଗଲ ପୂରାପୂରି ପଦାହୋଇଗଲାଣି । ଖାଲି ନଣ୍ଡା ପାହାଡ଼ ବା ଗଙ୍ଗରାଭୂଇଁ ।

ଉପରୋକ୍ତ ତଥ୍ୟକୁ ଅନୁଶୀଳନ କଲେ ହୃଦ୍‌ବୋଧ ହୁଏ, ବିଶାଳ ଓ ମୁକ୍ତ ଜଙ୍ଗଲସମ୍ପଦର ସୁରକ୍ଷା କେବଳ ସରକାରୀ ସ୍ତରରେ ସଂଭବନୁହେଁ । କାରଣ ବିଗତ ୪୦,୫୦ ବର୍ଷ ଧରି ଜଙ୍ଗଲର ସୁରକ୍ଷାପାଇଁ ଯେତେ କୌଶଳ ବା ଉପାୟ ଅବଲମ୍ବନ କରାଯାଉଛି, ସେଗୁଡ଼ିକ ଆଶାନୁରୂପ ଫଳପ୍ରଦ ହୋଇନାହିଁ ଏବଂ କ୍ରମାଗତଭାବେ ଜଙ୍ଗଲର ଦ୍ରୁତ ଅବକ୍ଷୟକୁ ରୋକାଯିବା ସଂଭବ ହୋଇପାରିନାହିଁ । ଜନସାଧାରଣଙ୍କ ସକ୍ରିୟ ସହଯୋଗ ବିନା, ଯେତେ ବନ କର୍ମଚାରୀଙ୍କ ସଂଖ୍ୟା ବଢ଼ାଇଲେ ବା ଯେତେ ଆଧୁନିକ ଅସ୍ତ୍ର-ଶସ୍ତ୍ରରେ ସେମାନଙ୍କୁ ସଜ୍ଜିତ କଲେ ମଧ୍ୟ ଜଙ୍ଗଲ କ୍ଷୟକୁ ବନ୍ଦ କରାଯାଇପାରିବନାହିଁ । ଏହି ତାତ୍ତ୍ୱିକ ଉପଲବ୍‌ଧିରୁ ସୂତ୍ରପାତ ହୋଇଛି, ସହଯୋଗିତାମୂଳକ ଜଙ୍ଗଲ ପରିଚାଳନାର ନୂତନ ମାର୍ଗ ବା ନୂତନ ଚିନ୍ତାଧାରା ।

ଗୋଷ୍ଠୀଗତ ଉଦ୍ୟମରେ ଜଙ୍ଗଲର ସୁରକ୍ଷା ଓ ପରିଚାଳନା କ୍ଷେତ୍ରରେ ଆମ ରାଜ୍ୟ ଓଡ଼ିଶା ଅଗ୍ରଣୀ କହିଲେ ଅତ୍ୟୁକ୍ତିହେବନାହିଁ । ସ୍ୱାଧୀନତା ପରବର୍ତ୍ତୀ କାଳରେ, ସମ୍ଭବତଃ ୧୯୫୦ ମସିହାରୁ ଜଙ୍ଗଲର ସୁରକ୍ଷା ଓ ପରିବର୍ଦ୍ଧନପାଇଁ ଗୋଷ୍ଠୀଗତ ବା ସାମୂହିକ ଉଦ୍ୟମ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଲକ୍ଷ୍ୟ କରାଯାଉଛି । ଓଡ଼ିଶା ସାମାଜିକ ବନ ପ୍ରକଳ୍ପ ଉଦ୍ୟମରେ, ଭୁବନେଶ୍ୱରସ୍ଥିତ 'ପ୍ରୋଜେକ୍ଟ କର୍ପୋରେଟ୍ କନ୍‌ସଲଟାଣ୍ଟ' ଜରିଆରେ ୧୯୮୮-୮୯ ମସିହାରେ ରାଜ୍ୟରେ ପ୍ରଥମଥରପାଇଁ ଗ୍ରାମବାସୀଙ୍କ ସମ୍ମିଳିତ ଉଦ୍ୟମରେ ସୁରକ୍ଷା କରାଯାଉଥିବା ଜଙ୍ଗଲର ଏକ ପ୍ରାଥମିକ ସର୍ଭେ କରାଯାଇଥିଲା । ଏହି ଆକଳନ ଅନୁସାରେ ରାଜ୍ୟର ମୋଟ ୧୧୮୧ଟି ସ୍ଥାନରେ ପ୍ରାୟ ୧,୮୬,୯୦୦ ହେକ୍ଟର ଜଙ୍ଗଲ ଗୋଷ୍ଠୀଗତ ଉଦ୍ୟମରେ ସୁରକ୍ଷା କରାଯାଉଥିବାର ସୂଚନା ରହିଛି । ଏହା ରାଜ୍ୟର ମୋଟ ଜଙ୍ଗଲ ଆୟତନର ଶତକଡ଼ା ୩ ଭାଗ । ସୁରକ୍ଷା କରାଯାଉଥିବା ଜଙ୍ଗଲରୁ କେତେକ ସଂରକ୍ଷିତ ବା ରକ୍ଷିତ ଜଙ୍ଗଲ ହୋଇଥିବା ସ୍ଥଳେ, ଅନ୍ୟ କେତେକ ଗ୍ରାମ୍ୟଜଙ୍ଗଲ ବା ଖେସରାଜଙ୍ଗଲ । ଏହି ସର୍ଭେ ରିପୋର୍ଟରୁ ଜଣାଯାଏ, ଗୋଷ୍ଠୀଗତ ଉଦ୍ୟମରେ ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମ ମୁଖ୍ୟତଃ ମୟୂରଭଞ୍ଜ, ସୁନ୍ଦରଗଡ଼, ଅବିଭକ୍ତ କୋରାପୁଟ ଓ ଢେଙ୍କାନାଳ ଜିଲ୍ଲାରେ ଅଧିକ ଲୋକପ୍ରିୟତା ହାସଲକରିଥିଲା । ସତୁରୀ ଦଶକର ଆଦ୍ୟଭାଗରେ ଯେତେବେଳେ ନିତ୍ୟବ୍ୟବହାର୍ଯ୍ୟ ଜଙ୍ଗଲଜାତ ଦ୍ରବ୍ୟର ପ୍ରଭୂତ ଅଭାବ ଅନୁଭୂତ ହେଲା, ସେହି ସମୟରେ ବିଭିନ୍ନ ସ୍ଥାନରେ ସ୍ୱତଃସ୍ଫୂର୍ତ୍ତ ଭାବରେ 'ଗ୍ରାମ୍ୟ ଜଙ୍ଗଲ ସୁରକ୍ଷା କମିଟି' ମାନ ଗଠିତ ହେଲା ଏବଂ ଏହି କମିଟି ଗାଁର ଆଖପାଖ ଅଞ୍ଚଳର ଜଙ୍ଗଲ ସୁରକ୍ଷାପାଇଁ ଆଗ୍ରହ ପ୍ରକାଶ କଲେ । ଏହି ସ୍ୱେଚ୍ଛାକୃତ ଉଦ୍ୟମ ପଛରେ କେଉଁଠି ତଳ ସ୍ତରର ବନକର୍ମଚାରୀଙ୍କ ପ୍ରେରଣା ରହିଥିଲା ତ, କେଉଁଠି ଯୁବକ ସଂଘ ବା ଗାଁ ସ୍ତରର ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ସେମାନଙ୍କୁ ସଂଗଠିତ କରାଇଥିଲେ ।

ଉପରୋକ୍ତ ସର୍ଭେ ରିପୋର୍ଟରୁ ଆହୁରି ମଧ୍ୟ ଜଣାପଡ଼େ, ପ୍ରାୟତଃ ଶତକଡ଼ା ୫୦ ଭାଗରୁ ଊର୍ଦ୍ଧ୍ୱ କ୍ଷେତ୍ରରେ ଗ୍ରାମବାସୀମାନଙ୍କର ଏହି ଉଦ୍ୟମ ଅର୍ଥାତ୍ ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମର ଆୟୁ

୫ ବର୍ଷରୁ ୧୦ ବର୍ଷ ମଧ୍ୟରେ ସୀମିତ ଥିଲା । ଲେଖକ ନିଜେ ୧୯୮୦ ମସିହାରେ ନବରଂଗପୁର ଜିଲ୍ଲାରେ ବନଖଣ୍ଡ ଅଧିକାରୀ ଥିଲାବେଳେ ଲକ୍ଷ୍ୟ କରିଛି, 'କୋଟପାଡ଼', 'ଡାବୁଗାଁ' ଓ 'ବୋରିଗୁମା' ପ୍ରଭୃତି ଅଞ୍ଚଳରେ ଗ୍ରାମବାସୀମାନଙ୍କ ଉଦ୍ୟମରେ ସୁରକ୍ଷିତ ହୋଇ ଅନେକ ଗୁଡ଼ିଏ ଉଜୁଡ଼ା ଜଙ୍ଗଲ ସୁନ୍ଦର ଶାଳଗଛରେ ଚାରି ପାଞ୍ଚ ବର୍ଷ ଭିତରେ ପରିପୂର୍ଣ୍ଣ ହୋଇଯାଇଛି । କିଂତୁ ହଠାତ୍ ଦିନେ ଦେଖାଯାଏ ଯେ ଗ୍ରାମବାସୀମାନେ ମିଳିତଭାବେ ଶାଳ ଗଛଗୁଡ଼ିକ ନିଜର ବ୍ୟବହାରପାଇଁ କାଟିନେଇଛନ୍ତି । ସେତେବେଳେ ମନେହୋଇଛି କେବଳ ସୀମିତ ସମୟ ମଧ୍ୟରେ ଲାଭର ଲକ୍ଷ୍ୟରଖି ଅର୍ଥାତ୍ ଶାଳଗଛଗୁଡ଼ିକ ବ୍ୟବହାର ଉପଯୋଗୀ ହେଲାପର୍ଯ୍ୟନ୍ତ ଲୋକମାନେ ଜଙ୍ଗଲ ସୁରକ୍ଷା କରୁଛନ୍ତି । ତେଣୁ ଏହି କାର୍ଯ୍ୟକ୍ରମର ସ୍ଥାୟିତ୍ୱ ନେଇ ମଧ୍ୟ ସନ୍ଦେହ ପ୍ରକାଶପାଇଛି ।

ଓଡ଼ିଶାରେ ବିଧିବଦ୍ଧ ଭାବରେ ଗ୍ରାମବାସୀମାନଙ୍କ ସକ୍ରିୟ ସହଯୋଗରେ ଜଙ୍ଗଲ ସୃଷ୍ଟି କରିବା ଓ ସେଗୁଡ଼ିକର ରକ୍ଷଣାବେକ୍ଷଣ ଓ ପରିଚାଳନା କାର୍ଯ୍ୟକ୍ରମ ଆରମ୍ଭ ହେଲା ୧୯୮୪ ମସିହାରେ । 'ସୁଇଡେନ୍' ସରକାରଙ୍କ ସହାୟତାରେ ରାଜ୍ୟରେ 'ସାମାଜିକ ବନୀକରଣ' ଯୋଜନା କାର୍ଯ୍ୟକାରୀ କରାଗଲା ଏବଂ ଏହି ଯୋଜନାରେ ଗ୍ରାମବାସୀ ଓ ଜଙ୍ଗଲ ବିଭାଗର ସହଯୋଗରେ 'ଗ୍ରାମ୍ୟଜଙ୍ଗଲ'ର ଯୁଗ୍ମ ପରିଚାଳନାର ଚିନ୍ତାଧାରା ପ୍ରଥମେ ପରିକଳ୍ପନା କରାଯାଇଥିଲା । ପ୍ରତ୍ୟେକ ଗ୍ରାମରେ ଯେଉଁଠି ସାମାଜିକ ବନୀକରଣ କରାଯାଇଥିଲା, ସେଠି 'ଯୌଥ ପରିଚାଳନା ଦଲିଲ୍' (Joint Management Plan) ପ୍ରସ୍ତୁତ କରାଯାଇ ଗ୍ରାମବାସୀମାନଙ୍କର ପ୍ରତ୍ୟକ୍ଷ ସହଯୋଗରେ ଜଙ୍ଗଲର ସୃଷ୍ଟି ଓ ରକ୍ଷଣାବେକ୍ଷଣ କରାଯାଉଥିଲା । ଏଥିପାଇଁ 'ଓଡ଼ିଶା ଗ୍ରାମ୍ୟ ଜଙ୍ଗଲ ଆଇନ୍' (Orissa Village Forest Rule) ୧୯୮୫ ମସିହାରେ ପ୍ରଣୟନ କରାଯାଇ, ବନୀକରଣ ହୋଇଥିବା ପ୍ରତ୍ୟେକଟି ଗ୍ରାମରେ ବିଧିବଦ୍ଧ ଭାବରେ ଗ୍ରାମ ବନ-କମିଟି ଗଠିତ ହୋଇଥିଲା । ଏହି କମିଟିର ତତ୍ତ୍ୱାବଧାନରେ ଗ୍ରାମ୍ୟ ଜଙ୍ଗଲ ଗୁଡ଼ିକର ସୁପରିଚାଳନା କରାଯାଇ, ଗ୍ରାମବାସୀଙ୍କୁ ଜଙ୍ଗଲଜାତ ଦ୍ରବ୍ୟ ଉପରେ ଶତକଡ଼ା ଶହେଭାଗ ଫଳଭୋଗ ସ୍ୱତ୍ୱାଧିକାର ଦିଆଯାଇଥିଲା ।

ଜନସାଧାରଣଙ୍କ ସହଯୋଗ ଫଳରେ ଗ୍ରାମ୍ୟ ଜଙ୍ଗଲଗୁଡ଼ିକର ସୁରକ୍ଷା ଓ ପରିଚାଳନା କ୍ଷେତ୍ରରେ ସଫଳତାକୁ ଲକ୍ଷ୍ୟ କରି ୧୯୮୮ ମହିହା ଅଗଷ୍ଟ ମାସରେ ରାଜ୍ୟ ସରକାର ଗାଁର ପରିସୀମାକୁ ଲାଗିଥିବା ସଂରକ୍ଷିତ ଜଙ୍ଗଲକୁ ନିକଟସ୍ଥ ଗ୍ରାମବାସୀମାନଙ୍କଦ୍ୱାରା ସୁରକ୍ଷା ପ୍ରଦାନ କରିବାପାଇଁ ଗୋଟିଏ ଯୋଜନା ପ୍ରସ୍ତୁତ କଲେ । ପୁନଶ୍ଚ ୧୯୯୦ ମସିହାରେ ଏହି ଘୋଷଣାନାମାର ପରିସର ବୃଦ୍ଧି କରାଯାଇ, ସଂରକ୍ଷିତ ଜଙ୍ଗଲ ସହିତ ରକ୍ଷିତ ଜଙ୍ଗଲର ସୁରକ୍ଷା ଦାୟିତ୍ୱ ମଧ୍ୟ ଗ୍ରାମବାସୀଙ୍କୁ ଦେବାକୁ ଉଲ୍ଲେଖ କରାଗଲା । ବିଭିନ୍ନ ଗ୍ରାମରେ ଏହି ଉଦ୍ଦେଶ୍ୟରେ ଗଠିତ ଜଙ୍ଗଲ ସୁରକ୍ଷା କମିଟିଗୁଡ଼ିକ ସଂରକ୍ଷିତ ତଥା ରକ୍ଷିତ ଜଙ୍ଗଲର ସୁରକ୍ଷାପାଇଁ ବନ ବିଭାଗକୁ ଯେଉଁ ସାହାଯ୍ୟ କରିବେ ତା' ବଦଳରେ ଓଡ଼ିଶା ଜଙ୍ଗଲ ନିୟମ, ୧୯୭୨ (Orissa Forest Act, 1972) ଧାରା ୨୪ ଅନୁଯାୟୀ ନିଜ ନିଜର ଆବଶ୍ୟକତା ମୁତାବକ ଛୋଟ କାଠ ଓ ଜାଳେଣିକାଠ ବିନା ରୟାଲ୍‌ଟିରେ ପାଇବାପାଇଁ ରିହାତି ତଥା ଅନୁମତି ଦିଆଗଲା ।

କିଂତୁ କେତେକେ କାରଣରୁ ଏହି ଯୋଜନା ଅନୁଯାୟୀ ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମରେ ଜନସହଯୋଗ ହାସଲ କରିବା ଲକ୍ଷ୍ୟ ଆଶାନୁରୂପ ସଫଳତା ପାଇପାରିଲାନାହିଁ । ଏହାର କାରଣ ଥିଲା ଯେ, ଜଙ୍ଗଲ ସୁରକ୍ଷା ସରକାରଙ୍କର ତଥା ବନ ବିଭାଗର ପ୍ରାଥମିକ ଓ ସାମୂହିକ ଦାୟିତ୍ୱରୂପେ ଦର୍ଶାଯାଇଥିବାବେଳେ, କେବଳ ରୟାଲ୍‌ଟି ଛାଡ଼କରିବାର ଆଶା ଦେଖାଇ ଜନସାଧାରଣଙ୍କର ସହଯୋଗ କାମନା କରାଯାଇଥିଲା । ଜଙ୍ଗଲ ସୁରକ୍ଷା ଜନସାଧାରଣଙ୍କର ପ୍ରାଥମିକ ଦାୟିତ୍ୱ ଓ ଜଙ୍ଗଲସମ୍ପଦ ଉପରେ ଯେ ସେମାନଙ୍କର ନିର୍ଦ୍ଦିଷ୍ଟ ଅଧିକାର ଅଛି, ଏ କଥା ଅଧିସୂଚନାରେ ସ୍ପଷ୍ଟ କରାଯାଇନଥିଲା । କାର୍ଯ୍ୟକ୍ରମରେ ବନ ବିଭାଗ ଓ ଗ୍ରାମବାସୀ, ଦୁଇ ସମଭାବାପନ୍ନ ଅଂଶୀଦାର ହେବା ପରିବର୍ତ୍ତେ ଜଣେ ନିର୍ଦ୍ଦେଶକ (ବନ ବିଭାଗ) ଓ ଜଣେ ଅଭିନେତା (ଗ୍ରାମବାସୀ) ରୂପେ ଚିତ୍ରିତ ହୋଇଥିଲେ । ଅର୍ଥାତ୍ ଜଣେ ନିର୍ଦ୍ଦେଶ ଦେବ ଓ ଅନ୍ୟପକ୍ଷଟି କିଛି ପାରିଶ୍ରମିକ ବିନିମୟରେ ଅଭିନୟ କରିବ । ଏହି ପରିପ୍ରେକ୍ଷୀରେ ସୁରକ୍ଷା ପ୍ରଦାନ କରାଯାଇଥିବା ଜଙ୍ଗଲରେ ଗ୍ରାମବାସୀଙ୍କର ସ୍ୱତ୍ୱ ଓ ଅଧିକାର ନିର୍ଦ୍ଦିଷ୍ଟ କରି ଏବଂ ସେମାନଙ୍କର ଦାୟିତ୍ୱ ଓ ବନ ବିଭାଗର ଦାୟିତ୍ୱ ସ୍ପଷ୍ଟ କରି ଏକ ଦିକ୍‌ଦର୍ଶନ ଦେବାର ଆବଶ୍ୟକତା ଅନୁଭୂତ ହେଲା ।

୧୯୯୩ ମସିହାରେ ରାଜ୍ୟ ସରକାରଙ୍କଦ୍ୱାରା ପୁନର୍ବାର ଜାରି କରାଯାଇଥିବା ଅଧିସୂଚନା ଏହି ଦିଗରେ ଏକ ନିର୍ଦ୍ଦିଷ୍ଟ ପଦକ୍ଷେପ । ଏହି ଘୋଷଣାରେ 'ମିଳିତ ଜଙ୍ଗଲ ପରିଚାଳନା'ର (Joint Forest Management) ରୂପରେଖ ଦିଆଗଲା ଓ ଏଥିପାଇଁ ସହଯୋଗୀ ଗ୍ରାମମାନଙ୍କରେ 'ବନ ସଂରକ୍ଷଣ ସମିତି' ମାନ ଗଠନ କରାଗଲା । ବନ ବିଭାଗ ଓ ଗ୍ରାମବାସୀ କ୍ଷୟପ୍ରାପ୍ତ ଜଙ୍ଗଲର ପୁନରୁଦ୍ଧାର ଓ ସୁରକ୍ଷା ଦିଗରେ ସମାନ ଅଂଶୀଦାର ଭାବରେ କାର୍ଯ୍ୟକରିବେ ଓ ଏମାନଙ୍କ ମଧ୍ୟରେ କର୍ତ୍ତା ଏବଂ ସହାୟକର ସମ୍ବନ୍ଧ ନରହି, ଅଂଶୀଦାର ବା ପାର୍ଟନରର ସମ୍ବନ୍ଧ ରହିବ । ଯୋଜନା ଅନୁଯାୟୀ ରାଜ୍ୟ ବନ ବିଭାଗ ଓ ବନ ସଂରକ୍ଷଣ ସମିତି ମଧ୍ୟରେ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହେବ ଓ ସେଥିରେ ଥିବା ପ୍ରତିଶ୍ରୁତି ଅନୁଯାୟୀ ସମିତିର ସଭ୍ୟମାନେ ଉଜୁଡ଼ା ଜଙ୍ଗଲଗୁଡ଼ିକୁ ପୁନରୁଦ୍ଧାର କରିବାରେ ସକ୍ରିୟ ଭୂମିକା ଗ୍ରହଣକରିବା ସହିତ, ଜଙ୍ଗଲକୁ ନିଆଁ, କାଠଚୋରୀରୁ ରକ୍ଷାକରିବେ ଏବଂ ଜଙ୍ଗଲ ପରିଚାଳନାରେ ବନ ବିଭାଗକୁ ସହାୟତାକରିବେ । ବିନିମୟରେ ଶୁଖିଲା ଝଡ଼ା ଡାଳପତ୍ର, ଘାସ, ଝୁଣା, ଲାଖ, ଫୁଲଝାଡୁ ଏବଂ ଅନ୍ୟାନ୍ୟ ଲଘୁ ବନଜାତ ଦ୍ରବ୍ୟକୁ କୌଣସି ରୟାଲ୍‌ଟି ନଦେଇ ସଂଗ୍ରହକରିବାପାଇଁ ଅଧିକାର ଦିଆଯିବ । ସମୟ ସମୟରେ ଯେଉଁ ଶୁଖିଲା ଅଧାପୋଡ଼ା କାଠ, ସରୁକାଠ ଓ ବଲ୍ଲୀ ବାହାରିବ ତାକୁ ଗ୍ରାମବାସୀମାନଙ୍କ ମଧ୍ୟରେ କାର୍ଯ୍ୟନିର୍ବାହୀ ସଭ୍ୟମାନଙ୍କଦ୍ୱାରା ସମାନ ଭାବେ ବଣ୍ଟନ କରାଯିବ । ପାଞ୍ଚବର୍ଷ ପର୍ଯ୍ୟନ୍ତ ଯଦି ଯୁଗ୍ମ ପରିଚାଳନା ଯୋଜନା ସନ୍ତୋଷଜନକ ଭାବେ କାର୍ଯ୍ୟକାରୀ ହୁଏ ତେବେ ଗ୍ରାମବାସୀମାନଙ୍କୁ ପରିପକ୍ୱ କାଠ ଓ ଅମଳ ହେଉଥିବା ବାଉଁଶର ବିକ୍ରିଲବ୍ଧ ଧନର ଶତକଡ଼ା ୫୦ ଭାଗ ଅର୍ଥ ପ୍ରାପ୍ୟ ହେବ କିମ୍ବା ପରିପକ୍ୱ କାଠ ଓ ବାଉଁଶର ଅର୍ଦ୍ଧେକ ଗ୍ରାମବାସୀମାନେ ନିଜ ନିଜ ଭିତରେ ସମାନ ଭାବରେ ବାଣ୍ଟିନେବେ ।

ପୁନର୍ବାର ୧୯୯୬ ମସିହା ସେପ୍ଟେମ୍ବର ମାସରେ ରାଜ୍ୟ ସରକାର ଏହି ଘୋଷଣାନାମାର ପରିସରକୁ ଅଧିକ ସଂପ୍ରସାରିତ କରି 'ସଂକଳ୍ପ' ନାମରେ ଏକ ନିର୍ଦ୍ଦେଶନାମା ଜାରିକରିଅଛନ୍ତି ।

ଏଥିରେ କୁହାଯାଇଛି ଯେ, ବନ ପରିଚାଳନାରେ ଗ୍ରାମବାସୀମାନଙ୍କୁ ସମ ଅଂଶୀଦାର ଭାବେ ସଂଶ୍ଲିଷ୍ଟ କରି ସେମାନଙ୍କୁ ଜଙ୍ଗଲଜାତ ସାମଗ୍ରୀ ଉପରେ ନିର୍ଦ୍ଦିଷ୍ଟ ସ୍ୱତ୍ୱ ଓ ଅଧିକାର ଦିଆଯିବ ଓ ଗ୍ରାମକୁ ଜଙ୍ଗଲ ପରିଚାଳନାର ମୌଳିକ ସୋପାନରୂପେ ଧରିବାକୁ ହେବ । ଉଜୁଡ଼ା ଜଙ୍ଗଲ ସମେତ ସବୁପ୍ରକାର ଜଙ୍ଗଲ ଗ୍ରାମବାସୀଙ୍କ ସହଯୋଗରେ ସୁରକ୍ଷା କରାଯିବ ଓ ଏପରି ସୁରକ୍ଷା ବଦଳରେ ଗ୍ରାମବାସୀ ତାଙ୍କର ନିଜ ଆବଶ୍ୟକତାପାଇଁ ଉକ୍ତ ଜଙ୍ଗଲରୁ ବନଜାତ ସାମଗ୍ରୀ ନେବାପାଇଁ ହକ୍‌ଦାର ହେବେ । ଅଣକାଷ୍ଠ ଜାତୀୟ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରି ତାକୁ ଗଚ୍ଛିତ ରଖିବା ଓ ସେଥିରୁ ଅନ୍ୟାନ୍ୟ ସାମଗ୍ରୀ ପ୍ରସ୍ତୁତ କରିବାର ପୂର୍ଣ୍ଣ ଅଧିକାର ଗ୍ରାମଗୋଷ୍ଠୀ ସଦସ୍ୟମାନଙ୍କର ରହିବ । ତେବେ ଏହି ସବୁ ସାମଗ୍ରୀକୁ ନିର୍ଦ୍ଧାରିତ ମୂଲ୍ୟ ବଦଳରେ ସରକାରୀ ସଂଗ୍ରାହକ, ପ୍ରତିନିଧି ବା ସ୍ୱୀକୃତିପ୍ରାପ୍ତ ପଟ୍ଟାଦାରଙ୍କୁ ହସ୍ତାନ୍ତର କରିବାକୁ ହେବ । ଯେଉଁ ଗ୍ରାମଗୋଷ୍ଠୀ ସାମାଜିକ ବନୀକରଣ ଯୋଜନାରେ ଗଢ଼ିଉଠିଥିବା ଗ୍ରାମ୍ୟ ଜଙ୍ଗଲର ରୋପଣ ପୁନରୁଦ୍ଧାର, ରକ୍ଷଣାବେକ୍ଷଣ ଓ ସୁରକ୍ଷାରେ ସକ୍ରିୟ ଅଂଶ ଗ୍ରହଣ କରିଛନ୍ତି, ସେମାନେ ଶତକଡ଼ା ଶହେଭାଗ ସ୍ୱତ୍ୱ ପାଇବେ ।

ଜନସାଧାରଣଙ୍କର ସହଯୋଗରେ ଜଙ୍ଗଲର ସୁରକ୍ଷା ଓ ଯୁଗ୍ମ ପରିଚାଳନାକୁ ଫଳପ୍ରଦ କରିବାପାଇଁ ରାଜ୍ୟ ସରକାରଙ୍କ ତରଫରୁ ବିଭିନ୍ନ ସମୟରେ ନିଆଯାଇଥିବା ପଦକ୍ଷେପ ଫଳରେ ଏବଂ ଅତ୍ୟାବଶ୍ୟକୀୟ ବନଜାତ ଦ୍ରବ୍ୟର ଉପଲବ୍‌ଧିରେ ଦ୍ରୁତ ହ୍ରାସ ହେତୁ ନିଜ ନିଜ ଅଞ୍ଚଳର ଜଙ୍ଗଲ ସୁରକ୍ଷାପାଇଁ ଗ୍ରାମବାସୀମାନଙ୍କ ମଧ୍ୟରେ ଅଧିକରୁଅଧିକ ଆଗ୍ରହ ପ୍ରକାଶପାଇଛି । ୧୯୯୫ ମସିହାରେ ରାଜ୍ୟ ବନ ବିଭାଗ ତରଫରୁ କରାଯାଇଥିବା ଅନ୍ୟ ଏକ ସର୍ଭେରୁ ଜଣାଯାଏ, ରାଜ୍ୟର ବିଭିନ୍ନ ଅଂଚଳରେ ଆପାତତଃ ୨୬୧୯ ଗୋଟି ସୁରକ୍ଷା ସମିତି ଜରିଆରେ ପ୍ରାୟ ୩ ଲକ୍ଷ ୩୩ ହଜାର ହେକ୍ଟର ଜଙ୍ଗଲ ଅଂଚଳ ରକ୍ଷଣାବେକ୍ଷଣ ଓ ପରିବର୍ଦ୍ଧନ କରାଯାଉଛି । ସୁରକ୍ଷାରେ ଭାଗ ନେଉଥିବା ଗୋଷ୍ଠୀଗୁଡ଼ିକ ମଧ୍ୟରେ ବନ ସଂରକ୍ଷଣ ସମିତି, ଗ୍ରାମ୍ୟ ବନ କମିଟି, ବନ ସୁରକ୍ଷା ସମିତି ଏବଂ ଏପରିକି ଅନେକ ଅଣସ୍ୱୀକୃତିପ୍ରାପ୍ତ, ସ୍ୱେଚ୍ଛାକୃତ ଆଗଭର ହୋଇଥିବା ଗୋଷ୍ଠୀ ମଧ୍ୟ ଅଛନ୍ତି । ଏମାନଙ୍କ ମଧ୍ୟରୁ ପ୍ରାୟ ୧୪୫୦ଟି କମିଟି ବା ସମିତି ଜଙ୍ଗଲ ସୁରକ୍ଷା ଦିଗରେ କାର୍ଯ୍ୟତତ୍ପର ଅଛନ୍ତି । ୧୯୮୮-୮୯ ମସିହାରେ ପ୍ରକାଶିତ ରିପୋର୍ଟ ତୁଳନାରେ ସଂପ୍ରତି ଜଙ୍ଗଲ ସୁରକ୍ଷାରେ ସକ୍ରିୟ ଗୋଷ୍ଠୀ ବା ଦଳର ସଂଖ୍ୟା ଏବଂ ସୁରକ୍ଷିତ ଜଙ୍ଗଲର ଆୟତନ ଯଥେଷ୍ଟ ପରିମାଣରେ ବୃଦ୍ଧିପାଇଛି । ନିଶ୍ଚିତ ଭାବରେ ଏହା ଏକ ଶୁଭ ସଙ୍କେତ । ଆମ ରାଜ୍ୟରେ ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମ ଆଉ କେବଳ ସରକାରୀ ସ୍ତରରେ ସୀମିତ ନରହି କ୍ରମଶଃ ଜନଆନ୍ଦୋଳନରେ ପରିଣତହେବାକୁ ଯାଉଛି ।



# ଯୁଗ୍ମ ବନପରିଚାଳନା – ଦ୍ୱିତୀୟ ପିଢ଼ିର ସମସ୍ୟା

ଜନସହଯୋଗରେ ଜଂଗଲ ସୁରକ୍ଷା ତଥା ଯୁଗ୍ମ ବନପରିଚାଳନା ଉଦ୍ଦେଶ୍ୟରେ ଓଡ଼ିଶା ରାଜ୍ୟ ସରକାର ୧୯୮୮ ମସିହାଠାରୁ ଅଦ୍ୟାବଧି ଏକାଧିକ 'ସଂକଳ୍ପ' ବା ନିର୍ଦ୍ଦେଶନାମା ପ୍ରଣୟନ କରିସାରିଛନ୍ତି । ଏହା ଫଳରେ ଜଂଗଲର ସୁରକ୍ଷା ଓ ରକ୍ଷଣାବେକ୍ଷଣ ତଥା ପରିଚାଳନା ଆଜି କେବଳ ବନ ବିଭାଗର ଦାୟିତ୍ୱ ହୋଇ ରହିନାହିଁ । ବରଂ ଏହା ଏକ ସାମୂହିକ ଜାତୀୟ ଦାୟିତ୍ୱରେ ପରିଣତ ହୋଇଛି । ୧୯୮୮ ମସିହାର 'ଯୁଗ୍ମ ବନପରିଚାଳନା' ଅଧିନିୟମ ପରେପରେ ରାଜ୍ୟର ବିଭିନ୍ନ ବନ ଡିଭିଜନରେ 'ଜଙ୍ଗଲ ସୁରକ୍ଷା ସମିତି' ମାନ ଗଠନ କରାଯାଇଥିଲା । ପରେ ୧୯୯୩ ମସିହାରେ 'ବନ ସଂରକ୍ଷଣ ସମିତି' ଜରିଆରେ ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମ କରାଯିବ ବୋଲି ସ୍ଥିରହେଲା । ତେବେ ୧୯୮୮ ଠାରୁ ୧୯୯୩ ପର୍ଯ୍ୟନ୍ତ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଗଠିତ ହୋଇଥିବା 'ଜଙ୍ଗଲ ସୁରକ୍ଷା ସମିତି' ଗୁଡିକର ପୁନର୍ବିନ୍ୟାସ ନହୋଇ ସେଗୁଡ଼ିକ 'ବନ ସଂରକ୍ଷଣ ସମିତି' ରେ ପରିଣତ ନହେଲା ପର୍ଯ୍ୟନ୍ତ, ବନ ସୁରକ୍ଷା ସମିତି ଗୁଡ଼ିକ ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମ ପୂର୍ବବତ୍ କରିବେ ବୋଲି ରାଜ୍ୟ ସଂଚାଳନ କମିଟି ନିଷ୍ପତ୍ତି ନେଇଥିଲା ।

୧୯୮୪ ମସିହାଠାରୁ ୧୯୯୪ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ସାମାଜିକ ବନୀକରଣ ଯୋଜନା କାର୍ଯ୍ୟକାରୀ ହୋଇଥିଲା । ଏହି ଯୋଜନାରେ ରାଜ୍ୟର ପ୍ରତ୍ୟେକ ଜିଲ୍ଲାର ବିଭିନ୍ନ ଗ୍ରାମରେ 'ଗ୍ରାମ୍ୟ ଜଂଗଲ' ସୃଷ୍ଟି କରାଯାଇ ସେଗୁଡ଼ିକର ରକ୍ଷଣାବେକ୍ଷଣ ଓ ପରିଚାଳନା ଦାୟିତ୍ୱ 'ଗ୍ରାମ୍ୟ ବନ କମିଟି' ଉପରେ ନ୍ୟସ୍ତ କରାଯାଇଥିଲା । ୧୯୯୪ ମସିହାରେ ଏହି 'ଗ୍ରାମ୍ୟ ବନ କମିଟି' ଗୁଡ଼ିକୁ ମଧ୍ୟ ଯୁଗ୍ମ ବନପରିଚାଳନା ପରିସରଭୁକ୍ତ କରିବାପାଇଁ ରାଜ୍ୟ ସରକାର ନିର୍ଦ୍ଦେଶ ଦେଇଅଛନ୍ତି । ଏହା ବ୍ୟତୀତ ରାଜ୍ୟର ବିଭିନ୍ନ ସ୍ଥାନରେ ଅନେକ ବେସରକାରୀ ସଂସ୍ଥା, ଯୁବକ ସଂଘ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ମଧ୍ୟ ଜନସାଧାରଣଙ୍କ ମଧ୍ୟରେ ଜାଗରଣ ସୃଷ୍ଟିକରି ଜଂଗଲ ସୁରକ୍ଷା କାର୍ଯ୍ୟରେ ସଂଶ୍ଳିଷ୍ଟ ଅଛନ୍ତି । ଉଲ୍ଲିଖିତ ସଂସ୍ଥା ବା କମିଟି ଜରିଆରେ ରାଜ୍ୟର ବିଭିନ୍ନ ଅଂଚଳରେ ସୁରକ୍ଷିତ ଜଂଗଲ ଓ ତା'ର ଆୟତନ ସଂପର୍କରେ ଏକ ସଂକ୍ଷିପ୍ତ ବିବରଣୀ ପ୍ରଦତ୍ତ ହେଲା ।

ପ୍ରଦତ୍ତ ପରିସଂଖ୍ୟାନକୁ ଅନୁଶୀଳନ କଲେ ଜଣାଯାଏ, ଲୋକମାନଙ୍କ ସହାୟତାରେ ଜଂଗଲ ସୁରକ୍ଷା ବା ଯୁଗ୍ମ ବନପରିଚାଳନା କାର୍ଯ୍ୟକ୍ରମ ଓଡ଼ିଶାରେ ବିଗତ ଦଶଂଧିରେ ଆଶାତୀତ ସଫଳତା ହାସଲକରିଛି । ଏପରିକି ଅନେକ କ୍ଷେତ୍ରରେ ପ୍ରତିଦାନରେ ନିର୍ଦ୍ଦିଷ୍ଟ କିଛି ପାଇବାର ଆଶା ନରଖି ଅଥବା ଫଳପ୍ରାପ୍ତି ବିଷୟରେ ସଠିକ୍ ତଥ୍ୟ ନଜାଣି ମଧ୍ୟ ଗ୍ରାମାବାସୀମାନେ ଜଂଗଲ ସୁରକ୍ଷା କରିବାକୁ ଆଗଭର ହୋଇ ବାହାରିଛନ୍ତି । କିନ୍ତୁ ତିନି ଚାରି ବର୍ଷ ଉପଯୁକ୍ତ ସୁରକ୍ଷା ପ୍ରଦାନ ପରେ, ଯେତେବେଳେ ଶାଳଗଛଗୁଡ଼ିକୁ ଆଖିଦୃଶିଆ ହୋଇ ବଢ଼ିଉଠେ,

| ଜଙ୍ଗଲ ସୁରକ୍ଷାରେ ଅଂଶ ଗ୍ରହଣ କରିଥିବା ସଂସ୍ଥାର ନାମ | ସକ୍ରିୟ ସଂସ୍ଥାର ସଂଖ୍ୟା | ସୁରକ୍ଷା ପ୍ରଦାନ କରାଯାଇଥିବା ଜଂଗଲ ବ୍ଳକ୍‌ର ସଂଖ୍ୟା | ସୁରକ୍ଷିତ ହୋଇଥିବା ଜଂଗଲର ଆୟତନ (ହେକ୍ଟର) |
|---|---|---|---|
| ଜଂଗଲ ସୁରକ୍ଷା କମିଟି | 1227 | 490 | 1,80,900 |
| ବନସଂରକ୍ଷଣ ସମିତି | 1060 | 720 | 93,895 |
| ଅଣସ୍ୱୀକୃତିପ୍ରାପ୍ତ ସଂସ୍ଥା ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନ | 640 | 289 | 89,864 |
| ଗ୍ରାମ୍ୟ ବନ କମିଟି (ସାମାଜିକ ବନୀକରଣ ସଂସ୍ଥା) | 5683 | 6043 (ପ୍ଲାଣ୍ଟେସନ୍ ବ୍ଲକ) | 78,646 |

ସେତେବେଳେ କେତେକ ଆନୁଷଙ୍ଗିକ ସମସ୍ୟା ସୃଷ୍ଟିହେବାର ଦୃଷ୍ଟାନ୍ତ ଅଛି । ଏ ବିଷୟରେ ପର୍ଯ୍ୟାୟକ୍ରମେ ଆଲୋଚନା କରାଯାଇପାରେ ।

(୧) ଆମ ରାଜ୍ୟର ରକ୍ଷିତ ଓ ଖେସରା ଜଂଗଲଗୁଡ଼ିକ ପ୍ରଜାସ୍ୱତ୍ୱ ବା ପ୍ରଜା ଅଧିକାରରେ ଭାରାକ୍ରାନ୍ତ । ଏହି ଜଂଗଲଗୁଡ଼ିକରୁ ନିକଟସ୍ଥ ଗ୍ରାମବାସୀମାନେ ନିଜର ଆବଶ୍ୟକତା ମୁତାବକ ଜାଳକାଠ, ଘର ତିଆରିପାଇଁ କାଠ ବା କୃଷି ଉପକରଣପାଇଁ କାଠ ରିହାତି ଦରରେ (Schedule of Rate) ସଂଗ୍ରହ କରିଥା'ନ୍ତି ଏବଂ ଏଥିପାଇଁ ସେମାନେ ବରାବର ବାର୍ଷିକ ସାମାନ୍ୟ କର (Cess) ମଧ୍ୟ ଦେଇଥା'ନ୍ତି । ଯେତେବେଳେ ଜଂଗଲ ସଂପୂର୍ଣ୍ଣ କ୍ଷୟପ୍ରାପ୍ତ ଅବସ୍ଥାରେ ଥିଲା ସେତେବେଳେ ଉପରୋକ୍ତ ଗ୍ରାମବାସୀମାନେ ଜାଳକାଠ ବା ଛୋଟକାଠ ପାଇବାର ଆଶା ରଖିନଥିଲେ । କିନ୍ତୁ ଯେତେବେଳେ ଜଗାରଖା ଫଳରେ ତିନି ଚାରି ବର୍ଷ ଭିତରେ ଛନଛନ ଶାଳଗଛ ଉଠିଆସିଲା, ସେତେବେଳେ ଜଗାରଖା କରୁଥିବା ଗାଁ ବ୍ୟତୀତ ପାଖ ଗାଁର ଲୋକମାନେ ମଧ୍ୟ ବିଧିମୁତାବକ ଉକ୍ତ ଜଂଗଲରୁ ସେମାନଙ୍କର ଅଧିକାର ଦାବି କଲେ । ଏହା ଫଳରେ ଗାଁ ଗାଁ ଭିତରେ କଂନ୍ଦଳ ତେଜିଉଠିଲା ଏବଂ ପ୍ରାଥମିକ ଅବସ୍ଥାରେ କେତେକ ଗାଁରେ ଧନଜୀବନ କ୍ଷୟ ହେବାର ମଧ୍ୟ ନଜିର ଅଛି । ପରବର୍ତ୍ତୀ ପର୍ଯ୍ୟାୟରେ ଯୁଗ୍ମ ବନପରିଚାଳନା ସଂପର୍କୀୟ ନିର୍ଦ୍ଦେଶନାମା ପ୍ରସ୍ତୁତ କଲାବେଳେ ଏ ଦିଗଟି ପ୍ରତି ଉଚିତ ଧ୍ୟାନ ଦିଆଯାଇଛି ।

(୨) କିଛି ବର୍ଷ ଜଂଗଲ ସୁରକ୍ଷା କଲା ପରେ, ଜଗୁଥିବା ଗାଁର ଲୋକମାନଙ୍କ ଭିତରେ ମନଫଟାଫଟି ହୋଇ ବିଭିନ୍ନ ଦଳ ସୃଷ୍ଟି ହୋଇଛି ଓ ଗାଁର ବିଭିନ୍ନ ଗୋଷ୍ଠୀ ଭିନ୍ନ ଭିନ୍ନ ଲକ୍ଷ୍ୟରେ କାମ କରିଛନ୍ତି । ଦିନେ ହଠାତ୍ ଦେଖିଲାବେଳକୁ ଗୋଷ୍ଠୀକଂନ୍ଦଳ ହେତୁ ରାତାରାତି ସଂପୂର୍ଣ୍ଣ ଜଂଗଲଟି କଟି ସଫାହୋଇଯାଇଛି । ଥରେ ଜଂଗଲ କଟିଗଲେ, ଜଂଗଲ ସୁରକ୍ଷାପାଇଁ ପ୍ରଥମ ଅବସ୍ଥାରେ ଗ୍ରାମବାସୀମାନଙ୍କ ମନରେ ଯେଉଁ ଉତ୍ସାହ ଓ ଉଦ୍ଦୀପନା ଥାଏ, ତାହା ମଉଳିଆସେ ।

(୩) କେତେକ ଗ୍ରାମର ଲୋକମାନେ ପାର୍ଶ୍ୱବର୍ତ୍ତୀ ଜଂଗଲର ସୁରକ୍ଷା ଗତ ୧୯୮୮ ମସିହାରୁ କରିଆସୁଛନ୍ତି । ଏଇ ଭିତରେ ଶାଳଗଛଗୁଡ଼ିକ ବେଶ୍ ବଡ଼ ହୋଇ ଗଣ୍ଡିର ଗୋଲେଇ

ଦୁଇ ଫୁଟରୁ ଅଧିକ ହେଲାଣି । ତଥାପି ଗ୍ରାମବାସୀମାନେ ଜଂଗଲ କାଟିବାପାଇଁ ଏପରିକି ପାତଳୀକରଣପାଇଁ ମଧ୍ୟ ରାଜିନୁହନ୍ତି । ନିଜର ଆବଶ୍ୟକତା ମୁତାବକ ଜାଳକାଠ ଓ ଛୋଟକାଠ ସେମାନେ ନିକଟସ୍ଥ ସରକାରୀ ଜଂଗଲରୁ ସଂଗ୍ରହକରିନେଉଛନ୍ତି । ଯୁଗ୍ମ ବନପରିଚାଳନାର ପ୍ରକୃତ ଉଦ୍ଦେଶ୍ୟ ଯଥା ଗ୍ରାମବାସୀମାନେ ନିଜେ ଜଗିଥିବା ଜଂଗଲରୁ ଜାଳକାଠ ଓ ଛୋଟକାଠର ଆବଶ୍ୟକତା ମେଣ୍ଟାଇବେ, ତାହା ସାଧିତ ହୋଇପାରୁନାହିଁ ।

(୪) ୧୯୯୪ ମସିହାରେ ଏକ ନିର୍ଦ୍ଦେଶନାମା ଜାରିକରି ରାଜ୍ୟ ସରକାର, ସାମାଜିକ ବନ ଯୋଜନାରେ ସୃଷ୍ଟି ହୋଇଥିବା 'ଗ୍ରାମ୍ୟ ଜଂଗଲ' ଗୁଡ଼ିକୁ ମଧ୍ୟ ଯୁଗ୍ମ ବନପରିଚାଳନା କାର୍ଯ୍ୟକ୍ରମର ପରିସରଭୁକ୍ତ କରିଥିଲେ । ଏହି ଯୋଜନାରେ ଅମଳ ପରେ ଶତକଡ଼ା ୧୦୦ ଭାଗ କାଠ ଓ ଜାଳକାଠ ଗ୍ରାମବାସୀଙ୍କୁ ମିଳିବାର ବ୍ୟବସ୍ଥା ଅଛି । ଏହି ଗ୍ରାମ୍ୟ ବନ କମିଟିଗୁଡ଼ିକ ବନପରିଚାଳନା କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ ହେଲେ, ପ୍ରଥମ ଦଫାରେ ଅମଳର ଶତକଡ଼ା ଶହେ ଭାଗ ଲୋକମାନଙ୍କୁ ମିଳିବାର ବ୍ୟବସ୍ଥା ଥିଲାବେଳେ, ଦ୍ୱିତୀୟ ଦଫା ଅମଳବେଳେ ମାତ୍ର ଶତକଡ଼ା ୫୦ ଭାଗ ମିଳିବାର ବ୍ୟବସ୍ଥା ଅଛି । ସାମାଜିକ ବନ ଯୋଜନାର ଅନ୍ୟତମ ଲକ୍ଷ୍ୟଥିଲା, ପ୍ରଥମ ଦଫା ଅମଳ ପରେ ସେଥିରୁ ଉପଲବ୍ଧ ଅର୍ଥରୁ ଗ୍ରାମବାସୀମାନେ ନିଜ ଚେଷ୍ଟାରେ ସମସ୍ତ ଖର୍ଚ୍ଚ ବହନ କରି ପୁନଃ ବନୀକରଣ କରିବେ । କିନ୍ତୁ ଯୁଗ୍ମ ବନ ଯୋଜନାରେ ସେମାନଙ୍କୁ ଶତକଡ଼ା ୧୦୦ ଭାଗ ପରିବର୍ତ୍ତେ ୫୦ ଭାଗ ମିଳିବାର ବ୍ୟବସ୍ଥା ଥିବାରୁ ନିଜ ହାତରୁ ବ୍ୟୟ କରି ପୁନଃ ବନୀକରଣ କରିବାକୁ ଗ୍ରାମବାସୀମାନେ ଅନିଚ୍ଛା ପ୍ରକାଶ କରୁଛନ୍ତି ।

(୫) ୧୯୯୬ ମସିହା ସେପ୍ଟେମ୍ବର ମାସରେ ଜଂଗଲ ନିକଟସ୍ଥ ଗ୍ରାମବାସୀମାନଙ୍କୁ ଜଂଗଲର ରକ୍ଷଣାବେକ୍ଷଣପାଇଁ ଉତ୍ସାହ ପ୍ରଦାନ ତଥା ଜଂଗଲଜାତ ଦ୍ରବ୍ୟ ବ୍ୟବହାରରେ ଅଧିକାର ପ୍ରଦାନ ବିଷୟ ଉପରେ ଜାରି 'ସଂକଳ୍ପ'ରେ କୁହାଯାଇଛି ଯେ, କୌଣସି ଜଂଗଲ ଉପରେ ନିୟନ୍ତ୍ରଣ ଓ ତାହାର ପରିଚାଳନା ଅଧିକାର ଗୋଟିଏ ଗ୍ରାମଗୋଷ୍ଠୀକୁ ଦେବାକୁ ହେଲେ, ସେହି ଜଂଗଲକୁ ଗ୍ରାମ୍ୟ ଜଂଗଲ (Village Forest) ଘୋଷଣା କରିବାକୁ ହେବ । ଏପରି ଘୋଷିତ ଗ୍ରାମ୍ୟ ଜଂଗଲରୁ ଜଂଗଲଜାତ ସାମଗ୍ରୀ ସଂଗ୍ରହ କରିବାର ସାମୂହିକ ଅଧିକାର କେବଳ ନିର୍ଦ୍ଦିଷ୍ଟ ପାର୍ଶ୍ୱବର୍ତ୍ତୀ ଗ୍ରାମର ଗ୍ରାମବାସୀଙ୍କୁ ଅର୍ପଣ କରାଯିବ । କିନ୍ତୁ ଏହି ଜଂଗଲଗୁଡ଼ିକୁ ଥରେ ଗ୍ରାମ୍ୟ ଜଂଗଲ (Village Forest) ଘୋଷଣା କଲେ, ସେଠାରେ ଓଡ଼ିଶା ଗ୍ରାମ୍ୟ ଜଂଗଲ ଆଇନ୍ ୧୯୮୫ (Orissa Village Forest Rule, 1985) ଲାଗୁହେବ । ଗ୍ରାମବାସୀମାନେ ଏହି ଜଂଗଲରୁ ଅମଳ କରାଯାଉଥିବା କାଠ, ଜାଳକାଠ, ବାଉଁଶ ଶତକଡ଼ା ଶହେଭାଗ ପାଇବେ । ଅଥଚ, ୧୯୯୩ ମସିହା ଯୁଗ୍ମ ବନପରିଚାଳନା ନିର୍ଦ୍ଦେଶନାମାରେ ଶେଷ ଅମଳବେଳେ ମାତ୍ର ଶତକଡ଼ା ୫୦ ଭାଗ ପାଇବାର ବ୍ୟବସ୍ଥା ଅଛି । ଉଭୟ ନିର୍ଦ୍ଦେଶନାମାରେ ଥିବା ଅସଂଗତି ଗ୍ରାମବାସୀମାନଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି କରୁଛି ।

ଓଡ଼ିଶାରେ ୧୯୮୮ ମସିହାରେ 'ଯୁଗ୍ମ ବନ ଯୋଜନା' କାର୍ଯ୍ୟକାରୀହେବା ପରଠାରୁ ଏଇ ଯେଉଁ ଅସଂଗତି ଲକ୍ଷ୍ୟ କରାଯାଉଛି ବା କ୍ଷେତ୍ର ସମସ୍ୟା ସୃଷ୍ଟି ହେଉଛି, ସେଗୁଡ଼ିକୁ ଦ୍ୱିତୀୟ ପିଢ଼ିର ସମସ୍ୟା ରୂପେ ଅଭିହିତ କରାଯାଇପାରେ ।



# ଜୀବାଶ୍ମ - ଜାଳେଣିକାଠ

ମନୁଷ୍ୟର ତିନୋଟି ମୌଳିକ ଆବଶ୍ୟକତା ରହିଛି । ତାହା ହେଉଛି– ଖାଦ୍ୟ, ବସ୍ତ୍ର, ବାସଗୃହ; କିଂତୁ ଆଜିକାଲି ମନୁଷ୍ୟ ସଭ୍ୟତା ଯେଉଁ ସ୍ତରରେ ପହଞ୍ଚିଛି, ସେଠି 'ଶକ୍ତି' ଅନ୍ୟତମ ମୌଳିକ ଆବଶ୍ୟକତା ରୂପେ ଉଭା ହୋଇଛି । ରାନ୍ଧିବାପାଇଁ ଜାଳେଣିଠାରୁ ଆରଂଭ କରି, ବିଦ୍ୟୁତ୍‌ଶକ୍ତି ଓ ଆଣବିକଶକ୍ତି ପର୍ଯ୍ୟନ୍ତ ଶକ୍ତିର ଭିନ୍ନ ଭିନ୍ନ ରୂପରେଖ ପ୍ରଗତିର ରଥଚକ୍ରକୁ ଆଗେଇ ନେଉଛନ୍ତି । କିଂତୁ ଆଜି ପ୍ରଗତିର ରଥଚକ ବଡ଼ଦାଣ୍ଡରେ ଗଡ଼ିଗଲାବେଳେ, ଶକ୍ତି ସଙ୍କଟର ସମସ୍ୟା ତା' ରାସ୍ତାରେ ବାଧା ସୃଷ୍ଟିକରୁଛି । ଏବେ ଆମ ଦେଶ ଶକ୍ତି ସଙ୍କଟରେ ସମ୍ମୁଖୀନ । ଏକବିଂଶ ଶତାବ୍ଦୀରେ ପାଦଦେଲା ବେଳକୁ ଶକ୍ତି ସମସ୍ୟା ଅଧିକ ଉତ୍କଟ ଆକାର ଧାରଣ କରିବ । ଜାଳେଣିକାଠର ଅଭାବ ହେତୁ ଅନେକ ଗ୍ରାମୀଣ ପରିବାର ଦିନକୁ ଓଳିଏ ମାତ୍ର ରାନ୍ଧିବାକୁ ବାଧ୍ୟ ହେବେ । ମଲାମଣିଷଙ୍କ ଶବ ପୋଡ଼ିବାକୁ କାଠଖଣ୍ଡେ ମିଳିବନାହିଁ । କୁମ୍ଭାରମାନେ କଞ୍ଚା ମାଟିପାତ୍ର ପୋଡ଼ି ଟାଣକରିବାକୁ ଇନ୍ଧନ ପାଇବେନାହିଁ । ପାରମ୍ପରିକ ଶକ୍ତି ଯଥା– କୋଇଲା, ପେଟ୍ରୋଲ ବା ଡିଜେଲ୍‌ର ଗଚ୍ଛିତ ଭଣ୍ଡାର ମଧ ଧୀରେ ଧୀରେ ସରିଆସୁଛି । ବିଜୁଳିଶକ୍ତି କଥା ନକହିଲେ ଭଲ । ଗାଁ ଦାଣ୍ଡରେ ମିଞ୍ଜିମିଞ୍ଜି ଜଳୁଥିବା ବିଜୁଳି ଆଲୁଅକୁ ଦେଖିଲେ ଠଉରେଇହେବ, ଏହାକୁ ବ୍ୟବହାର କରି କେତେଦୂର ଖାଦ୍ୟ ପ୍ରସ୍ତୁତ କରିହେବ ? ତା'ଛଡ଼ା ସମୟ ଅସମୟରେ ବରାବର ବିଜୁଳିକାଟ ଲାଗିରହିଛି । ବିଦ୍ୟୁତ୍‌ଶକ୍ତିର ଅଭାବରେ ଚାଷୀମାନେ ଆବଶ୍ୟକ ସମୟରେ କ୍ଷେତକୁ ପାଣି ମଡ଼େଇବାକୁ ପମ୍ପ୍ ମଧ ଚଳେଇପାରୁନାହାନ୍ତି । ଗାଁର ଅଧିକାଂଶ ଗରିବ ଲୋକ ମୂଲଲାଗି ପେଟପୋଷନ୍ତି । କିରାସିନି ଜାଳି ରୋଷେଇ କରିବାକୁ ସେମାନଙ୍କ ପାଖରେ ପଇସା କାହିଁ ? ଗ୍ୟାସ୍ ଜାଳିବାକୁ ସମ୍ବଳ କାହିଁ ? ତେଣୁ ଦିନ ଆସିବ, ଗାଁର ଶ୍ରମିକ, ମଜୁରିଆ, ଚାଷୀ ଓ ଆଦିବାସୀମାନଙ୍କ ପାଖରେ ଚାଉଳ ଥିବ, ଡାଲି ଥିବ ଓ ପରିବାପତ୍ର ଥିବ ଅଥଚ ତାକୁ ରାନ୍ଧି କରି ଖାଇବାପାଇଁ ଜାଳେଣି ନଥିବ ବା କାଠ ନଥିବ ।

**ସୂର୍ଯ୍ୟହିଁ ସକଳ ଶକ୍ତିର ଆଧାର :**

ସୂର୍ଯ୍ୟହିଁ ସକଳ ଶକ୍ତିର ଗନ୍ତାଘର । ସୂର୍ଯ୍ୟାଲୋକ ଓ ତାପହିଁ ପୃଥିବୀପୃଷ୍ଠରେ ଗଢ଼ିଉଠିଥିବା ସମସ୍ତ ଜୀବନ ଏବଂ ଶକ୍ତିର ମୂଳଉତ୍ସ । ନିତିଦିନିଆ କାମପାଇଁ ଆମେ କାଠ, ବିଦ୍ୟୁତ୍ ବା ପେଟ୍ରୋଲ୍ ଭଳି ବସ୍ତୁ ବ୍ୟବହାର କରୁଛୁ । କିଂତୁ ଏହି ବିଦ୍ୟୁତ୍, କାଠ, କୋଇଲା ଓ ପେଟ୍ରୋଲ୍ ସବୁ ସେହି ସୌରଶକ୍ତିର ସାଇତାରୂପ, ରୂପାନ୍ତର । ସୂର୍ଯ୍ୟର ଶକ୍ତିକୁ ସିଧାସଳଖ କାମରେ ଲଗାଇପାରନ୍ତି ଉଦ୍ଭିଦମାନେ । ଆଲୋକ ସଂଶ୍ଳେଷଣ (Photosynthesis) ମାଧମରେ ଉଦ୍ଭିଦମାନେ ଗ୍ଲୁକୋଜ୍ ବା ଶର୍କରାଜାତୀୟ ଖାଦ୍ୟ ପ୍ରସ୍ତୁତ କରନ୍ତି । ଏହି ପ୍ରକ୍ରିୟାରେ ସୂର୍ଯ୍ୟାଲୋକ, ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ, ଗଛର ଚେର ସାହାଯ୍ୟରେ ମାଟିରୁ ସଂଗୃହୀତ ଜଳ ଓ ସବୁଜ ପତ୍ରରେ ଥିବା ହରିତ୍‌କଣିକା ସମ୍ମିଳିତ ଭାବେ ଅଂଶଗ୍ରହଣ କରିଥା'ନ୍ତି ।

ଗ୍ଲୁକୋଜ୍‌ରେ ଗଢ଼ା ଜଟିଳ ଅଣୁ ସେଲୁଲୋଜ୍ ଉଦ୍ଭିଦର ଜୀବକୋଷମାନଙ୍କରେ ଜମାହୋଇ ତା'ର ଗଠନ ଓ ପରିବୃଦ୍ଧି ଘଟାଇଥାଏ । ଏହି ଉପାୟରେ ସୌରଶକ୍ତି ରାସାୟନିକ ଶକ୍ତିରେ ପରିବର୍ତ୍ତିତ ହୋଇ ଉଦ୍ଭିଦର ବିଭିନ୍ନ ଅଙ୍ଗରେ ସଞ୍ଚିତ ହୋଇ ରହେ ଏବଂ ଏହି ଷ୍ଟାର୍ଚ୍ଚକୁ ମନୁଷ୍ୟ ଓ ଜୀବଜଗତ ଖାଦ୍ୟରୂପେ ବ୍ୟବହାର କରିଥା'ନ୍ତି । ଆଗରୁ କୁହାଯାଇଛି, ଖାଦ୍ୟ ଆମର ଅନ୍ୟତମ ମୌଳିକ ଆବଶ୍ୟକତା । ଶରୀରର ଉତ୍ତାପ ବଜାୟ ରଖିବାରେ ସହାୟକ ହେବା ସଙ୍ଗେ ସଙ୍ଗେ ଚାଲିବା, ଦୌଡ଼ିବା ଓ ଅନ୍ୟ ସମସ୍ତ କାର୍ଯ୍ୟକରିବାପାଇଁ ଶକ୍ତି ଖାଦ୍ୟରୁହିଁ ମିଳିଥାଏ ।

**କାଠରୁ ଶକ୍ତି –**

ଆମର ଦୈନନ୍ଦିନ ଜୀବନରେ ଜାଳେଣିକାଠ ବା ଇନ୍ଧନହିଁ ଶକ୍ତିର ଅନ୍ୟତମ ଉତ୍ସ । ଜାଳେଣିକାଠ ଶକ୍ତିର ଏକ ଘନୀଭୂତ ଗନ୍ତାଘର । ଅଧିକାଂଶ ଇନ୍ଧନ କାର୍ବନର ଏକ ଯୌଗିକ ବସ୍ତୁ । ଏହା ଜଳିଲେ ଆଲୋକ ଓ ଉତ୍ତାପ ଦେଇଥାଏ । ଶକ୍ତି ପଦାର୍ଥ ବା ବସ୍ତୁରୁ ଆସିଥାଏ । ପ୍ରତ୍ୟେକ ବସ୍ତୁର ଓଜନ ଥାଏ ଏବଂ ଏହା କିଛିନାକିଛି ସ୍ଥାନ ଅଧିକାର କରେ । ବସ୍ତୁ ବା ପଦାର୍ଥ ବିଭିନ୍ନ ଅଣୁ, ପରମାଣୁକୁ ନେଇ ଗଠିତ । ପ୍ରତ୍ୟେକଟି ଅଣୁରେ କେତେକ କ୍ଷୁଦ୍ର କଣିକା ଥାଏ, ଯାହାକୁ ଶକ୍ତିରେ ରୂପାନ୍ତରିତ କରାଯାଇପାରେ । ଇନ୍ଧନରୂପେ ବ୍ୟବହୃତ ହେଲାବେଳେ, କାଠରେ ଥିବା ବସ୍ତୁ ବା ପଦାର୍ଥରେ ରାସାୟନିକ ପରିବର୍ତ୍ତନ ଘଟି ସେଥିରୁ ପାଉଁଶ, ଅଙ୍ଗାର କଣିକା ଓ ଅଙ୍ଗାରକାମ୍ଳ ବାଷ୍ପ ବାହାରିବା ସହିତ ଉତ୍ତାପ ଓ ଆଲୋକ ମାଧ୍ୟମରେ ଶକ୍ତିର ବିଚ୍ଛୁରଣ ହୋଇଥାଏ । ଜାଳେଣିରୂପେ ବ୍ୟବହୃତ ହେଉଥିବା କୋଇଲା ମଧ୍ୟ କାଠର ଅନ୍ୟ ଏକ ରୂପ । କୋଟି କୋଟି ବର୍ଷତଳେ ପୃଥିବୀପୃଷ୍ଠରେ ବଢୁଥିବା ଗଛମାନେ ମଲା ପରେ ମାଟି ଉପରେ ପଡ଼ିଲେ ଏବଂ ଧୀରେ ଧୀରେ ମାଟିରେ ପୋତିହୋଇଗଲେ । ଅନ୍ୟାନ୍ୟ କ୍ଷୟିଷ୍ଣୁ ବସ୍ତୁଦ୍ୱାରା ଆଚ୍ଛାଦିତ ହୋଇ ମାଟିତଳେ ଅତ୍ୟଧିକ ଚାପରେ କୋଟି କୋଟି ବର୍ଷ ରହିଲା ପରେ, ତାହା କୋଇଲାରେ ପରିଣତ ହେଲା । ତେଣୁ କାଠ, କୋଇଲା ବା ପେଟ୍ରୋଲ ଏହି ଜୀବାଶ୍ମ ଶକ୍ତିର ଭିନ୍ନ ଭିନ୍ନ ରୂପ ।

**ଜାଳେଣିକାଠର ବ୍ୟବହାର –**

ପୃଥିବୀପୃଷ୍ଠରେ ମନୁଷ୍ୟ ଯେବେଠାରୁ ଛୋଟ ଛୋଟ ଦଳ ହୋଇ ବସବାସ କରିବାକୁ ଲାଗିଲା, ସେବେଠାରୁ ଜାଳକାଠ ଶକ୍ତିର ଏକ ପ୍ରଧାନ ଭଣ୍ଡାରରୂପେ ପରିଗଣିତ ହୋଇଆସୁଛି । ଆଦିମ ମଣିଷ ଦୁଇଟି କାଠକୁ ଘଷି ନିଆଁ ବାହାରକରୁଥିଲା । ନିଆଁର ବ୍ୟବହାର ଶିଖିବା ସହିତ ସଭ୍ୟତାର ମୂଳଦୁଆ ପଡ଼ିଲା । ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସାରା ପୃଥିବୀରେ ଜାଳେଣିକାଠ ଶକ୍ତିର ଏକମାତ୍ର ସାଧନ ଥିଲା । ପ୍ରଥମ ବିଶ୍ୱଯୁଦ୍ଧର ବେଶ୍ କିଛିଦିନ ପର୍ଯ୍ୟନ୍ତ ଆମେରିକାରେ ରେଳ ଇଞ୍ଜିନ୍‌ମାନଙ୍କରେ ଶକ୍ତି ଉତ୍ପାଦନପାଇଁ ଜାଳେଣିକାଠ ବ୍ୟବହୃତ ହେଉଥିଲା । ପରେ କୋଇଲାକୁ ଜାଳେଣିରୂପେ ବ୍ୟବହାର କରାଗଲା । ଏବେ ମଧ୍ୟ ଆମ ଦେଶର ଗ୍ରାମାଞ୍ଚଳରେ ଜାଳେଣିକାଠ ଓ କୃଷିଜାତ ଦ୍ରବ୍ୟର ଅବଶିଷ୍ଟାଂଶକୁ ଶକ୍ତିର ମୁଖ୍ୟ ଉତ୍ସରୂପେ ବ୍ୟବହାର କରାଯାଉଛି । ଆଗରୁ ଆଲୋଚନା କରାଯାଇଛି, ଉଦ୍ଭିଦମାନଙ୍କଦ୍ୱାରା ଆତ୍ମୀକରଣ ହୋଇ ଜୈବବସ୍ତୁ (Biomass) ଆକାରରେ ସଂଗୃହୀତ ହେଉଥିବା ରୂପାନ୍ତରିତ

ସୌରଶକ୍ତିହିଁ ଆମର ଦୈନନ୍ଦିନ ଶକ୍ତି ଚାହିଦାର ପ୍ରଧାନ ବିକଳ୍ପ । ଏହାହିଁ ଅଣପାରମ୍ପରିକ ଶକ୍ତିର ମୁଖ୍ୟ ଆଧାର । ଚେରକୁ ଛାଡ଼ିଦେଲେ, ମାଟି ଉପରେ ଥିବା ଗଛର ସଂପୂର୍ଣ୍ଣ ଜୈବବସ୍ତୁର; ଗଛର ଗଣ୍ଡି, ଶାଖା ଡାଳ ଓ ପତ୍ର ଇତ୍ୟାଦି ଯଥାକ୍ରମେ ଶତକଡ଼ା ୭୦ ଭାଗ, ୨୦ ଭାଗ ଓ ୧୦ ଭାଗ ଅଟେ । କେବଳ ପତ୍ରଛଡ଼ା ଅନ୍ୟ ଦୁଇଟି ଅଂଶ ଯଥା– ଗଛର ଗଣ୍ଡି ଏବଂ ଶାଖା ଡାଳ ଭଲ ଜାଳେଣିରୂପେ ବ୍ୟବହୃତ ହୁଏ । ଯେଉଁଠି ଜାଳେଣିକାଠର ଘୋର ଅଭାବ, ସେଠି ପତ୍ରକୁ ମଧ ଲୋକେ ସାଇତିରଖି ବର୍ଷସାରା ଜାଳନ୍ତି । ବନୀକରଣ କରାଯାଉଥିବା ଆକାସିଆ, ଇଉକାଲିପଟାସ୍ ବା ଝାଉଁ ଜଙ୍ଗଲରେ ନଚେତ୍ ଶାଳ ଜଙ୍ଗଲରେ ପ୍ରତିଦିନ ଏକାଧିକ ସ୍ତ୍ରୀଲୋକ ଶୁଖିଲା ପତ୍ର ସଂଗ୍ରହ କରୁଥିବାର ଦୃଶ୍ୟ ଦେଖିବାକୁ ମିଳେ ।

## କାଠର ଦାହିକା ଶକ୍ତି –

ଆମ ଦେଶରେ ଯେତେ ପରିମାଣରେ କାଠ ମିଳେ, ତହିଁରୁ ଶତକଡ଼ା ୮୫ ଭାଗରୁ ଅଧିକ ଜାଳେଣି ବା କୋଇଲାଭାବେ ବ୍ୟବହୃତ ହୁଏ । ଏକକ ଓଜନର କାଠ ମୁକ୍ତ ବାୟୁରେ ଅର୍ଥାତ୍ ଅମ୍ଳଜାନ ପରିବେଶରେ ଜଳିଲେ କେତେ ପରିମାଣରେ ତାପ ପ୍ରଦାନ କରିବ, ତାହାହିଁ କାଠର ଦାହିକାଶକ୍ତି ନିର୍ଣ୍ଣୟ କରିଥାଏ । ଏହି ଏକକ ପରିମାଣକୁ 'କାଲୋରି' କୁହାଯାଏ । କେତେଗୁଡ଼ିଏ କାଠର ଦାହିକାଶକ୍ତି ତଳେ ପ୍ରଦାନ କରାଗଲା –

| ଜାଳେଣିକାଠର ନାମ | ତାପାଙ୍କ ମାନ (କାଲୋରି) |
|---|---|
| ବବୁଲ୍ | ୪୮୭୦ |
| ଝାଉଁ | ୪୯୫୦ |
| ଶାଳ | ୫୨୬୪ |
| ଅସନ | ୫୨୧୦ |
| ମହୁଲ | ୫୧୦୧ |
| ଆମ୍ବ | ୪୬୧୦ |

ରାନ୍ଧିବାପାଇଁ ବ୍ୟବହୃତ ହେଉଥିବା ଇନ୍ଧନର ଗୁଣାତ୍ମକ ମାନ କେବଳ କାଠର ଦାହିକା ଶକ୍ତି ଉପରେ ନିର୍ଭର କରେନାହିଁ । ବରଂ ଯେଉଁ କାଠଗୁଡ଼ିକ ଦୀର୍ଘ ସମୟ ଧରି ନିର୍ଦ୍ଦିଷ୍ଟ ପରିମାଣର ତାପ ପ୍ରଦାନ କରେ ଏବଂ ଶୀଘ୍ର ଫୁସ୍‌କରି ଜଳିଯାଏନାହିଁ ବା ଜଳିବା ସମୟରେ କୌଣସି ଦୁର୍ଗନ୍ଧ ହୁଏନାହିଁ, ତାହାହିଁ ଉତ୍ତମ ଜାଳେଣିକାଠରୂପେ ପରିଗଣିତ ହୋଇଥାଏ । ସେହି କାରଣରୁ ଶାଳ, ଝାଉଁ ଓ ଆମ୍ବ ଆଦି ଉତ୍ତମ ଜାଳକାଠ ।

## ଶକ୍ତିର ଆନୁପାତିକ ବ୍ୟବହାର –

୧୯୭୯ ମସିହାରେ ଦେଶର ଶକ୍ତି ନୀତି ନିର୍ଦ୍ଧାରଣପାଇଁ ଯେଉଁ କମିଟି ଗଠନ କରାଯାଇଥିଲା, ସେହି କମିଟି ଗ୍ରାମାଞ୍ଚଳ ତଥା ସହରାଞ୍ଚଳର ଲୋକମାନେ ପାରମ୍ପରିକ ତଥା ଅଣପାରମ୍ପରିକ ଶକ୍ତିର ବିଭିନ୍ନ ଉତ୍ସରୁ କେତେ କେତେ ଭାଗ ବ୍ୟବହାର କରିଥା'ନ୍ତି, ତା'ର ଏକ ତାଲିକା ପ୍ରସ୍ତୁତ କରିଥିଲେ ।

| କ୍ର.ନଂ. ଶକ୍ତିର ପ୍ରକାର | ମୁଣ୍ଡପିଛା ହାରାହାରି ଖର୍ଚ୍ଚ (ଶତକଡ଼ା) | |
|---|---|---|
| | ଗ୍ରାମାଞ୍ଚଳ | ସହରାଞ୍ଚଳ |
| ୧. ବିଦ୍ୟୁତ୍‌ଶକ୍ତି | ୦.୬% | ୫.୯% |
| ୨. ପେଟ୍ରୋଲ୍, ଡିଜେଲ୍ | ୧୬.୯% | ୩୦.୨% |
| ୩. କୋଇଲା | ୨.୩% | ୧୩.୭% |
| ୪. ଜାଳେଣିକାଠ | ୬୮.୫% | ୪୫.୫% |
| ୫. ଗୋବରଘଷି | ୮.୩% | ୩.୨% |
| ୬. ଅନ୍ୟାନ୍ୟ | ୩.୪% | ୧.୫% |
| ପାରମ୍ପରିକ ଶକ୍ତି | ୨୦.୦% | ୪୯.୦% |
| ଅଣପାରମ୍ପରିକ ଶକ୍ତି | ୮୦.୦% | ୫୧.୦% |

ଏହି ସମୀକ୍ଷାରୁ ଜଣାଯାଏ, ଜାଳେଣିକାଠ, ଗୋବରଘଷି ଓ ଅନ୍ୟାନ୍ୟ ଅଣପାରମ୍ପରିକ ଶକ୍ତିଉତ୍ସଗୁଡ଼ିକରୁ ଗ୍ରାମାଞ୍ଚଳରେ ଶତକଡ଼ା ୮୦ ଭାଗ ଜାଳେଣି ଚାହିଦା ମେଣ୍ଟିଥାଏ ଏବଂ ସହରାଞ୍ଚଳରେ ପ୍ରାୟ ଶତକଡ଼ା ୫୧ ଭାଗ ଚାହିଦା ଏହା ପୂରଣକରିଥାଏ । ତେଣୁ ଅଣ-ପାରମ୍ପରିକ ଶକ୍ତିହିଁ ବର୍ତ୍ତମାନ ଗ୍ରାମାଞ୍ଚଳରେ ଶକ୍ତିର ମୁଖ୍ୟ ଅଂଶ । ଏଥିରୁ ଅନେକ ପୁନଃ ବ୍ୟବହାରକ୍ଷମ ବା ପୁନଃ ନବୀକରଣୀୟ । ଉପଯୁକ୍ତ ଭାବରେ ବିନିଯୋଗ କଲେ, ଅର୍ଥାତ୍ ଗୋଟିଏ ଜଙ୍ଗଲର ବାର୍ଷିକ ଅଭିବୃଦ୍ଧିର ହାର ଯେତେ, ତା' ଠାରୁ ପ୍ରତିବର୍ଷ କମ୍ ଅମଳ କରାଗଲେ, ବଣ ଜଙ୍ଗଲ ଶେଷହେବାର ପ୍ରଶ୍ନ ଉଠୁନାହିଁ । ଜଙ୍ଗଲସମ୍ପଦ ଜାଳେଣିକାଠର ଚିରନ୍ତନ ଉତ୍ସ ହୋଇ ରହନ୍ତା ।

## ଜାଳେଣିକାଠର ଚାହିଦା–

ଓଡ଼ିଶା ଏକ ଗ୍ରାମବହୁଳ ରାଜ୍ୟ । ଏଠି ୮୮ ରୁ ୮୯ ଭାଗ ଲୋକ ଗାଁଗହଳିରେ ବସବାସ କରନ୍ତି । ଏକ ସମୀକ୍ଷାରୁ ଜଣାଯାଇଛି, ଗ୍ରାମାଞ୍ଚଳରେ ଯେତିକି ଶକ୍ତି ବା ଇନ୍ଧନ ଆବଶ୍ୟକ ହୋଇଥାଏ, ସେଥିରୁ ଶତକଡ଼ା ୬୪ ଭାଗ କେବଳ ରନ୍ଧନ କ୍ରିୟାରେ ଲାଗେ । କୃଷିକାମରେ ୨୨ ଭାଗ, ଗ୍ରାମ୍ୟ ଶିଳ୍ପରେ ୭ ଭାଗ, ଆଲୋକ ବ୍ୟବସ୍ଥାରେ ୪ ଭାଗ ଓ ଯାତାୟାତରେ ଶତକଡ଼ା ୩ ଭାଗ ବ୍ୟବହୃତ ହୋଇଥାଏ । ଏଥିରୁ ଜଣାପଡ଼େ ଗ୍ରାମାଞ୍ଚଳରେ କେବଳ ରୋଷେଇକରି ଖାଇବା ପାଇଁ ଦରକାର ହେଉଥିବା ଶକ୍ତିର ଆବଶ୍ୟକତା ଅନ୍ୟ ସମସ୍ତ ଆବଶ୍ୟକତାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ମୁଖ୍ୟତଃ ଜାଳେଣିକାଠରୁହିଁ ଏହି ଆବଶ୍ୟକତା ମେଣ୍ଟାଯାଇଥାଏ । ରାନ୍ଧିବା ବ୍ୟତୀତ ଅନ୍ୟ ଯେଉଁ କାମରେ ଜାଳେଣିକାଠର ଶକ୍ତିକୁ ଗାଁଗଣ୍ଡାରେ ବିନିଯୋଗ କରାଯାଇଥାଏ, ତାହା ହେଲା ଧାନ ଉଷେଇଁବା, ଘରକୁ ଉଷୁମକରିବା, ପାଣି ଗରମକରିବା, ନିଆଁପୋଇଁବା, ଶବଦାହ କରିବା ଏବଂ ଗୋଖାଦ୍ୟ ପ୍ରସ୍ତୁତ କରିବା ଇତ୍ୟାଦି । ଆଦିବାସୀ ଇଲାକାରେ କାଠର ବ୍ୟବହାର ପରିମାଣ ଅନ୍ୟାନ୍ୟ ଗ୍ରାମାଞ୍ଚଳ ତୁଳନାରେ ପ୍ରାୟ ୩ ଗୁଣା ଅଧିକ । କାରଣ ସେମାନଙ୍କ ଘରେ ଅଖଣ୍ଡ ନିଆଁ ଜଳୁଥାଏ; ଅର୍ଥାତ୍ ଚୁଲୀରୁ କେବେ ନିଆଁ ଲିଭେନାହିଁ ।

ହାରାହାରି ପାଞ୍ଚଜଣିଆ ଗୋଟିଏ ପରିବାର କେବଳ ରନ୍ଧନ କ୍ରିୟାପାଇଁ ଦିନକୁ ପ୍ରାୟ ୪ରୁ୫ କିଲୋଗ୍ରାମ୍ ଜାଳେଣିକାଠ ଆବଶ୍ୟକ କରିଥା'ନ୍ତି । ଅବଶ୍ୟ ଦେଖାଯାଇଛି, ଉପଲବ୍ଧିରେ ତାରତମ୍ୟ ହେତୁ ସହରାଞ୍ଚଳ ତୁଳନାରେ ଗ୍ରାମାଞ୍ଚଳରେ ଅପେକ୍ଷାକୃତ ଅଧିକ ଜାଳେଣିକାଠ ବ୍ୟବହୃତ ହୋଇଥାଏ । ଅଷ୍ଟମ ପଞ୍ଚବାର୍ଷିକ ଯୋଜନାରେ ଓଡ଼ିଶାରେ ଜନସଂଖ୍ୟା ଅଭିବୃଦ୍ଧିକୁ ବିଚାରକୁ ନେଇ ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ଜାଳେଣିକାଠର ଆବଶ୍ୟକତା ନିମ୍ନମତେ ଅଟକଳ କରାଯାଇଛି ।

| ଆର୍ଥିକ ବର୍ଷ | ବାର୍ଷିକ ଜାଳେଣିକାଠର ଆବଶ୍ୟକତା | | ମୋଟ ଆବଶ୍ୟକତା (ଲକ୍ଷ ମେଟ୍ରିକ୍‌ଟନ୍) |
|---|---|---|---|
| | ଗ୍ରାମାଞ୍ଚଳ | ସହରାଞ୍ଚଳ | |
| ୧୯୯୨-୯୩ | ୧୨୨.୮୯ | ୧୬.୫୭ | ୧୩୯.୪୬ |
| ୧୯୯୩-୯୪ | ୧୨୪.୭୦ | ୧୭.୪୬ | ୧୪୨.୧୬ |
| ୧୯୯୪-୯୫ | ୧୨୬.୫୪ | ୧୮.୪୦ | ୧୪୪.୯୦ |
| ୧୯୯୫-୯୬ | ୧୨୮.୩୯ | ୧୯.୩୮ | ୧୪୭.୭୭ |
| ୧୯୯୬-୯୭ | ୧୩୦.୨୮ | ୨୦.୪୧ | ୧୫୦.୬୯ |

ସଂପ୍ରତି ୧୫୦ ଲକ୍ଷ ମେଟ୍ରିକ୍‌ଟନ୍ ଜାଳକାଠ ଦରକାର ହେଉଥିବା ବେଳେ, ୨୦୦୦ ମସିହା ବେଳକୁ ଜାଳେଣିକାଠର ଆବଶ୍ୟକତା ଆହୁରି ଅଧିକ ବୃଦ୍ଧିପାଇବ । କୋଇଲା ଓ ପେଟ୍ରୋଲ୍ ଆଦି ପାରମ୍ପରିକ ଶକ୍ତିଉତ୍ସଗୁଡ଼ିକ ଦିନକୁଦିନ ବିପଜ୍ଜନକ ଭାବେ ହ୍ରାସପାଉଅଛି । କୋଟି କୋଟି ବର୍ଷତଳେ ଏହି ଜୀବାଶ୍ମ ଇନ୍ଧନଗୁଡ଼ିକ ତିଆରିହୋଇଥିଲା । ଏହାର ଭଣ୍ଡାର ସରିଆସିଲେ ତାକୁ ଭରଣା କରିବାର ବାଟନାହିଁ । ୧୯୫୩-୫୪ ମସିହାରେ ଏଥିରୁ ଶତକଡ଼ା ୬୭ ଭାଗ ଶକ୍ତି ମିଳୁଥିବା ବେଳେ, ୨୦୦୦ ମସିହା ବେଳକୁ ଦେଶର ଶକ୍ତି ଚାହିଦାର ମାତ୍ର ଶତକଡ଼ା ୨୦ ଭାଗ ଏଥିରୁ ପୂରଣ ହୋଇପାରିବ । ଏବେଠାରୁ ବୈଜ୍ଞାନିକମାନେ ଭବିଷ୍ୟବାଣୀ ଶୁଣେଇଲେଣି ଭୂପୃଷ୍ଠରେ ଗଚ୍ଛିତ ପେଟ୍ରୋଲ୍, କୋଇଲା ଓ ପ୍ରାକୃତିକ ବାଷ୍ପ ଆଉ ମାତ୍ର ୩୦ରୁ ୧୦୦ ବର୍ଷ ଭିତରେ ସରିଯିବ । ତେଣୁ ଆଗାମୀ ଦିନମାନଙ୍କରେ ମଧ୍ୟ ଜାଳେଣିକାଠ ଗାଁଗହଳିରେ ଶକ୍ତିର ମୁଖ୍ୟ ଉତ୍ସହୋଇରହିବ ।

□□□

# ଜାଳେଣି ସମସ୍ୟା

ବିଶେଷଜ୍ଞମାନଙ୍କ ମତରେ ଏକବିଂଶ ଶତାବ୍ଦୀ ବେଳକୁ ଏପରି ସମୟ ଆସିବ, ଯେତେବେଳେ ଲୋକମାନଙ୍କ ପାଖରେ ଖାଦ୍ୟସାମଗ୍ରୀ ଯଥେଷ୍ଟ ଥିବ ଅଥଚ ତାକୁ ରାନ୍ଧିକରି ବା ସିଦ୍ଧକରି ଖାଇବାପାଇଁ ଇନ୍ଧନ ନଥିବ, କେବଳ ଖାଦ୍ୟପଦାର୍ଥ ରାନ୍ଧିବାପାଇଁ ଯେତିକି ଇନ୍ଧନ ଦରକାର ହୁଏ, ତାହା ଦେଶରେ ଖର୍ଚ୍ଚହେଉଥିବା ମୋଟଶକ୍ତିର ଶତକଡ଼ା ୫୦ ଭାଗ ।

ଓଡ଼ିଶା ଏକ ଗ୍ରାମବହୁଳ ରାଜ୍ୟ । ଏଠି ୮୮ ରୁ ୮୯ ଭାଗ ଲୋକ ଗାଁଗହଳିରେହିଁ ବାସ କରନ୍ତି । ଏକ ସମୀକ୍ଷାରୁ ଜଣାଯାଇଛି, ଗ୍ରାମାଞ୍ଚଳରେ ଯେତିକି ଶକ୍ତି ବା ଇନ୍ଧନ ଆବଶ୍ୟକ ହୋଇଥାଏ, ସେଥିରୁ ଶତକଡ଼ା ୬୪ ଭାଗ କେବଳ ଇନ୍ଧନକ୍ରିୟାରେ ଲାଗେ । କୃଷି କାମରେ ୨୨ ଭାଗ, ଗ୍ରାମ୍ୟ ଶିଳ୍ପରେ ୭ ଭାଗ, ଆଲୋକ ବ୍ୟବସ୍ଥାରେ ୪ ଭାଗ ଓ ଯାତାୟାତରେ ଶତକଡ଼ା ୩ ଭାଗ ବ୍ୟବହୃତ ହୋଇଥାଏ । ଏଥିରୁ ଜଣାପଡ଼େ ଗ୍ରାମାଞ୍ଚଳରେ କେବଳ ରୋଷେଇକରି ଖାଇବାପାଇଁ ଦରକାରପଡୁଥିବା ଶକ୍ତିର ଆବଶ୍ୟକତା ଅନ୍ୟ ସମସ୍ତ ଆବଶ୍ୟକତାଠାରୁ ଅଧିକ ।

ଗାଁର ଲୋକମାନେ ରୋଷେଇକରିବାପାଇଁ ମୁଖ୍ୟତଃ ଜାଳେଣିକାଠ ଉପରେହିଁ ନିର୍ଭର କରନ୍ତି । ପେଟ୍ରୋଲିୟମ୍, ଗ୍ୟାସ୍, ବିଦ୍ୟୁତ୍‌ଶକ୍ତି ବା କିରାସିନି ଜାଳି ରାନ୍ଧିବା ଭଳି ଅଧିକ ସ୍ୱଚ୍ଛଳତା ସେମାନଙ୍କରନାହିଁ । କାଠ ବ୍ୟତୀତ ଆଖୁଛେଦା, ଧାନ ଗହମ ଆଦି କୃଷିଜାତ ଦ୍ରବ୍ୟର ନଡ଼ା ଓ ଚୋପାକୁ ମଧ୍ୟ ଜାଳେଣିରୂପେ ବ୍ୟବହାର କରାଯାଏ । ଏ ସବୁର ଅଭାବରେ ଲୋକେ ଗୋବରକୁ ଘଷିକରି ଜାଳନ୍ତି ।

ଗଛ, ଲତା ତଥା ଉଦ୍ଭିଦଜଗତ ସୌରଶକ୍ତିକୁ ଆହରଣ କରି ବାୟୋମାସ୍ (biomass) ଆକାରରେ ଗଚ୍ଛିତ କରି ରଖନ୍ତି । ଏହାହିଁ ଅଣପାରମ୍ପରିକ ଶକ୍ତିର ମୁଖ୍ୟ ଆଧାର । ଗଛର ଗଣ୍ଡି ଓ ଡାଳ ଜାଳେଣିପାଇଁ ବେଶ୍ ଉପଯୋଗୀ । କିଂତୁ କାଠର ଅଭାବ ଘଟିଲେ, ଲୋକମାନେ ପତ୍ରକୁ ମଧ୍ୟ ଜାଳେଣିରୂପେ ବ୍ୟବହାରକରନ୍ତି ।

ଗ୍ରାମାଞ୍ଚଳରେ ଅଣପାରମ୍ପରିକ ଶକ୍ତିର ବହୁଳ ବ୍ୟବହାର ଲକ୍ଷ୍ୟ କରାଯାଏ । ଏହି ଶକ୍ତି ପୁନଃ ବ୍ୟବହାରକ୍ଷମ । ଉଦାହରଣସ୍ୱରୂପ, ଉପଯୁକ୍ତ ଭାବେ ବିନିଯୋଗକଲେ, ବଣ ଜଙ୍ଗଲ ଜାଳେଣିକାଠର ଚିରନ୍ତନ ଉତ୍ସହୋଇରହିବ । ଅର୍ଥାତ୍ ଗୋଟିଏ ଜଙ୍ଗଲର ବାର୍ଷିକ ଅଭିବୃଦ୍ଧି ହାର ଯେତେ, ସେତିକି ବା ତା'ଠୁ କମ୍ ଅମଳ କରାଗଲେ, ଜଙ୍ଗଲ ଶେଷହେବାର ପ୍ରଶ୍ନ ଉଠିବା ନାହିଁ । କିଂତୁ ବାସ୍ତବ କ୍ଷେତ୍ରରେ ଏହା ସଂଭବ ହେଉନାହିଁ । ଜନସଂଖ୍ୟାର ଦ୍ରୁତ ଅଭିବୃଦ୍ଧି ସହିତ ତାଳଦେଇ ଦେଶର ଜାଳେଣି ଆବଶ୍ୟକତା ବୃଦ୍ଧିପାଇବାରେ ଲାଗିଛି । ଆବଶ୍ୟକତା (demand) ଓ ଉପଲବ୍ଧି (supply) ଭିତରେ ଥିବା ବ୍ୟବଧାନ ବଢ଼ିବାରେଲାଗିଛି । ଏହାହିଁ କ୍ରମାଗତ ଭାବରେ ଘଟୁଥିବା ଜଙ୍ଗଲ ଅବକ୍ଷୟର ଏକ ମୁଖ୍ୟ କାରଣ ।

ଗ୍ରାମ ତଥା ସହରାଞ୍ଚଳର ଲୋକମାନେ ପାରମ୍ପରିକ ଏବଂ ଅଣପାରମ୍ପରିକ ଶକ୍ତିର ଉପରୁ କେତେ କେତେ ଭାଗ ବ୍ୟବହାର କରିଥା'ନ୍ତି ତାହାର ଏକ ସାରଣୀ ଶକ୍ତିନୀତି ସଂପର୍କରେ ଗଠିତ କାର୍ଯ୍ୟକାରୀ ଗୋଷ୍ଠୀ ୧୯୭୯ ମସିହାରେ ପ୍ରସ୍ତୁତ କରିଥିଲେ । ଉକ୍ତ ସାରଣୀକୁ ସମୀକ୍ଷା କଲେ ଜଣାଯାଏ, ଜାଳେଣିକାଠ, ଗୋବରଘଷି ଓ ଅନ୍ୟାନ୍ୟ ଅଣପାରମ୍ପରିକ ଶକ୍ତିରୁ ଗ୍ରାମାଞ୍ଚଳର ଶତକଡ଼ା ୮୦ ଭାଗ ଏବଂ ସହରାଞ୍ଚଳର ଶତକଡ଼ା ୫୧ ଭାଗ ଜାଳେଣି ଚାହିଦା ମେଣ୍ଟିଥାଏ । ଯୋଜନା କମିଶନ୍ ମଧ୍ୟ ମତ ଦେଉଛନ୍ତି ସହରାଞ୍ଚଳରେ ପ୍ରତି ଦଶଟି ପରିବାରରୁ ପ୍ରାୟ ସାତଟି ପରିବାର ଅଣପାରମ୍ପରିକ ଶକ୍ତି ଉପରେ ନିର୍ଭରକରିଥା'ନ୍ତି ।

କୋଇଲା ଓ ପେଟ୍ରୋଲ୍ ଆଦି ପାରମ୍ପରିକ ବା ବାଣିଜ୍ୟିକ ଶକ୍ତିଉତ୍ସଗୁଡ଼ିକ ଦିନକୁଦିନ ବିପଜ୍ଜନକ ଭାବେ ହ୍ରାସପାଉଛି । ୧୯୫୩-୫୪ ମସିହାରେ ଏଥିରୁ ଶତକଡ଼ା ୬୭ ଭାଗ ଶକ୍ତି ମିଳୁଥିବା ବେଳେ, ବର୍ତ୍ତମାନ ମାତ୍ର ୩୪ ଭାଗ ମିଳୁଛି । ଏକବିଂଶ ଶତାବ୍ଦୀରେ ଏହି ସୂତ୍ରରୁ ଦେଶର ମାତ୍ର ୨୫ ଭାଗ ଶକ୍ତି ଆବଶ୍ୟକତା ପୂରଣହୋଇପାରିବ । ଏବେଠାରୁ ବୈଜ୍ଞାନିକମାନେ ଭବିଷ୍ୟବାଣୀ ଶୁଣେଇଲେଣି, ଭୂପୃଷ୍ଠରେ ଗଚ୍ଛିତ କୋଇଲା ଓ ପେଟ୍ରୋଲ୍ ଏକବିଂଶ ଶତାବ୍ଦୀର ପ୍ରଥମ ପର୍ଯ୍ୟାୟରେ ସଂପୂର୍ଣ୍ଣ ଶେଷହୋଇଯିବ । ତେଣୁ ଆଗାମୀଦିନମାନଙ୍କରେ ମଧ୍ୟ ଜାଳେଣିକାଠ ଗାଁଗହଳିରେ ଶକ୍ତିର ମୁଖ୍ୟ ଉତ୍ସହୋଇରହିବ ।

ପାଞ୍ଚଜଣିଆ ଗୋଟିଏ ପରିବାର ଦିନକୁ ହାରାହାରି ୪ ରୁ ୫ କିଲୋଗ୍ରାମ୍ ଜାଳେଣିକାଠ ଆବଶ୍ୟକ କରନ୍ତି । ଏହି ହିସାବ ଅନୁଯାୟୀ ଆମ ରାଜ୍ୟର ଲୋକମାନଙ୍କର ଜାଳକାଠ ଆବଶ୍ୟକତା ୨୦୦୦ ମସିହା ବେଳକୁ ବୃଦ୍ଧିପାଇ ପ୍ରାୟ ୧ କୋଟି ଘନଫୁଟରେ ପହଞ୍ଚିବ । ଅଥଚ ମାତ୍ର ୧୦ରୁ ୧୫ ଲକ୍ଷ ଘନଫୁଟ ଜାଳେଣିକାଠ ସରକାରୀ ବଣଜଙ୍ଗଲରୁ ନିୟମ ମୁତାବକ ମିଳିଥାଏ । ବଳକା ଚାହିଦା କୃଷିଜାତ ଦ୍ରବ୍ୟର ଅବଶିଷ୍ଟାଂଶ, ଆଖୁଛେଦା, ଗୋବରଘଷି ଏବଂ ଲୁଚାଚୋରାରେ ବଣ ଜଙ୍ଗଲରୁ କାଠ ସଂଗ୍ରହ କରି ମେଣ୍ଟାଯାଇଥାଏ । ଜାଳେଣିକାଠ ଚାହିଦାର ଶତକଡ଼ା ୬୦ ରୁ ୮୦ ଭାଗ ଯେପରି ଭାବେ ଚୋରାରେ ବଣ ଜଙ୍ଗଲରୁ ପ୍ରତିବର୍ଷ ଆସୁଛି, ତାହାହିଁ ଜଙ୍ଗଲସମ୍ପଦ ଧ୍ୱଂସହୋଇଯିବାର ଅନ୍ୟତମ କାରଣ । ଦ୍ୱିତୀୟତଃ, ଆନ୍ତର୍ଜାତିକ ଖାଦ୍ୟ ଓ କୃଷି ସଂସ୍ଥାର ଏକ ସମୀକ୍ଷାରୁ ଜଣାଯାଇଛି, ଗୋବରକୁ ଘଷିକରି ଜାଳିବା ପରିବର୍ତ୍ତେ ଖତସାରରୂପେ କ୍ଷେତରେ ବ୍ୟବହାର କଲେ ପ୍ରତି ୨୦ କି.ଗ୍ରା. ଗୋବରଦ୍ୱାରା ହେକ୍ଟରପିଛା ଏକ କିଲୋଗ୍ରାମ୍ ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧିପାଇବ । ଏହି ଅନୁପାତରେ ରାଜ୍ୟର ଖାଦ୍ୟ ଉତ୍ପାଦନ ପରିମାଣ ଯଥେଷ୍ଟ ବଢ଼ିଯିବ । ଗାଁଗହଳିରେ ଜାଳକାଠ ସଂଗ୍ରହ କରିବା ଦାୟିତ୍ୱ ପ୍ରଧାନତଃ ସ୍ତ୍ରୀଲୋକ ବା ପିଲାମାନଙ୍କ ଉପରେ ପଡ଼ିଥାଏ । ଗୋଟିଏ ଦୁର୍ଭିକ୍ଷ ପ୍ରପୀଡ଼ିତ ଗାଁରେ ଏହି ଜାଳେଣି ସଂଗ୍ରହ ଉଦ୍ଦେଶ୍ୟରେ ପ୍ରତି ପରିବାରର ସ୍ତ୍ରୀ ବା ପିଲାମାନଙ୍କୁ ଦୈନିକ ହାରାହାରି ୬ରୁ ୭ କିଲୋମିଟର ଚାଲିବାକୁ ପଡ଼େ । ତା'ଛଡ଼ା ପ୍ରତିଟି ପରିବାର ଏଥିପାଇଁ ବାର୍ଷିକ ୨୦୦ରୁ ୩୦୦ ଶ୍ରମଦିବସ ମଧ୍ୟ ନଷ୍ଟ କରିଥାଏ ।

ଷଷ୍ଠ ପଞ୍ଚବାର୍ଷିକ ଯୋଜନାରେ ପ୍ରଥମଥରପାଇଁ ଦେଶର କ୍ରମବର୍ଦ୍ଧମାନ ଶକ୍ତି ଚାହିଦାକୁ ସ୍ୱୀକୃତି ଦିଆଗଲା । ଏଥିପାଇଁ ଉଜୁଡ଼ା ଜଙ୍ଗଲର ପୁନରୁଦ୍ଧାର ଓ ପୁନଃ ବନୀକରଣ ସହିତ

ପତିତ ଜମିରେ ମୁଖ୍ୟତଃ ଜାଳେଣିରୂପେ ବ୍ୟବହୃତ ହେଉଥିବା ଗଛ ଲଗାଇବା ଉପରେ ପ୍ରାଧାନ୍ୟ ଦିଆଗଲା । ଶକ୍ତି ସଂପର୍କିତ ବିକଳ୍ପ ଦଲିଲ୍ 'ଶକ୍ତି ୨୦୦୧'ରେ ଯେଉଁ କେତେକ ନୂତନ ପରିକଳ୍ପନା କରାଯାଇଛି, ସାମାଜିକ ବନୀକରଣ ତା'ଭିତରେ ଅନ୍ୟତମ । ସପ୍ତମ ଯୋଜନା କାଳରେ ଅନୁସୃତ ସାମାଜିକ ବନୀକରଣ କାର୍ଯ୍ୟକ୍ରମରେ ମୁଖ୍ୟତଃ ଦୁଇଟି ବିଭାଗ ରହିଥିଲା । ପ୍ରଥମଟି ସର୍ବସାଧାରଣ ବା ଗୋଷ୍ଠୀ ହିତକାରୀ କାର୍ଯ୍ୟକ୍ରମ । ଏଥିରେ ସ୍ଥାନୀୟ ପରିବେଶକୁ ସୁହାଇଲାଭଳି ଜାଳେଣିକାଠ ଗଛ ସର୍ବସାଧାରଣ ଜମିରେ, ସାଧାରଣ ପତିତ ଜମିରେ, ସରକାରୀ ଅନାବାଦୀ ଜମିରେ, ସମୁଦ୍ର କୂଳେ କୂଳେ, ଉଜୁଡ଼ା ଜଙ୍ଗଲରେ ଅଥବା ରାସ୍ତାକଡ଼, କେନାଲବନ୍ଧ ଓ ରେଳଲାଇନ୍ କଡ଼ରେ ଲଗାଯାଇପାରିବ ।

ଦ୍ୱିତୀୟଟି ବ୍ୟକ୍ତିଗତ ହିତକାରୀ କାର୍ଯ୍ୟକ୍ରମ । ଏଥିରେ ବ୍ୟକ୍ତିଗତ ଜମିରେ, ଘର ବାଡ଼ିରେ ଓ ବିଲ ହିଡ଼ରେ ଗଛଲଗାଇବା ଉପରେ ଗୁରୁତ୍ୱ ଆରୋପ କରାଯାଉଛି । ନର୍ସରୀରେ ବଡ଼ ବଡ଼ ଚାରା ପ୍ରସ୍ତୁତକରି ଚାଷୀମାନଙ୍କୁ ମାଗଣାରେ ଯୋଗାଇଦିଆଯାଉଛି । ଶୀଘ୍ର ବଢ଼ିପାରୁଥିବା ଗଛଟିଏ ଲଗାଇ ସାର ଇତ୍ୟାଦି ଦେଇ ଉପଯୁକ୍ତ ଯତ୍ନ ନେଲେ ପାଞ୍ଚବର୍ଷ ପରେ ସେଥିରୁ ଅତିକମ୍‌ରେ ଏକ କୁଇଣ୍ଟାଲ୍ ଜାଳକାଠ ମିଳିବ । ଯଦି ଗୋଟିଏ ଚାଷୀ ନିଜ କ୍ଷେତବାଡ଼ିରେ ଏହି ରକମର ୮୦ଟି ଗଛ ଲଗେଇଦେଇପାରେ; ତେବେ ପାଞ୍ଚବର୍ଷ ପରେ ସେ ବର୍ଷକୁ ୨୦ଟି ଗଛ କାଟି ଅମଳକରିପାରିବ ଓ ସେଥିରୁ ତା'ର ବାର୍ଷିକ ୧୮ରୁ ୨୦ କୁଇଣ୍ଟାଲ୍ ଜାଳକାଠ ଆବଶ୍ୟକତା ଭରଣକରିପାରିବ । ତାକୁ ଆଉ ସରକାରୀ ବଣ ଉପରେ ନିର୍ଭରକରିବାକୁ ପଡ଼ିବନାହିଁ । ଶକ୍ତି ସଂକଟ ପରିପ୍ରେକ୍ଷୀରେ ଯେବେ ଗ୍ରାମୀଣ ଇନ୍ଧନ ଚାହିଦାର ଶତକଡ଼ା ୮୦ ଭାଗ ଜାଳେଣିକାଠରୁହିଁ ମିଳିପାରୁଛି ସେତେବେଳେ ସାମାଜିକ ବନୀକରଣ କାର୍ଯ୍ୟକ୍ରମ ଅଣପାରମ୍ପରିକ ଶକ୍ତି ଉତ୍ସର ଏକମାତ୍ର ବିକଳ୍ପ ।



# କ୍ଷେତ ଚାରିପଟେ ଜଙ୍ଗଲ ଓ ଶକ୍ତି ସଙ୍କଟର ସମାଧାନ

ଜୀବନଧାରଣପାଇଁ ଖାଦ୍ୟ ଯେପରି ଅପରିହାର୍ଯ୍ୟ, ଖାଦ୍ୟକୁ ରନ୍ଧନକରିବାପାଇଁ ଜାଳେଣି ମଧ୍ୟ ସେହିପରି ଅପରିହାର୍ଯ୍ୟ । କିନ୍ତୁ ଦୁଃଖରକଥା ଖାଦ୍ୟଶସ୍ୟ ଉତ୍ପାଦନପାଇଁ ଦିନକୁଦିନ ଯେତିକି ଅଧିକ ଚେଷ୍ଟା ଚାଲିଛି, ଜାଳେଣିକାଠ ଉତ୍ପାଦନ ଦିଗଟି ସେତିକି ଅବହେଳିତ ହୋଇପଡୁଛି । ସହର ବଜାର କଥା ଦୂରେଥାଉ, ବର୍ତ୍ତମାନ ଗାଁଗହଳରେ ବି ଜାଳେଣିକାଠ ଖଣ୍ଡେ ପାଇବା ବଡ଼ କଷ୍ଟକର ହୋଇପଡ଼ିଲାଣି । ଜନବସତିଠାରୁ ଜଙ୍ଗଲର ଦୂରତ୍ୱ କ୍ରମଶଃ ଘୁଞ୍ଚି ଘୁଞ୍ଚି ଯାଉଛି । ଦଶ ପନ୍ଦରବର୍ଷ ତଳେ ଯେଉଁମାନେ ନିଜ ବାଡ଼ିତଳୁ ଜାଳକାଠ ଗୋଟେଇଥାଣି ପାରୁଥିଲେ ଆଜି ସେଥିପାଇଁ ସେମାନଙ୍କୁ ଅନ୍ୟୂନ ଚାରି ପାଞ୍ଚ ମାଇଲ ଚାଲିବାକୁପଡୁଛି । ଗୋଟିଏପଟେ ଆମ ଦେଶର ଜନସଂଖ୍ୟା ଦ୍ରୁତଗତିରେ ବଢ଼ିଚାଲିଛି, ଅନ୍ୟପଟରେ ଏହି ବର୍ଦ୍ଧିତ ଜନସଂଖ୍ୟାକୁ ଚାଷଜମି, ବାସଗୃହ ଯୋଗାଇବାପାଇଁ ଜଙ୍ଗଲକଟା ଚାଲିଛି । ଫଳତଃ, ଲୋକସଂଖ୍ୟା ଅନୁପାତରେ ଜଙ୍ଗଲର ଆୟତନ ଦିନକୁଦିନ କମିଯିବାରେ ଲାଗିଛି । ଗାଁର ଲୋକମାନଙ୍କୁ ବର୍ଦ୍ଧିତ ପେଟ୍ରୋଲ୍ ଓ ଡିଜେଲ୍ ଦର ଯେତେ ନବାଧୁଛି; ଜାଳେଣି କାଠର ଦର ଓ ଅଭାବ ତା'ଠୁ ଅଧିକ ବାଧୁଛି । ଜାଳେଣିକାଠ ସେମାନଙ୍କପାଇଁ ଏକ ମୌଳିକ ଆବଶ୍ୟକତା । ଆଗାମୀ ଶତାବ୍ଦୀର ଶେଷଆଡ଼କୁ ଜାଳେଣିକାଠର ଅଭାବ ଏକ ଗୁରୁତର ସମସ୍ୟା ସୃଷ୍ଟିକରିବ । ସେତେବେଳକୁ ଖାଦ୍ୟଶସ୍ୟ ଯଥେଷ୍ଟ ଥିବ ଅଥଚ ତାକୁ ରାନ୍ଧିକରି ଖାଇବାପାଇଁ ଇନ୍ଧନ ବା ଜାଳେଣିନଥିବ ।

ସହରାଞ୍ଚଳମାନଙ୍କରେ ଜାଳେଣିକାଠରୂପେ କାଠ ବ୍ୟତୀତ କଲ୍‌ଗ୍ୟାସ୍, କୋଇଲା ଓ ଇଲେକ୍‌ଟ୍ରିସିଟିର ମଧ୍ୟ ବହୁଳ ବ୍ୟବହାର ଦେଖାଯାଏ । କିନ୍ତୁ ଗ୍ରାମାଞ୍ଚଳରେ ଶତକଡ଼ା ଅଶୀଭାଗ ଜାଳେଣିରୂପେ କାଠହିଁ ବ୍ୟବହୃତ ହୋଇଥାଏ । ଏହା ବ୍ୟତୀତ ଗୋବରଘଷି ଓ ଶୁଖିଲା ତାଳପତ୍ର ମଧ୍ୟ ଜାଳେଣିର କାମ ଦେଇଥାଏ । ପ୍ରତି ପରିବାର ପିଛା ଦୈନିକ ଅତି କମ୍‌ରେ ହାରାହାରି ପାଞ୍ଚ କିଲୋଗ୍ରାମ୍ ଜାଳକାଠ ଦରକାର ଓ ଏହି ଅନୁପାତରେ ଗୋଟିଏ ପରିବାର ବର୍ଷକୁ ୧.୧୨୫ ଟନ୍ ଜାଳେଣି ଖର୍ଚ୍ଚ କରିଥାଏ । ସମ୍ପ୍ରତି ଯେଉଁ ଜଙ୍ଗଲ ଉନ୍ନୟନ ଯୋଜନାମାନ ହାତକୁ ନିଆଯାଇଛି; ତାହା ଫଳରେ ଆସନ୍ତା ବର୍ଷମାନଙ୍କରେ ନିଶ୍ଚୟ ଜାଳକାଠ ଉତ୍ପାଦନ କିଛି ଅଧିକ ହେବ ଏଥିରେ ସନ୍ଦେହନାହିଁ । କିନ୍ତୁ ଯାହାହେଲେ ବି ଖାଦ୍ୟ ଓ କୃଷି ମନ୍ତ୍ରଣାଳୟର ଏକ ହିସାବ ଅନୁସାରେ ୧୯୮୦-୮୧ ବେଳକୁ ଆମ ଦେଶରେ ଛଅ ସାତ କୋଟି ଟନ୍‌ରୁ ଅଧିକ ଜାଳକାଠ ଅଭାବ ପଡ଼ିବାର ସମ୍ଭାବନା ରହିଛି ।

ଜାଳେଣିକାଠର ଅଭାବରେ ଗାଁଗହଳିର ଲୋକମାନେ ଗୋବରକୁ ଖରାରେ ଶୁଖେଇ ଘଷିକରି ଜାଳିଥା'ନ୍ତି । ଏହି ଗୋବର ଯଦି ସେମାନେ ଜାଳୁନଥା'ନ୍ତେ, ତାହାହେଲେ ବିଲବାଡ଼ିରେ ତାହା ଖତସାରରୂପେ ବ୍ୟବହାର ହୋଇପାରନ୍ତା । ୧୯୭୪-୭୫ର ଏକ ହିସାବରୁ ଜଣାଯାଇଛି ଯେ, ସେ ବର୍ଷ ୨.୨୫ କୋଟି ଟନ୍ ଗୋବର ଘଷିକରି ଜଳାଯାଇଛି । ଏହି ହିସାବରେ ୧୯୮୦-୮୧ ବେଳକୁ ୨.୬ କୋଟି ଟନ୍ ଗୋବର ଜାଳେଣିରୂପେ ବ୍ୟବହୃତ ହେବ । ଏକ ଟନ୍ ଗୋବର ଖତରେ ପ୍ରାୟ ୫୦ କିଲୋଗ୍ରାମ୍ ଅଧିକ ଖାଦ୍ୟଶସ୍ୟ ଉତ୍ପାଦନ କରାଇବା ଶକ୍ତି ନିହିତ ଅଛି । ଅନୁମାନ କରନ୍ତୁ ୨.୬ କୋଟି ଟନ୍ ଗୋବର ଯଦି ଜାଳେଣିରୂପେ ବ୍ୟବହୃତନହୋଇ କ୍ଷେତରେ ସାରରୂପେ ବିନିଯୋଗ କରାଯାଇପାରିବ, ତା'ହାଲେ ଆମ ଦେଶର ଫସଲ ଉତ୍ପାଦନ କେତେ ଅଧିକ ବଢ଼ିଯିବ । ଏ ତ ଗଲା କେବଳ ରନ୍ଧନକ୍ରିୟାପାଇଁ ଆବଶ୍ୟକୀୟ ଜାଳକାଠର ପରିମାଣ । ଏତଦ୍ ବ୍ୟତୀତ ଶବଦାହ କରିବାପାଇଁ ମଧ୍ୟ ଆମ ଦେଶରେ ବାର୍ଷିକ ଅଧକୋଟି ଟନ୍‌ରୁ କୋଟିଏ ଟନ୍ ପର୍ଯ୍ୟନ୍ତ ଜାଳକାଠ ଦରକାର ହୋଇଥାଏ ।

ଜାଳକାଠ ସମସ୍ୟା ଏକ ସାମାଜିକ ସମସ୍ୟା । ସହର ବଜାରରେ କାଠ କୁଇଣ୍ଟାଲ୍ ପଚିଶ ଟଙ୍କାରୁ ତିରିଶ ଟଙ୍କାରେ ବିକ୍ରି ହେଉଛି । ଗାଁଗହଳିରେ ଯେଉଁ କାଠ ଗୋଟାକ ଟଙ୍କାକରେ ମିଳୁଛି, ସେଥିରେ ଗୋଟିଏ ପାଞ୍ଚଜଣିଆ ପରିବାରର ଓଳିକ ରୋଷେଇପାଇଁ ନିଅଣ୍ଟ । ବର୍ତ୍ତମାନ ସରକାରୀ ସ୍ତରରେ ଯେଉଁସବୁ ବୃକ୍ଷରୋପଣ ହେଉଛି; ସେଥିରେ ସାଗୁଆନ୍, ଶିଶୁ, ପିଆଶାଳ ପ୍ରଭୃତି ମୂଲ୍ୟବାନ୍ ଗଛ ସାଙ୍ଗକୁ ଜାଳେଣିପାଇଁ ଇଉକାଲିପଟସ୍, ବବୁଲ୍, ଝାଉଁ, ଚାକୁଣ୍ଡି, ଆକାସିଆ ପ୍ରଭୃତି ଗଛକୁ ମଧ୍ୟ ପ୍ରାଧାନ୍ୟ ଦିଆଯାଉଛି । କିନ୍ତୁ ଏହି ସମସ୍ୟାର ସମାଧାନପାଇଁ କେବଳ ସରକାରୀ ସ୍ତରରେ ପ୍ରଚେଷ୍ଟା ଯଥେଷ୍ଟନୁହେଁ । ପ୍ରତ୍ୟେକ ଚାଷୀ, ଗ୍ରାମବାସୀ ତା'ର ନିଜ କ୍ଷେତ ତଥା ବାଡ଼ିବଗିଚା ଚାରିପଟେ ଯଦି ଜଙ୍ଗଲ ସୃଷ୍ଟି କରିପାରିବ; ତା'ହାଲେ, ତା'ନିଜର ଜାଳେଣିକାଠ ଆବଶ୍ୟକତା ସେ ମେଣ୍ଟେଇପାରିବ ।

କ୍ଷେତ ଚାରିପଟେ ଲଗେଇବାପାଇଁ ବବୁଲ୍ ଏକ ଉତ୍ତମ ଗଛ । ଏହି ଗଛ ଅଳ୍ପ ଛାଇ ଦେଉଥିବାରୁ ଓ ଏଥିରୁ ଝଡ଼ିପଡୁଥିବା ପତ୍ର ଜମିର ଉର୍ବରତା ବଢ଼ାଉଥିବାରୁ ଶସ୍ୟକ୍ଷେତ୍ରର ହିଡ଼ମାନଙ୍କରେ ଏହି ଗଛ ଲଗାଇଲେ ବର୍ତ୍ତମାନ ନଷ୍ଟହେଉଥିବା ଜାଗାର ଉପଯୁକ୍ତ ବିନିଯୋଗ ହୋଇପାରିବ । ବାରବର୍ଷ ପରେ ଗୋଟିଏ ବବୁଲ୍ ଗଛରୁ ପ୍ରାୟ ଏକ କୁଇଣ୍ଟାଲ୍‌ରୁ ଅଧିକ କାଠ ବାହାରିଥାଏ । କୃଷି ଉପକରଣପାଇଁ ଏହାର କାଠ ଖୁବ୍ ଉପଯୋଗୀ । ଏହି ଗଛ କଣ୍ଟାଯୁକ୍ତ ହୋଇଥିବାରୁ ଡାଳଗୁଡ଼ିକ ବାଡ଼ିବଗିଚା ବୁଜିବା କାମରେ ଓ ପତ୍ର ଏବଂ ଛୁଇଁଗୁଡ଼ିକ ଗୋଖାଦ୍ୟ ରୂପେ ବ୍ୟବହୃତ ହୋଇଥାଏ । କ୍ଷେତ ଚାରିପଟେ ଲଗେଇବାପାଇଁ ଅନ୍ୟ ଏକ ଉପଯୋଗୀ ଗଛ ହେଉଛି ଇଉକାଲିପଟସ୍ । ଜାଳକାଠପାଇଁ ଏହା ଖୁବ୍ ଉପଯୋଗୀ । ବେଶୀ ଗହଳିଆ ପତ୍ର ବି ଡାଳନଥିବାରୁ ଏ ଗଛର ଛାଇ ସକାଶେ ତଳେ ଶସ୍ୟହାନି ହେବାର ଆଶଙ୍କାନଥାଏ । ପ୍ରତି ଚାଷୀପରିବାର ଯଦି ତାଙ୍କ ହିଡ଼ରେ ପଚାଶଟି ଏହି ଗଛରୁ ଲଗାନ୍ତି—ଦଶବର୍ଷ ପରେ ଏହି ଗଛ ବଢୁଥିବାରୁ ପ୍ରତିବର୍ଷ ସେ ପାଞ୍ଚଟି କରି ଗଛ କାଟିପାରିବ ଏବଂ ପ୍ରତି ଗଛ ପିଛା ପ୍ରାୟ ଅଧ

ଘନମିଟର ଜାଳକାଠ ମିଳିଲେ ପାଞ୍ଚଟି ଗଛରୁ ତା'ର ବାର୍ଷିକ ଜାଳକାଠ ଆବଶ୍ୟକତା ପୂରଣ ହୋଇପାରିବ ।

ଓଡ଼ିଶାର ଗଞ୍ଜାମ ଓ ପୁରୀ ଜିଲ୍ଲାର ଲୋକେ ନିଜନିଜର ଜମିରେ ଝାଉଁ ଗଛ ଲଗାଇ ବେଶ୍ ଲାଭବାନ୍ ହେଉଛନ୍ତି । ଏହା ଏକ ଉତ୍କୃଷ୍ଟ ଜାଳେଣିକାଠ । ଏହାର ଡାଳଗୁଡ଼ିକ ସିଧା ନ ବଢ଼ି ତଳଆଡ଼କୁ ନୁଆଁଣିଆ ହୋଇ ବଢ଼ିଥାଆନ୍ତି ଓ ପତ୍ର ମଧ୍ୟ ଗହଳିଆ ନୁହେଁ । ସେଥିପାଇଁ ଏ ଗଛଗୁଡ଼ିକ ଧାନବିଲର ହିଡ଼ମାନଙ୍କରେ ଲଗାଇଲେ, ଧାନ ଗଛର କିଛି କ୍ଷତିହେବନାହିଁ ଏବଂ ଦଶବର୍ଷ ଭିତରେ ପ୍ରତି ଗଛରୁ ପ୍ରାୟ ପଚାଶ ଷାଠିଏ ଟଙ୍କାର ଜାଳେଣିକାଠ ମିଳିପାରିବ ।

ସାଧାରଣତଃ ଶକ୍ତି ସଙ୍କଟ କଥା କହିଲେ, ଆମ ମନକୁ ସଙ୍ଗେ ସଙ୍ଗେ ପେଟ୍ରୋଲ୍ ଓ ଡିଜେଲ୍ କଥା କିମ୍ବା ବିଜୁଳିଶକ୍ତି ସଙ୍କଟ କଥା ଚାଲିଆସିଥାଏ । କିନ୍ତୁ ଗାଁଗହଳିର ଲୋକମାନଙ୍କ ଭିତରୁ କେତେଜଣ ପେଟ୍ରୋଲ୍ ଓ ଡିଜେଲ୍ ଆବଶ୍ୟକ କରିଥା'ନ୍ତି ? କେତେଜଣଙ୍କ ଘରେ ବିଜୁଳିବତି ଅଛି ? ସେମାନଙ୍କପାଇଁ ଶକ୍ତି ସଙ୍କଟ କହିଲେ, ଜାଳେଣିକାଠର ସଙ୍କଟକୁହିଁ ମୁଖ୍ୟତଃ ବୁଝାଏ । ନିଜ କ୍ଷେତ ଚାରିପଟେ ଉପଯୁକ୍ତ ଗଛ ଲଗାଇ ଏହି ସମସ୍ୟାର ସମାଧାନ ସେମାନେ ନିଜେ କରିପାରିବେ । ଜାଳକାଠପାଇଁ ସେମାନଙ୍କୁ କାମଦାମ ଛାଡ଼ି, ମଜୁରି ଛାଡ଼ି ଆଉ ପାଞ୍ଚ ମାଇଲ ଦୂରକୁ ଯିବାକୁପଡ଼ିବନାହିଁ ।



# ଓଡ଼ିଶାରେ ବୃକ୍ଷରୋପଣ କାର୍ଯ୍ୟକ୍ରମ

ସଂପ୍ରତି ଦେଶ ଯେଉଁ କେତୋଟି ବିଷମ ସମସ୍ୟାର ସମ୍ମୁଖୀନ ହୋଇଛି; ସେଥିମଧ୍ୟରୁ ପ୍ରତିବର୍ଷ ବ୍ୟାପକ ଭାବରେ ନଷ୍ଟହେଉଥିବା ଜଙ୍ଗଲସଂପଦ ଅନ୍ୟତମ । ଭାରତବର୍ଷରେ ବର୍ଷକୁ ୧୩ ଲକ୍ଷରୁ ୧୫ ଲକ୍ଷ ହେକ୍ଟର ବନସଂପଦ ଧ୍ୱଂସ ହୋଇଯାଉଛି । ଓଡ଼ିଶାର ଅବସ୍ଥା ମଧ୍ୟ ତଦନୁରୂପ । ଏକଦା ବନସଂପଦ ପ୍ରାଚୁର୍ଯ୍ୟରେ ଓଡ଼ିଶାର ସ୍ଥାନ ଭାରତରେ ତୃତୀୟ ଥିଲା । ଭାରତର ମୋଟ ଭୌଗୋଳିକ କ୍ଷେତ୍ରଫଳର ଶତକଡ଼ା ୪୩ ଭାଗ ଅଂଚଳ ଅର୍ଥାତ୍ ୬୭,୪୬୧ ବର୍ଗକିଲୋମିଟର ଅଂଚଳ ଜଙ୍ଗଲପରିପୂର୍ଣ୍ଣଥିଲା । କିଂତୁ ସ୍ୱାଧୀନତା ପ୍ରାପ୍ତି ପରେ ପରେ ରାଜ୍ୟରେ ଜଙ୍ଗଲର ଆୟତନ ଦ୍ରୁତଗତିରେ ହ୍ରାସହେବାରେ ଲାଗିଛି । ସାଟେଲାଇଟ୍‌ରୁ ନିଆଯାଇଥିବା ଚିତ୍ରରୁ ଜଣାପଡ଼େ, ୧୯୭୨ରୁ ୭୫ ମସିହା ବେଳେ ଆମ ରାଜ୍ୟର ଜଙ୍ଗଲ ଆୟତନ ୪୩,୩୮୩ ବର୍ଗକିଲୋମିଟର ଅର୍ଥାତ୍ ଶତକଡ଼ା ୩୧ ଭାଗ ଥିଲାବେଳେ ୧୯୮୦-୮୨ ମସିହାରେ ଏହା ୩୯,୪୨୫ ବର୍ଗକିଲୋମିଟର ବା ଶତକଡ଼ା ୨୫ ଭାଗକୁ ହ୍ରାସ ପାଇଥିଲା । ଏହା ଭିତରୁ ଭଲ ଜଙ୍ଗଲ ବା ଉପଯୁକ୍ତ ସାନ୍ଦ୍ରତାଥିବା ଜଙ୍ଗଲ ମାତ୍ର ୧୮ରୁ ୨୦ ଭାଗ ହୋଇପାରେ । ଏହି ପରିସଂଖ୍ୟାନରୁ ଜଣାଯାଏ, ଆମ ରାଜ୍ୟରେ ବର୍ଷକୁ ପ୍ରାୟ ୧୦୦୦ ବର୍ଗକିଲୋମିଟର ବା ୧ ଲକ୍ଷ ହେକ୍ଟର ହାରରେ ଜଙ୍ଗଲ ନଷ୍ଟ ହେବାରେ ଲାଗିଛି । ରାଜ୍ୟବାସୀଙ୍କପାଇଁ ନିଶ୍ଚିତ ଭାବରେ ଏହା ଏକ ବିପଦ ସଂକେତ ।

୧୯୫୨ ମସିହାରେ ପ୍ରଣୀତ ଜାତୀୟ ବନ ନୀତିରେ ଧାର୍ଯ୍ୟକରାଯାଇଥିଲା, ରାଜ୍ୟର ଭୂଭାଗର ଶତକଡ଼ା ୩୩ ଭାଗ ଅଂଚଳ ଜଙ୍ଗଲଦ୍ୱାରା ଆଚ୍ଛାଦିତ ରହିବା ବୈଜ୍ଞାନିକ ଦୃଷ୍ଟି-କୋଣରୁ ବିଧେୟ । ବର୍ତ୍ତମାନ ମଧ୍ୟ ଜାତୀୟ ଧାର୍ଯ୍ୟ ନୀତିର ବହୁତ ତଳେ ଆମେ ରହିଛେ । ତାହାଛଡ଼ା ସଂପ୍ରତି ରାଜ୍ୟରେ ଯେଉଁ ହାରରେ ଜଙ୍ଗଲ କ୍ଷୟ ହେଉଛି, ତା'ର ଉପଯୁକ୍ତ ପ୍ରତିକାର କରାନଗଲେ ଏବଂ ଆବଶ୍ୟକୀୟ ଅନୁପାତରେ ବୃକ୍ଷରୋପଣ କରାନଗଲେ, ଏକବିଂଶ ଶତାବ୍ଦୀର ପାଦଦେଶରେ ପହଞ୍ଚିଲାବେଳକୁ ଅର୍ଥାତ୍ ଆଉ ମାତ୍ର ୧୨ ବର୍ଷ ଭିତରେ ରାଜ୍ୟର ଜଙ୍ଗଲସଂପଦ ଭୂଭାଗର ଶତକଡ଼ା ୧୦ ଭାଗ ତଳକୁ ଖସିଆସିଥିବ ବୋଲି ବିଶେଷଜ୍ଞମାନେ ସତର୍କବାଣୀ ଶୁଣେଇସାରିଲେଣି ।

ଏହି କାରଣରୁ ରାଜ୍ୟର ବନ ଯୋଜନାରେ ବୃକ୍ଷରୋପଣ କାର୍ଯ୍ୟକ୍ରମକୁ ବିଶେଷ ଗୁରୁତ୍ୱ ଦିଆଯାଉଛି । ପ୍ରତିବର୍ଷ ଯେଉଁ ୧୦୦୦ ବର୍ଗକିଲୋମିଟର ପରିମିତ ଜଙ୍ଗଲ ନଷ୍ଟ ହୋଇଯାଉଛି; ଅନ୍ତତପକ୍ଷେ ସେତିକି ବା ତା'ଠାରୁ ଅଧିକ ଜମିରେ ବୃକ୍ଷରୋପଣ କରାଯିବାର ଆବଶ୍ୟକତା ନିଶ୍ଚିତ ଭାବରେ ରହିଛି । କିଂତୁ ରାଜ୍ୟର ସୀମିତ ଯୋଜନା ଅଟକଳ ଭିତରେ ବୃକ୍ଷରୋପଣ ନିମନ୍ତେ ବ୍ୟାପକ ବ୍ୟୟ ବରାଦ କରିବା ସଂଭବନୁହେଁ । ସେଥିପାଇଁ ସୁଇଡେନ୍ ସରକାରଙ୍କ ଆର୍ଥିକ ସହାୟତାରେ ରାଜ୍ୟରେ ବିଗତ ପାଞ୍ଚବର୍ଷ ହେଲା ସାମାଜିକ ବନୀକରଣ ଯୋଜନା

କାର୍ଯ୍ୟକାରୀ କରାଯାଉଛି ଏବଂ ଚଳିତବର୍ଷଠାରୁ ଏହାର ଦ୍ୱିତୀୟ ପର୍ଯ୍ୟାୟ ୭୮ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇ ଆରଂଭ କରାଯାଇଛି । ଏହା ବ୍ୟତୀତ ବିଗତ ତିନିବର୍ଷ ହେଲା 'ବୃକ୍ଷରୋପଣ ଉନ୍ନୟନ ନିଗମ' ଗଠନ କରାଯାଇ ବନୀକରଣ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରାଯାଉଛି । ଏହା ନିଗମ ବ୍ୟାଙ୍କ୍ ଓ ନାବାର୍ଡ ଆଦି ଅର୍ଥଲଗାଣକାରୀ ସଂସ୍ଥାରୁ ଋଣନେଇ ବୃକ୍ଷରୋପଣ କରିବା ନିମନ୍ତେ ଉଦ୍ୟମ ଚଳାଇଛି । ବର୍ତ୍ତମାନ କେନ୍ଦ୍ରୀୟ ସହାୟତାରେ କାର୍ଯ୍ୟକାରୀ ହେଉଥିବା ଜାତୀୟ ଗ୍ରାମୀଣ କର୍ମନିଯୁକ୍ତି କାର୍ଯ୍ୟକ୍ରମ; ଯଥା– ଏନ୍.ଆର୍.ଇ.ପି. (N.R.E.P.) ଓ ଗ୍ରାମୀଣ ଭୂମିହୀନ ନିମନ୍ତେ ଆବଶ୍ୟକୀୟ କର୍ମନିଯୁକ୍ତି ଯୋଗାଣ କାର୍ଯ୍ୟରେ ମଧ ଶତକଡ଼ା ୨୫ରୁ ୩୦ ଭାଗ ଅର୍ଥ ବନୀକରଣପାଇଁ ନିର୍ଦ୍ଦିଷ୍ଟ କରାଯାଇଛି ଏବଂ ବର୍ଷକୁବର୍ଷ ଏହି ଯୋଜନାରେ ଅଧିକ ପ୍ରତିଶତ ଅର୍ଥ ସାମାଜିକ ବନୀକରଣ ଦିଗରେ ବ୍ୟୟିତ ହେଉଛି । ଏସବୁ ସତ୍ତ୍ୱେ ୧୯୮୧-୮୨ ମସିହାଠାରୁ ବିଗତବର୍ଷ ଅର୍ଥାତ୍ ୧୯୮୭-୮୮ ପର୍ଯ୍ୟନ୍ତ ହାରାହାରି ୨ ଲକ୍ଷ ୭୪ ହଜାର ହେକ୍ଟର ଜମିରେ ବୃକ୍ଷରୋପଣ ଓ ୧ ଲକ୍ଷ ୬୦ ହଜାର ହେକ୍ଟର ପତିତ ବା ଉଜୁଡ଼ା ଜଙ୍ଗଲର ପୁନରୁଦ୍ଧାର କରାଯାଇପାରିଛି । ରାଜ୍ୟର ବାର୍ଷିକ ବୃକ୍ଷରୋପଣ ତୁଳନାରେ ଏହା ଯଥେଷ୍ଟ ନୁହେଁ ।

ରାଜ୍ୟ ବନ ବିଭାଗର ଯେଉଁ କେତୋଟି ସଂସ୍ଥା ବୃକ୍ଷରୋପଣ କାର୍ଯ୍ୟକ୍ରମରେ ନିୟୋଜିତ ଅଛନ୍ତି, ସେଥିଭିତରେ ମୁଖ୍ୟ ବନ ସଂରକ୍ଷକଙ୍କ ଅଧୀନରେ ଥିବା ଟେରିଟୋରିଆଲ୍ ଡିଭିଜନ୍ ସାମାଜିକ ବନୀକରଣ ବିଭାଗ, ଓଡ଼ିଶା ବୃକ୍ଷରୋପଣ ଉନ୍ନୟନ ନିଗମ, ଶିମିଳିପାଳ ବନ ଉନ୍ନୟନ ନିଗମ, ଓଡ଼ିଶା ବନ ନିଗମ ଆଦି ଅନ୍ତର୍ଭୁକ୍ତ । ଏହା ବ୍ୟତୀତ କୃଷି ବିଭାଗ ଆନୁକୂଲ୍ୟରେ ମୃତ୍ତିକା ସଂରକ୍ଷଣ ବିଭାଗ ଓ ଉଦ୍ୟାନ ବିଭାଗ ଜରିଆରେ ମଧ ବିଭିନ୍ନ ବୃକ୍ଷରୋପଣ କାର୍ଯ୍ୟକ୍ରମ ହାତକୁ ନିଆଯାଇଥାଏ ।

ଚଳିତବର୍ଷ ମୁଖ୍ୟ ବନ ସଂରକ୍ଷକଙ୍କ ତତ୍ତ୍ୱାବଧାନରେ ମୋଟ ୬୪୩୧ ହେକ୍ଟର ଜମିରେ ବୃକ୍ଷରୋପଣ ଓ ୬୦,୩୫୦ ହେକ୍ଟର ଉଜୁଡ଼ା ଜଙ୍ଗଲର ପୁନରୁଦ୍ଧାର ଏବଂ ୧୫ ଲକ୍ଷ ଚାରା ବିତରଣର ବ୍ୟବସ୍ଥା ରହିଛି । ଚାରା ବିତରଣ ବ୍ୟବସ୍ଥାକୁ ବାଦ୍‌ଦେଲେ, ଏହି ବୃକ୍ଷରୋପଣ କାର୍ଯ୍ୟକ୍ରମ ପ୍ରାୟତଃ ସଂରକ୍ଷିତ ଜଙ୍ଗଲମାନଙ୍କରେ କରାଯିବ । ସେହିପରି ସାମାଜିକ ବନୀକରଣ ଯୋଜନାରେ ୧୨,୭୦୫ ହେକ୍ଟର ଜମିରେ ବୃକ୍ଷରୋପଣ, ୧୩୦୦ ହେକ୍ଟର ପତିତ ଜଙ୍ଗଲର ପୁନରୁଦ୍ଧାର ଏବଂ ୧୪୦ ଲକ୍ଷ ଚାରା ବିତରଣର ଲକ୍ଷ୍ୟ ରଖାଯାଇଛି । ସାମାଜିକ ବନୀକରଣ ଯୋଜନା ଅନ୍ତର୍ଗତ ବୃକ୍ଷରୋପଣ କାର୍ଯ୍ୟକ୍ରମ ପ୍ରଧାନତଃ ସରକାରୀ ପତିତ, ଅନାବାଦୀ ଜମି, ଗ୍ରାମ୍ୟ ଜଙ୍ଗଲ ଓ 'ଖ' ଶ୍ରେଣୀ ପ୍ରଜାସ୍ୱତ୍ୱ ସଂରକ୍ଷିତ ଜଙ୍ଗଲରେ କରାଯାଉଛି । ଓଡ଼ିଶା ବୃକ୍ଷରୋପଣ ଉନ୍ନୟନ ନିଗମ ଜରିଆରେ ୨୯,୨୦୦ ହେକ୍ଟର ଜମିରେ ବୃକ୍ଷରୋପଣ ଏବଂ ୧୦୭୨ କିଲୋମିଟର ରାସ୍ତାରେ ପଥପାର୍ଶ୍ୱ ବନୀକରଣ କରାଯିବ । ଏହା ବ୍ୟତୀତ ଓଡ଼ିଶା ବନ ନିଗମ ଓ ଶିମିଳିପାଳ ବନ ଉନ୍ନୟନ ନିଗମ ମଧ ଯଥାକ୍ରମେ ୧୦,୦୦୦ ଓ ୧୬୫୦ ହେକ୍ଟର ଜମିରେ ମୂଲ୍ୟବାନ୍ ଅର୍ଥକରୀ ବୃକ୍ଷ ଲଗାଇବାର ଦାୟିତ୍ୱ ନେଇଛନ୍ତି । ମୋଟ ଉପରେ ଚଳିତବର୍ଷ ରାଜ୍ୟରେ ୬୧,୫୯୬ ହେକ୍ଟର ଜମିରେ ବୃକ୍ଷରୋପଣ, ୬୧,୬୫୦ ହେକ୍ଟର

କ୍ଷୟପ୍ରାପ୍ତ ଜଙ୍ଗଲର ପୁନରୁଦ୍ଧାର, ୧୦୭୨ କିଲୋମିଟରେ ପଥପାର୍ଶ୍ୱ ବନୀକରଣ ଓ ୧୫୫ ଲକ୍ଷ ଚାରା ବିତରଣ ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟକରାଯାଇଥିଲା । ଏ ସମସ୍ତ କାର୍ଯ୍ୟକ୍ରମରେ ସର୍ବମୋଟ ୨୮ କୋଟି ୪୦ ଲକ୍ଷ ବୃକ୍ଷରୋପଣ କରାଯିବ ।

ବୃକ୍ଷରୋପଣ ନିମନ୍ତେ ବ୍ୟାପକ ଜନସଚେତନତା ସୃଷ୍ଟିକରିବା ଏହି କାର୍ଯ୍ୟକ୍ରମର ଅନ୍ୟତମ ଦିଗନ୍ତ । କାରଣ ବୃକ୍ଷରୋପଣର ସଫଳତା ଅନେକତା ରୋପିତ ବୃକ୍ଷର ଉପଯୁକ୍ତ ସୁରକ୍ଷା ଉପରେ ନିର୍ଭର କରିଥାଏ । ଏହା ବ୍ୟତୀତ ଯେଉଁଠି ପ୍ରାକୃତିକ ଜଙ୍ଗଲର ଅବଶେଷ ରହିଛି, ତା'ର ଉପଯୁକ୍ତ ରକ୍ଷଣାବେକ୍ଷଣ ଓ ପରିବର୍ଦ୍ଧନ ମଧ୍ୟ ଏକାନ୍ତ ଆବଶ୍ୟକ । କାରଣ ପ୍ରାକୃତିକ ଜଙ୍ଗଲର ବିକଳ୍ପନାହିଁ । ମନୁଷ୍ୟକୃତ ବୃକ୍ଷରୋପଣ କାର୍ଯ୍ୟକ୍ରମରେ ପ୍ରାକୃତିକ ଜଙ୍ଗଲଟିଏ ସୃଷ୍ଟି କରିଦେବା ସଂଭବନୁହେଁ । ବିଗତ ବର୍ଷମାନଙ୍କରେ ଲକ୍ଷ୍ୟ କରାଯାଇଛି, ସୀମିତ ବନ ବିଭାଗ କର୍ମଚାରୀଙ୍କଦ୍ୱାରା ବିସ୍ତୃତ ଜଙ୍ଗଲ ସମ୍ପଦର ସୁରକ୍ଷା ସଂଭବନୁହେଁ ଏବଂ ଏହି କାର୍ଯ୍ୟ ନିମନ୍ତେ ଯଥେଷ୍ଟସଂଖ୍ୟକ କର୍ମଚାରୀ ମଧ୍ୟ ନାହାନ୍ତି । ତେଣୁ ରାଜ୍ୟରେ ଯେଉଁ ୨୦ ଭାଗ ପ୍ରାକୃତିକ ଜଙ୍ଗଲ ଅବଶିଷ୍ଟ ରହିଛି, ତାକୁ ବଂଚାଇରଖିବାକୁ ହେଲେ ଓ ବଳକା ଆବଶ୍ୟକତା ବୃକ୍ଷରୋପଣ ଜରିଆରେ ଭରଣାକରିବାକୁ ହେଲେ, ଜଙ୍ଗଲ ନିକଟରେ ବସବାସ କରୁଥିବା ଗ୍ରାମବାସୀ ତଥା ସାଧାରଣଲୋକମାନଙ୍କୁ କୌଣସି ନା କୌଣସି ଉପାୟରେ ଜଙ୍ଗଲ ସୁରକ୍ଷା ଓ ବୃକ୍ଷରୋପଣ କାର୍ଯ୍ୟକ୍ରମରେ ଜଡ଼ିତ କରାଇବାକୁ ପଡ଼ିବ । ଜନସାଧାରଣଙ୍କର ମୌଳିକ ବନଜାତ ଦ୍ରବ୍ୟର ଚାହିଦା; ଯଥା– ଜାଳେଣି, ଛୋଟକାଠ, କୃଷିଉପକରଣପାଇଁ କାଠ ଓ ଚାରଣର ଆବଶ୍ୟକତା କୌଣସି ବିକଳ୍ପ ସୂତ୍ରରୁ ପୂରଣକରାନଗଲେ, ଯେତେ କଡ଼ାକଡ଼ି ଆଇନ୍ ସୃଷ୍ଟିକଲେ ମଧ୍ୟ ବନ ସଂପଦକୁ ରକ୍ଷା କରାଯାଇପାରିବନାହିଁ । ଏହି କାରଣରୁ ଯେଉଁ ଗ୍ରାମର ଗ୍ରାମବାସୀମାନେ ନିଜ ଗାଁ ନିକଟସ୍ଥ ଜଙ୍ଗଲକୁ ଜଗାରଖା କରି ବଢ଼େଇଛନ୍ତି, ସେମାନଙ୍କୁ ଉକ୍ତ ଜଙ୍ଗଲର ପରିଚାଳନା ଭାର ହସ୍ତାନ୍ତର କରାଯିବା ବିଷୟ ମଧ୍ୟ ଚିନ୍ତାକରାଯାଉଛି । ଏହି ପରିପ୍ରେକ୍ଷୀରେ ରାଜ୍ୟରେ ଗତ ୧୯୮୪ ମସିହାଠାରୁ ଆରଂଭକରାଯାଉଥିବା ସାମାଜିକ ବନୀକରଣ ଯୋଜନାରେ ରୋପିତ ଜଙ୍ଗଲର ସାମାଜିକ ସୁରକ୍ଷା ଉପରେ ବିଶେଷ ଜୋର୍ ଦିଆଯାଉଛି । ଯୋଜନା ପରିସରଭୁକ୍ତ ପ୍ରତିଟି ଗ୍ରାମରେ ଗ୍ରାମ ବନ କମିଟି ଗଠନ କରାଯାଇଛି । ଆରଂଭରୁ ଅର୍ଥାତ୍ ଚାରା ଉତ୍ପାଦନଠାରୁ ନେଇ ଗାତଖୋଳିବା, ବୃକ୍ଷରୋପଣ କରିବା, ସାର ପ୍ରୟୋଗ ଓ ରକ୍ଷଣାବେକ୍ଷଣ ଆଦି ପ୍ରତିଟି କାର୍ଯ୍ୟରେ ଗ୍ରାମବାସୀମାନଙ୍କୁ ଜଡ଼ିତ କରାଯିବା ସଂଗେ ସଂଗେ, ପରିଶେଷରେ ରୋପିତ ଜଙ୍ଗଲର ପରିଚାଳନା ଭାର ମଧ୍ୟ କମିଟି ମାର୍ଫତରେ ଗ୍ରାମବାସୀଙ୍କ ହାତରେ ଅର୍ପଣକରାଯାଉଛି । ଏହି ବ୍ୟବସ୍ଥା କେତେକାଂଶରେ ଫଳପ୍ରଦ ହେବାରୁ ସଂରକ୍ଷିତ ବନର ବାହ୍ୟପରିସୀମାରେ ଥିବା ଜଙ୍ଗଲର ସୁରକ୍ଷା ଭାର ନିକଟସ୍ଥ ଗ୍ରାମବାସୀମାନଙ୍କୁ ଦିଆଯିବା ସଂଗେ ସଂଗେ ସେହି ଜଙ୍ଗଲରେ ସେମାନଙ୍କୁ ଅଧିକାର ଦିଆଯିବା ବିଷୟ ମଧ୍ୟ ଚିନ୍ତାକରାଯାଉଛି ।

ଚାରା ଉତ୍ପାଦନ ଓ କ୍ଷେତକଡ଼େ ଜଙ୍ଗଲ ବା Farm Forestry କାର୍ଯ୍ୟକ୍ରମରେ ମାଗଣାରେ ଚାରା ବିତରଣ, ବୃକ୍ଷରୋପଣ କାର୍ଯ୍ୟକ୍ରମର ଅନ୍ୟ ଏକ ଦିଗନ୍ତ । 'ଜାତୀୟ ପତିତ ଜମି ବିକାଶ ପରିଷଦ' (N.W.D.B.) କ୍ରମଶଃ ଅଧିକରୁ ଅଧିକ ଚାରା ବେସରକାରୀ ଉଦ୍ୟମରେ

ଅର୍ଥାତ୍ ସ୍କୁଲର ଛାତ୍ରଛାତ୍ରୀ, ଗାଁର ଯୁବକ ସଂଘ, ମହିଳା ସମିତି କିମ୍ବା ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ଜରିଆରେ କରାଇବା ଉପରେ ଗୁରୁତ୍ୱ ଆରୋପ କରୁଛନ୍ତି । ଜନସହଯୋଗ ହାସଲ କରିବାର ଏହା ଅନ୍ୟତମ ଉପାୟ । ଓଡ଼ିଶା ସାମାଜିକ ବନୀକରଣ ଯୋଜନାରେ ଯେଉଁ ୧୪୦ ଲକ୍ଷ ଚାରା ଏବର୍ଷ ମାଗଣାରେ ବିତରଣ କରାଯାଇଛି, ତାହା ମୁଖ୍ୟତଃ ବେସରକାରୀ ଉଦ୍ୟମରେ ପ୍ରସ୍ତୁତ କରାଯାଇଛି । ସେହିପରି ଏନ୍.ଆର୍.ଇ.ପି. କାର୍ଯ୍ୟକ୍ରମରେ ମଧ୍ୟ ବେସରକାରୀ ଉଦ୍ୟମରେ ବ୍ୟକ୍ତିଗତ ଚାରାକେନ୍ଦ୍ରମାନ ପ୍ରତିଷ୍ଠା କରାଯାଇଛି । 'କ୍ଷେତବାଡ଼ ଜଙ୍ଗଲ' କାର୍ଯ୍ୟକ୍ରମରେ ମାଗଣାରେ ବିତରଣ କରାଯାଉଥିବା ଚାରା ଲୋକମାନେ ନିଜର ଘରବାଡ଼ି, ବଗିଚା ବାଡ଼, ପୋଖରୀ ହୁଡ଼ା, ବିଲ ହିଡ଼, ଢିପ ତଥା ପତିତ ଜମିରେ ଓ ସ୍କୁଲ କଚେରୀ ହତା ଏବଂ ଧର୍ମାନୁଷ୍ଠାନମାନଙ୍କରେ ଲଗାଇବାପାଇଁ ଉଦ୍ଦିଷ୍ଟ । ଏଥିରେ ବନ ବିଭାଗକୁ କେବଳ ଚାରା ବିତରଣ ଓ ବୈଷୟିକ ସହାୟତା ପ୍ରଦାନ କରିବା ବ୍ୟତୀତ ଅଧିକ ଆର୍ଥିକ ବ୍ୟୟ ବହନ କରିବାକୁ ପଡ଼େନାହିଁ । କିନ୍ତୁ ଏହି ଯୋଜନାଟି ସଫଳଭାବେ ରୂପାୟନ ହେଲେ, ଲୋକେ ନିଜନିଜର ଜମିରୁ ବା ବାଡ଼ି ବଗିଚାରୁ ନିଜର ଜଙ୍ଗଲଜାତ ଦ୍ରବ୍ୟର ଆବଶ୍ୟକତା ମେଣ୍ଟାଇପାରିବେ ଓ ଏହା ଫଳରେ ସରକାରୀ ଜଙ୍ଗଲ ତଥା ସଂରକ୍ଷିତ ଜଙ୍ଗଲ ଉପରୁ ଯଥେଷ୍ଟ ଚାପ କମିଯିବ ।



# ଋଣ କରି ଗଛ ଲଗାଅ

ପିଲାଦିନେ କଥାପ୍ରସଙ୍ଗରେ ଶୁଣିଥିଲୁ, ''ଋଣଂ କୃତ୍ୱା ଘୃତଂ ପିବେତ୍ ।'' ଧାର୍, କରଜ କରି ରାଜକୀୟ ଥାଟରେ ଚଳୁଥିବା ବ୍ୟକ୍ତିବିଶେଷଙ୍କ ପ୍ରତି ଆକ୍ଷେପ କରି ଏହା କୁହାଯାଇଥାଏ । ଋଣକରି ଗାଈ, ଛେଳି କିଣିବା, କୁକୁଡ଼ା ପାଳନ କେନ୍ଦ୍ର ଖୋଲିବା, କଦଳୀ ଚାଷ କରିବା କଥା ମଧ୍ୟ ଓଣାଅଧିକେ ଶୁଣାଯାଏ । କିଂତୁ ଋଣ କରି ଗଛ ଲଗାଇବା, ତାହା ପୁଣି ଫଳ ଗଛ ନୁହେଁ, ଜଙ୍ଗଲୀ ଗଛ; ଏକଥା ହୁଏତ ଅନେକଙ୍କୁ ନୂଆଲାଗିପାରେ । ସାଧାରଣତଃ ଜଙ୍ଗଲରେ ଲଗାଯାଉଥିବା ଗଛର ଅମଳ ସମୟ ଅପେକ୍ଷାକୃତ ଦୀର୍ଘ ହେଉଥିବାରୁ, ବ୍ୟାଙ୍କରୁ ଋଣ ନେଇ ଗଛ ଲଗାଇବା ଅସମୀଚୀନ ମନେହୁଏ । କାରଣ ଅମଳ ନହେଲା ପର୍ଯ୍ୟନ୍ତ ଋଣ ଓ ସୁଧ ପରିଶୋଧ କରିବା କଷ୍ଟକର ବ୍ୟାପାର । ନାବାର୍ଡ ସଂସ୍ଥାର ଉଦ୍ୟମରେ ଏବଂ କେନ୍ଦୁଝର ବନୀକରଣ ବିଭାଗର ସକ୍ରିୟ ସହଯୋଗରେ ଏହି ପରିକଳ୍ପନାର ସଫଳ ରୂପାୟନ ଏବେ ଘଟିଛି କେନ୍ଦୁଝର ଜିଲ୍ଲାରେ । ଏହି ଜିଲ୍ଲାରେ ସାହାରାପଡ଼ା ଓ ପାଟନା ଗୋଷ୍ଠୀ ଉନ୍ନୟନ ବ୍ଲକ୍‌ରେ ସ୍ଥାନୀୟ ବ୍ୟାଙ୍କ୍ ଅଫ ଇଣ୍ଡିଆ ଓ ବୈତରଣୀ ଗ୍ରାମ୍ୟ ବ୍ୟାଙ୍କ୍ ଶାଖା ଋଣ ପ୍ରଦାନ କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛନ୍ତି ।

ବୃକ୍ଷରୋପଣପାଇଁ ଏହି ଦୁଇଟି ବ୍ଲକ୍‌ରେ ଯେଉଁ ଜମି ଚିହ୍ନଟ କରାଯାଇଛି, ସେଗୁଡ଼ିକ ପଡ଼ିଆ ବା ଢିପଜମି । ଜଳସେଚନର ଆଦୌ ସୁବିଧାନାହିଁ । ଏଥିରୁ କୃଷି ଉତ୍ପାଦନ ବହୁତ କମ୍ ମିଳୁଥିଲା । ବର୍ଷକୁ ଥରୁଟିଏ ସେମାନେ ଏହି ଢିପଜମିରେ ଧାନ ଲଗାଉଥିଲେ ନହେଲେ ରାଶି ଚାଷକରୁଥିଲେ । ଏହିପରି ପାହାଡ଼ିଆ ଢିପଜମି ବା ପତିତଜମି ବୃକ୍ଷରୋପଣପାଇଁ ଲାଭଦାୟକ ମନେହେଲା । ଚାଷ ତୁଳନାରେ ଏହି ପ୍ରକାର ଜମିରେ ବୃକ୍ଷରୋପଣ କଲେ ଅଧିକ ଲାଭହେବ । ଚାଷୀମାନଙ୍କର ପସନ୍ଦଯୋଗ୍ୟ ଗଛ ହେଉଛି ଇଉକାଲିପଟସ୍ । କାରଣ ଏହା ଶୀଘ୍ର ବଢ଼ିଥାଏ । ଥରେ କାଟିଦେଲେ ମୂଳରୁ ଗଜା ବାହାରେ ଏବଂ ସାଧାରଣତଃ ଗାଈଗୋରୁ ଏହାକୁ ଖାଇ ନଷ୍ଟ କରନ୍ତିନାହିଁ । ସବୁଠୁ ବଡ଼ କଥା ହେଲା, ଅମଳ ପରେ ଗଛର ବିକ୍ରିପାଇଁ ଏକ ସୁନିଶ୍ଚିତ ମାର୍କେଟ୍ ବା ବଜାର ରହିଛି । କାଗଜକଳଗୁଡ଼ିକ ମଣ୍ଡ ପ୍ରସ୍ତୁତପାଇଁ ଇଉକାଲିପଟସ୍ ଗଛକୁ ଆଗ୍ରହରେ କିଣିନେଉଛନ୍ତି । ତା' ଛଡ଼ା ଚାଷୀମାନଙ୍କର ସର୍ବନିମ୍ନ ଆବଶ୍ୟକତା; ଯଥା– ଜାଳେଣି, ଛୋଟକାଠ ଓ ବଲ୍ଲୀ ମଧ୍ୟ ଏଥିରୁ ମିଳିଥାଏ । ଇଉକାଲିପଟସ୍ ଗଛର ଶୁଖିଲା ଝଡ଼ାପତ୍ର, ଡାଳ ଓ ବକ୍‌କଳକୁ ଜାଳେଣିରୂପେ ବ୍ୟବହାର କରାଯାଏ । ତେବେ କେବଳ ଏହି ଗଛ ନଲଗାଇ କିଛି କିଛି ସାଗୁଆନ୍, ଗମ୍ଭାରି ଓ ବାଡ଼ କଡେକଡେ ବାଉଁଶ ଲଗାଇବାକୁ ମଧ୍ୟ ସେମାନଙ୍କୁ ପ୍ରବର୍ତ୍ତାଯାଇପାରିଛି ।

ଗଛ ଲଗାଇବାକୁ ଅତି କମ୍‌ରେ ୧ ଏକର ପତିତଜମି ଥିଲେ, ଜଣେ ବ୍ୟକ୍ତି ବ୍ୟାଙ୍କ୍ ଋଣ ପାଇଁ ଦରଖାସ୍ତ କରିପାରିବ । କେନ୍ଦୁଝର ଜିଲ୍ଲାରେ ଏହି କାର୍ଯ୍ୟକ୍ରମପାଇଁ ସାମାଜିକ ବନୀକରଣ

ବିଭାଗକୁ ସହଯୋଗୀ ତଥା ଯୋଗସୂତ୍ର ରକ୍ଷାକାରୀ ବିଭାଗ ଭାବରେ ଚିହ୍ନଟକରାଯାଇଛି । ତେଣୁ ବ୍ୟକ୍ତିବିଶେଷଙ୍କୁ ଜମିର ପଟ୍ଟା, ପାଉତି ଆଦିର ନକଲ ସହ ସାମାଜିକ ବନ ବିଭାଗ ଜରିଆରେ ଋଣପାଇଁ ଦରଖାସ୍ତ କରିବାକୁ ପଡ଼େ । ବନ ବିଭାଗ ସମସ୍ତ କାଗଜପତ୍ର ତନଖି କରିସାରିଲା ପରେ ସେଗୁଡ଼ିକ ସୁପାରିଶ କରି ବ୍ୟାଙ୍କ୍‌କୁ ପଠାଇଥା'ନ୍ତି । ଋଣ ଦେବାପାଇଁ ଚିହ୍ନଟ ହୋଇଥିବା ବ୍ୟାଙ୍କ୍, ଅନ୍ୟାନ୍ୟ ସ୍ଥାନୀୟ ବ୍ୟାଙ୍କ୍ ଓ ସମବାୟ ବ୍ୟାଙ୍କ୍‌ଗୁଡ଼ିକରେ ଦରଖାସ୍ତକାରୀଙ୍କର କୌଣସି ପାଉଣା ବାକିଥା ଅଛି ନା ନାହିଁ ଏବଂ ଆଗରୁ କେବେ ଋଣ ନେଇ ପରିଶୋଧରେ ଖିଲାପ କରିଛନ୍ତି ନା ନାହିଁ, ସେ ବିଷୟରେ ଖବର ସଂଗ୍ରହ କରେ । ପରେ ସ୍କିମ୍ ବା ଯୋଜନାର କାର୍ଯ୍ୟକାରିତା ସଂଭାବନା ସଂପର୍କରେ ବ୍ୟାଙ୍କ୍‌ର କ୍ଷେତ୍ର କର୍ମଚାରୀ ଓ ସାମାଜିକ ବନ ବିଭାଗ ମିଳିତ ଭାବରେ ସରଜମିନ୍ ତଦନ୍ତ କରିଥା'ନ୍ତି । ଏସବୁ ସରିବା ପରେ କୃଷି ଋଣ ବା ବୃକ୍ଷରୋପଣପାଇଁ ନିର୍ଦ୍ଦିଷ୍ଟ ଋଣ ଫର୍ମରେ ବ୍ୟାଙ୍କ୍‌କୁ ଦରଖାସ୍ତ ଦେବାକୁ ହୁଏ ।

ଋଣ ମଂଜୁର ପରେ, ଋଣ ଗ୍ରହୀତାଙ୍କ ନାମରେ ଉକ୍ତ ବ୍ୟାଙ୍କ୍‌ରେ ଏକ ପାସ୍ ବୁକ୍ ଖୋଲାଯାଏ । ବୃକ୍ଷରୋପଣ କାର୍ଯ୍ୟର ଅଗ୍ରଗତି ଅନୁସାରେ ସାମାଜିକ ବନ ବିଭାଗର ସୁପାରିଶକୁ ଭିତ୍ତିକରି ପ୍ରର୍ଯ୍ୟାୟକ୍ରମେ ଋଣ ପ୍ରଦାନ କରାଯାଇଥାଏ । ପ୍ରତିଥର ଋଣ ଦେଲାବେଳେ, ସେଥିରୁ ଶତକଡ଼ା ୧୦ ଭାଗ Margin money ବା ସିକ୍ୟୁରିଟି ହିସାବରେ କାଟିନିଆଯାଇଥାଏ । ଏକର ପିଛା ବୃକ୍ଷରୋପଣପାଇଁ ଋଣର ପରିମାଣ ୬୧୭୬ ଟଙ୍କା । ଏଥିରୁ ପ୍ରଥମବର୍ଷ ୪୬୪୦ ଟଙ୍କା, ଦ୍ୱିତୀୟବର୍ଷ ୧୨୩୬ ଟଙ୍କା ଏବଂ ତୃତୀୟବର୍ଷ ୩୦୦ ଟଙ୍କା ହିସାବରେ ଋଣ ମଂଜୁରହୁଏ । କିଂତୁ ଏଥିରୁ ଶତକଡ଼ା ୧୦ ଭାଗ ସିକ୍ୟୁରିଟିପାଇଁ କାଟିନିଆଯାଇ ମୋଟରେ ୫୫୫୮ ଟଙ୍କା ତିନିବର୍ଷରେ ଏକରପିଛା ଋଣ ମିଳିଥାଏ ।

ଋଣ ମଂଜୁର ହେବାର ପ୍ରଥମ ୬ ବର୍ଷ କିଛି ଶୁଝିବାକୁପଡ଼େନାହିଁ । ଏହାକୁ ଅନୁଗ୍ରହ ସମୟ କୁହାଯାଏ । କିଂତୁ ସପ୍ତମବର୍ଷ ଉଭୟ ମୂଳଧନ ଓ ସୁଧ ଶୁଝିବାକୁପଡ଼େ । ତେଣୁ ୭ ବର୍ଷରେ ଏହି ପ୍ଲାଣ୍ଟେସନ୍‌ରୁ ଇଉକାଲିପଟସ୍ ବୃକ୍ଷଗୁଡ଼ିକ ଅମଳ କରିବାକୁ ସ୍କିମ୍‌ରେ ଉଲ୍ଲେଖ ଅଛି । ପରିକଳ୍ପନା ଅନୁଯାୟୀ ପ୍ରତ୍ୟେକ ହେକ୍ଟର ପରିମିତ ଜମିରୁ (ଅଢ଼େଇ ଏକର); ତିରିଶ ସେଣ୍ଟିମିଟରରୁ ଅଧିକ ଓସାରର ୨୦୦ଟି ବଲ୍ଲୀ, ୫୦ ମେଟ୍ରିକ୍‌ଟନ୍ ମଣ୍ଡପାଇଁ କାଠ (Pulpwood) ଏବଂ ୧୦ ମେଟ୍ରିକ୍ ଟନ୍‌ରୁ ଉର୍ଦ୍ଧ୍ୱ ଜାଳକାଠ ଅମଳ ସମୟରେ ମିଳିବ । ଏହାର ଆନୁମାନିକ ମୂଲ୍ୟ ପାଖାପାଖି ୫୦ ହଜାର ଟଙ୍କା ହେବ । ଏହାଛଡ଼ା ୬ ବର୍ଷ ପରେ ପ୍ରତି ବୁଦାରୁ ବାଉଁଶ ବର୍ଷକୁ ୨ଟିରୁ ୪ଟି ଅମଳ ହେବ । ହେକ୍ଟରପିଛା ଯଦି ୨୫ଟି ବୁଦା ବାଉଁଶ ଲଗାଯାଇଥାଏ ତେବେ ସେ ବାବଦରୁ ବାର୍ଷିକ ଆୟ ୧୦୦ ଟଙ୍କାରୁ ୨୦୦ ଟଙ୍କା ହେବାର ସଂଭାବନା ଅଛି ।

ଋଣ ନେଇ ଗଛ ଲଗାଇବା ଯୋଜନାକୁ ସଫଳ ରୂପରେଖ ଦେବା ଦିଗରେ କେନ୍ଦୁଝର ଜିଲ୍ଲା ସାହାରାପଡ଼ା ବ୍ଲକ୍‌ର ସାମାଜିକ ବନ ବିଭାଗ ଅଗ୍ରଣୀ ଭୂମିକା ଗ୍ରହଣ କରିଛି । ଋଣ ନେବାପାଇଁ ଚାଷୀମାନଙ୍କୁ ଚିହ୍ନଟକରିବା, ଦରଖାସ୍ତଦେବାରେ ସହାୟତା, ଋଣ ମଂଜୁର ପ୍ରକ୍ରିୟାକୁ ସହଜକରିବା ଛଡ଼ା ସେମାନଙ୍କୁ ବୈଷୟିକ ଓ ସଂପ୍ରସାରଣ ଦିଗରେ ସାହାଯ୍ୟଦେବା ଏବଂ ପରିଶେଷରେ ଉନ୍ନତ ଧରଣର ଚାରା ଯୋଗାଇଦେବା ଆଦି କାର୍ଯ୍ୟ ସାମାଜିକ ବନ ବିଭାଗ କରିଥାଏ ।

ଗତ ୧୯୯୫-୯୬ ମସିହାରେ ଋଣପାଇଁ ୩୭ ଜଣ ଦରଖାସ୍ତ କରିଥିଲେ ଏବଂ ସେମାନେ ୬୮ ଏକରରେ ବୃକ୍ଷରୋପଣ କରିବାକୁ ଚାହିଁଥିଲେ । ସେଥିରୁ ଏପର୍ଯ୍ୟନ୍ତ ୭ ଜଣଙ୍କର ୧୭.୪୧ ଏକର ବୃକ୍ଷରୋପଣ କରିବାପାଇଁ ଋଣ ମଂଜୁର ହୋଇସାରିଛି । ଅନ୍ୟ ଚାଷୀମାନେ ଋଣକୁ ଆଶାକରି ନିଜ ଜମିରେ ଗଛଲଗାଇ ସାରିଛନ୍ତି; କିଂତୁ ଏପର୍ଯ୍ୟନ୍ତ ବିଭିନ୍ନ କାରଣରୁ ସେମାନଙ୍କର ଋଣ ମଂଜୁର ହୋଇପାରିନାହିଁ । ସେହିପରି ୧୯୯୬-୯୭ ମସିହାରେ ୭୯ ଜଣ ବ୍ୟକ୍ତି ୨୦୧.୧୫ ଏକରରେ ଗଛ ଲଗାଇବାପାଇଁ ଋଣ ଆବେଦନ କରିଛନ୍ତି । ସେଥିରୁ ମାତ୍ର ୮ ଜଣଙ୍କର ମାତ୍ର ୩୮ ଏକର ଜମିପାଇଁ ଉପଯୁକ୍ତତା (feasibility) ପରୀକ୍ଷା ସରିଲାଣି । ହୁଏତ ନିକଟ ଭବିଷ୍ୟତରେ ଋଣ ମଂଜୁର ହୋଇପାରେ ।

ବ୍ୟାଙ୍କ୍ କର୍ତ୍ତୃପକ୍ଷଙ୍କର ଏ ଦିଗ୍‌ରେ ଉଦାସୀନତା ଓ ଅଯଥା ଗୋଳଟୁଳ ନୀତିହିଁ ଏ କ୍ଷେତ୍ରରେ କେତେକାଂଶରେ ବାଧା ସୃଷ୍ଟିକରୁଛି । ଋଣ ପରିଶୋଧ ହୋଇପାରିବ କି ନାହିଁ ସେ ବିଷୟରେ ସେମାନେ ସନ୍ଦିହାନ । ଯୋଜନାଟି ନୂଆକରି ଚାଲୁହେଉଥିବାରୁ, ଏଥିରେ କ୍ଷୟକ୍ଷତିର ଭୟ ଓ ଏହା ବିଫଳ ହେବାର ଭୟ ଅପେକ୍ଷାକୃତ ଅଧିକ । ସେଥିପାଇଁ ବ୍ୟାଙ୍କ୍ ତରଫରୁ ଯଥେଷ୍ଟ ଆଗ୍ରହ ପ୍ରକାଶପାଉନାହିଁ । ଋଣ ଦରଖାସ୍ତରେ ବିଭିନ୍ନ ଦୋଷତ୍ରୁଟି ବାହାର କରି ତାକୁ ସୁଧାରିବାପାଇଁ ବାରଂବାର କୁହାଯାଉଥିବାରୁ ଚାଷୀମାନେ ଏକାଧିକ ବାର ବ୍ୟାଙ୍କ୍‌କୁ ଦଉଡ଼ି ଦଉଡ଼ି ଶେଷରେ ବୀତସ୍ପୃହ ହୋଇପଡୁଛନ୍ତି । ଏପରି କେତେକ ଜମି ଦେଖିବାକୁ ମିଳିଲା, ଯେଉଁଠି ଋଣ ପାଇବା ଆଶାରେ, ଚାଷୀମାନେ ଆଗତୁରା ନିଜହାତରୁ ଖର୍ଚ୍ଚକରି ଗଛ ଲଗାଇସାରିଛନ୍ତି । କିଂତୁ ଋଣ ନମିଳିବାରୁ ସାର ବା କୀଟନାଶକ ଔଷଧ ଆଦି ପ୍ରୟୋଗ କରିନାହାନ୍ତି । ଫଳତଃ ଗଛଗୁଡ଼ିକ ଯଥୋଚିତ ବଢ଼ିପାରୁନାହିଁ । କୃଷିଋଣ ପରି ଏହା ମଧ୍ୟ ଏକ ସହଜଲଭ୍ୟ (Soft loan) ଋଣନୁହେଁ । ଏଠି ସୁଧହାର ଶତକଡ଼ା ୧୧.୫% । ଋଣ ପ୍ରଦାନରେ ପ୍ରାୟତଃ ଅର୍ଥ ସହାୟତା ବା ସବ୍‌ସିଡିନାହିଁ; ଯେଉଁଟା କି ଆମର ଅଭ୍ୟାସଗତ ହୋଇଗଲାଣି । ବ୍ୟାଙ୍କ୍ ଋଣ ଦେବା କଥା କହିଲେ, ଋଣଗ୍ରହୀତା ପ୍ରଥମେ ପଚାରେ ଏଥିରେ କେତେ ସବ୍‌ସିଡି ମିଳିବ ? ଏ କ୍ଷେତ୍ରରେ ହିତାଧିକାରୀ ଯଦି ନାମମାତ୍ର ଚାଷୀ ହୋଇଥାଏ ଏବଂ ସେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ ଦରଖାସ୍ତ କରେ, ତାହାହେଲେ କେବଳ ତାକୁ ଅର୍ଥ ସହାୟତା ବା ସବ୍‌ସିଡି ମିଳିପାରିବ । କିଂତୁ ସେ ନାମମାତ୍ର ଚାଷୀ ହୋଇଥିଲେ, ତା ପାଖରେ ବୃକ୍ଷରୋପଣପାଇଁ ଜମି ଆସିବ କେଉଁଠୁ ? ସେଥିପାଇଁ କେବଳ ବଡ଼ ବଡ଼ ଚାଷୀ ଓ ଅଧିକ ଜମିଥିବା ବ୍ୟକ୍ତିବିଶେଷ ଋଣପାଇଁ ଆଗେଇଆସୁଛନ୍ତି । କ୍ଷୁଦ୍ର ବା ନାମମାତ୍ର ଚାଷୀ ବିଶେଷଭାବେ ଉପକୃତ ହେବାର ସଂଭାବନା କମ୍ । ଋଣକରି ଯେଉଁମାନେ ଗଛ ଲଗାଇଛନ୍ତି, ସେମାନେ ଗଛଗୁଡ଼ିକୁ ବଢ଼ାଇବାରେ ଓ ଉପଯୁକ୍ତ ଯତ୍ନନେବାରେ ଯଥେଷ୍ଟ ଆଗ୍ରହୀ ଏବଂ ଯଥେଷ୍ଟ ଆଶାବାଦୀ ମଧ୍ୟ । ଆଶା କରାଯାଉଛି, ସେମାନଙ୍କର ଉଦ୍ୟମ ଫଳପ୍ରଦ ହେବ ଓ ଭବିଷ୍ୟତରେ ସେମାନେ ଏଥିରୁ ନିଶ୍ଚିତ ଲାଭବାନ୍ ହେବେ । ଋଣ ନେଇ ଗଛ ଲଗାଇବା କାର୍ଯ୍ୟକ୍ରମର ସଫଳତା ବ୍ୟାଙ୍କ୍ କର୍ତ୍ତୃପକ୍ଷ ଓ ଅନ୍ୟ ଚାଷୀମାନଙ୍କୁ ନିଶ୍ଚିତ ଭାବରେ ପ୍ରେରଣା ଯୋଗାଇବ ଏଥିରେ ସନ୍ଦେହନାହିଁ ।



# କୃଷିଭିତ୍ତିକ ବୃକ୍ଷ ଚାଷ

ଆମ ରାଜ୍ୟର ଦୁଇଟି ମୌଳିକ ତଥା ମୁଖ୍ୟ ସମ୍ପଦ ଉପଯୁକ୍ତ ଭାବରେ ବିନିଯୋଗ ହୋଇପାରୁନାହିଁ । ପ୍ରଥମଟି ହେଉଛି ଜମି ବା ଭୂସମ୍ପଦ । ଦ୍ୱିତୀୟଟି ଜନ ବା ମାନବସମ୍ପଦ । ଗାଁ ଗହଳିର ଅଧିକାଂଶ ଲୋକଙ୍କପାଇଁ ବର୍ଷସାରା କାମଧନ୍ଦା ମିଳୁନାହିଁ । ବର୍ଷକେ ୬ ମାସ ସେମାନଙ୍କୁ ଘରେ ବସିରହିବାକୁ ପଡୁଛି । ସେହିପରି ଉପଯୁକ୍ତ ପରିଚାଳନା ଅଭାବରେ ଅନେକ ଜମି ପଡ଼ିଆପଡୁଛି । ଢିପ ଜମି, ଗୋଡ଼ିଆ, ପଥୁରିଆ, ବାଲିଚର ଓ ପାହାଡ଼ତଳ ଗଡ଼ାଣିଆ ଜମି, ଯାହାକି ଚାଷପାଇଁ ଅନୁପଯୁକ୍ତ; ସେଠି ବିକଳ୍ପ ଯୋଜନା ଅଭାବରେ ଲୋକେ କୃଷି କରିବାରେ ଲାଗିଛନ୍ତି । ଏଇପ୍ରକାର ଜମିରେ ଚାଷ କଲେ ପରିଶ୍ରମ ତୁଳନାରେ ଉତ୍ପାଦନ ଓ ଆୟ ଲାଭଜନକ ହେଉନାହିଁ । ମୋଟାମୋଟି ଦେଖିଲେ ରାଜ୍ୟର ଜନସମ୍ପଦ ଓ ଜମିସମ୍ପଦ, କେଉଁଠି ଆଦୌ ବିନିଯୋଗ ହେଉନାହିଁ ତ କେଉଁଠି ଅର୍ଦ୍ଧବିନିଯୋଗ ହେଉଛି ।

ଏହି ପରିସ୍ଥିତିକୁ ସୁଧାରିବାପାଇଁ 'କୃଷିଭିତ୍ତିକ ବୃକ୍ଷ ଚାଷ' ଏକ ଅଭିନବ ପ୍ରଚେଷ୍ଟା । ଚାଷ କହିଲେ ଆମେ ସାଧାରଣତଃ ଧାନ, ଗହମ, ମୁଗ, ବିରି ଓ ପନିପରିବା ଆଦି ଚାଷକୁ ବୁଝିଥାଉ । କିଂତୁ ବୃକ୍ଷ ଚାଷ ଅର୍ଥାତ୍ କୃଷି ଜରିଆରେ ବୃକ୍ଷସମ୍ପଦ ସୃଷ୍ଟିକୁ ମଧ୍ୟ ଏକ ଲାଭଜନକ ଚାଷ ଭାବରେ ଗ୍ରହଣ କରାଯାଇପାରିବ ଏକଥା ବହୁତ କମ୍ ଲୋକ ଧାରଣାକରିପାରିବେ । ଏହି ପଦ୍ଧତିରେ କୃଷିପାଇଁ ଅନୁପଯୁକ୍ତ ପତିତ ଜମିକୁ ବୃକ୍ଷଚାଷ ମାଧ୍ୟମରେ ଉତ୍ପାଦନକ୍ଷମ କରିବା ସଂଗେ ସଂଗେ ଗାଁର ଭୂମିହୀନ ଦରିଦ୍ରତମ ପରିବାରଙ୍କୁ ଆର୍ଥିକ ଥଇଥାନ କରାଯାଇପାରିବ ।

ଓଡ଼ିଶା ସାମାଜିକ ବନ ପ୍ରକଳ୍ପରେ ଗ୍ରାମୀଣ ଦରିଦ୍ରମାନଙ୍କ ଥଇଥାନପାଇଁ କୃଷିଭିତ୍ତିକ ବୃକ୍ଷଚାଷକୁ ଏକ ମାଧ୍ୟମରୂପେ ଗ୍ରହଣ କରାଯାଇଛି । ଏହା ଏକ ଗ୍ରାମ ବିକାଶମୂଳକ ଯୋଜନା ଏବଂ ରାଜ୍ୟ ସରକାରଙ୍କଦ୍ୱାରା ପ୍ରଚଳିତ ERRP ଅର୍ଥାତ୍ 'ଗ୍ରାମ୍ୟ ଦରିଦ୍ରଙ୍କପାଇଁ ଅର୍ଥନୈତିକ ଥଇଥାନ' କାର୍ଯ୍ୟକ୍ରମର ଅନୁରୂପ ।

ଏହି ଯୋଜନାରେ ଯେଉଁ ଗ୍ରାମ ନିକଟରେ ଉଦ୍‌ବୃତ୍ତ ସରକାରୀ ପତିତ ଓ ଅନାବାଦୀ ଜମି ରହିଛି, ସେହି ଗ୍ରାମର ଭୂମିହୀନ ଗରିବ ଲୋକମାନଙ୍କୁ ଚିହ୍ନଟ କରାଯାଉଛି । ହିତାଧିକାରୀ ମାନଙ୍କୁ ଚିହ୍ନଟକଲାବେଳେ ସଂପୃକ୍ତ ବ୍ଲକ୍‌ର ଗୋଷ୍ଠୀ ଉନ୍ନୟନ ଅଧିକାରୀ ପ୍ରସ୍ତୁତକରିଥିବା ଦରିଦ୍ରତମ ପରିବାରଙ୍କ ତାଲିକାରୁ ଯେଉଁମାନେ ଅନ୍ୟ କୌଣସି ସରକାରୀ କାର୍ଯ୍ୟକ୍ରମରେ ସହାୟତା ପାଉନାହାନ୍ତି; ସେମାନଙ୍କୁ ଅଗ୍ରାଧିକାର ଦିଆଯାଏ । ଏହା ପରେ ଗ୍ରାମବାସୀମାନଙ୍କ ସହିତ ପରାମର୍ଶ କରି ଏବଂ ଗ୍ରାମ ବନ କମିଟିର ଅନୁମୋଦନକ୍ରମେ ହିତାଧିକାରୀ ପରିବାର ପିଛା ଅଧ ହେକ୍ଟର (୧.୫୦ ଏକର) ସରକାରୀ ପତିତ ଜମି ଯୋଗାଇଦିଆଯାଏ । ଏହି ଜମିରେ ବୃକ୍ଷଚାଷ କରିବାକୁ ପ୍ରକଳ୍ପ ତରଫରୁ ଉପଭୋକ୍ତାମାନଙ୍କୁ ଗଛ ଚାରା, ଚାଷପାଇଁ ବିହନ, ଖତ, ସାର, କୀଟନାଶକ ଔଷଧ, ଜମି ହଳକରିବା, ଗାତଖୋଳିବା, ଗଛଲଗାଇବା

ଓ କୋଡ଼ା ଖୁସା କରିବାପାଇଁ ଆର୍ଥିକ ସାହାଯ୍ୟ ଦିଆଯାଇଥାଏ । ଜମିଟି ଗଡ଼ାଣିଆ ବା ପାହାଡ଼ ଢାଲୁରେ ଥିଲେ, ସୋପାନ ତିଆରିକରିବା (Terracing) ଓ ହିଡ଼ବାନ୍ଧିବାପାଇଁ ମଧ୍ୟ ଆର୍ଥିକ ସାହାଯ୍ୟ ମିଳିଥାଏ । ତାରା ଗଛଗୁଡ଼ିକ ବଢ଼ିବା ପର୍ଯ୍ୟନ୍ତ ଅର୍ଥାତ୍ ପ୍ରଥମ ଦୁଇ ତିନିବର୍ଷ କୃଷି ଏବଂ ବୃକ୍ଷରୋପଣପାଇଁ ଯାବତୀୟ ଖର୍ଚ୍ଚ ପ୍ରକଳ୍ପ ବହନ କରିଥାଏ । ଜମିରେ କାମ କରିବାପାଇଁ ହିତାଧିକାରୀ ଓ ତା'ର ପରିବାରର ଲୋକମାନଙ୍କୁ ଅଗ୍ରାଧିକାର ମିଳିଥାଏ । କିନ୍ତୁ ନିଜ ଜମିରେ କାମ କଲେ ମଧ୍ୟ ଉପଭୋକ୍ତା ବା ତା' ପରିବାରର ଲୋକମାନେ ଉପଯୁକ୍ତ ଦୈନିକ ମଜୁରି ପାଉଥା'ନ୍ତି ।

କୃଷି ଓ ବୃକ୍ଷ ଚାଷ ନିମନ୍ତେ, ସାମାଜିକ ବନ ପ୍ରକଳ୍ପ ତରଫରୁ ଜଣେ ହିତାଧିକାରୀଙ୍କୁ ଯେଉଁ ପରିମାଣର ଆର୍ଥିକ ସହାୟତା ମିଳିଥାଏ, ତାହା ହେଲା—

| | କୃଷି ପାଇଁ ଆର୍ଥିକ ସହାୟତା | ବୃକ୍ଷରୋପଣପାଇଁ ବ୍ୟୟ ବରାଦ | ମୋଟ ଅନୁଦାନ |
|---|---|---|---|
| ପ୍ରଥମ ବର୍ଷ | ୧୨୦୦ ଟଙ୍କା | ୨୨୧୫ ଟଙ୍କା | ୩୪୧୫ ଟଙ୍କା |
| ଦ୍ୱିତୀୟ ବର୍ଷ | ୫୫୦ ଟଙ୍କା | ୬୧୦ ଟଙ୍କା | ୧୧୬୦ ଟଙ୍କା |
| ତୃତୀୟ ବର୍ଷ | ୨୨୫ ଟଙ୍କା | ୨୦୦ ଟଙ୍କା | ୪୨୫ ଟଙ୍କା |
| | | ମୋଟ ୩ ବର୍ଷରେ | ୫୦୦୦ ଟଙ୍କା (ପାଞ୍ଚହଜାର ଟଙ୍କା) |

ଏହା ଏକ ସମନ୍ୱିତ ଚାଷପ୍ରଣାଳୀ । ଏଥିରେ ସେହି ଗୋଟିଏ ଜମିରେ ବୃକ୍ଷରୋପଣ କରାଯାଏ ଏବଂ ଚାଷ ମଧ୍ୟ କରାଯାଏ । ଏଥିପାଇଁ ଚାରିମିଟର ବ୍ୟବଧାନରେ ଦୁଇଧାଡ଼ି ଗଛ ଲଗାଯାଏ । ଏହି ଦୁଇଧାଡ଼ି ଗଛ ମଧ୍ୟରେ ବ୍ୟବଧାନ ୧ ମିଟର । ସେହିପରି ଧାଡ଼ିରେ ଗୋଟିଏ ଗଛରୁ ଅନ୍ୟ ଗଛର ଦୂରତା ମଧ୍ୟ ୧ ମିଟର । ଏହି ଭାବରେ ହେକ୍ଟରପିଛା ୪୦୦୦ ଗଛ ଲଗାଯାଇଥାଏ । ପ୍ରତି ହିତାଧିକାରୀଙ୍କୁ ଅଧହେକ୍ଟର ଜମି ମିଳୁଥିବାରୁ, ସେଥିରେ ୨୦୦୦ ଚାରା ଗଛ ଲାଗିଥାଏ । ଦୁଇଧାଡ଼ି ଗଛ ମଝିରେ ଯେଉଁ ଚାରିମିଟର ବ୍ୟବଧାନ ରହିଲା, ସେଥିରେ କୃଷି ବା ଫସଲ କରାଯାଏ । ଏଥିପାଇଁ ଗାତ ଖୋଳି ଗଛ ଲଗାଇବା ଆଗରୁ ଜମିକୁ ଭଲକରି ପ୍ରକଳ୍ପ ଜରିଆରେ ହଳକରାଯାଏ । ପ୍ରଥମ ଦୁଇବର୍ଷ ଜମି ଅନୁସାରେ ଧାନ, ମାଣ୍ଡିଆ, ବିରି, ମୁଗ, ହରଡ଼, ମକା, ରାଶି ଓ ଚିନାବାଦାମ ଆଦି ଫସଲ ଲଗାଯାଇପାରେ । ଯେଉଁଠି ପାଣି ମଡ଼େଇବାର ଥାଏ, ସେଠି ଶୀତଦିନିଆ ପନିପରିବା ମଧ୍ୟ ଚାଷକରାଯାଏ । ତୃତୀୟ ବର୍ଷ ବେଳକୁ ଚାରାଗଛଗୁଡ଼ିକ ବଡ଼ ହୋଇଯାଇଥାଏ ଓ ଗଛ ଛାଇରେ କୃଷି ଭଲ ହୋଇପାରେନାହିଁ । ସେଥିପାଇଁ ଛାଇରେ ବଢ଼ିପାରୁଥିବା ଗଛ; ଯଥା— ହଳଦୀ, ଅଦା, ଦେଶୀଆଳୁ, ଟାପିଓକା, ସପୁରି ଓ କାକଡ଼ ଆଦି ଅର୍ଥକରୀ ଫସଲ କରାଯାଇପାରେ । କୃଷିପାଇଁ ଖତ, ବିହନ, ସାର ଓ ମଜୁରି ବାବଦକୁ ସମସ୍ତ ଆନୁଷଙ୍ଗିକ ଖର୍ଚ୍ଚ ପ୍ରକଳ୍ପ ବହନ କରୁଥିଲେ ମଧ୍ୟ, ଉପଭୋକ୍ତା ଉତ୍ପାଦିତ ଫସଲ ସଂପୂର୍ଣ୍ଣ ଉପଭୋଗ କରିବ । ପ୍ରଥମ ଦୁଇବର୍ଷ ବାର୍ଷିକ ଫସଲ ଅମଳରୁ ସେ ପ୍ରାୟ

୧୦୦୦ରୁ ୧୫୦୦ ଟଙ୍କା ପାଇଥାଏ । ଏହାଛଡ଼ା ମଜୁରି ବାବଦରେ ମଧ୍ୟ ଉପଭୋକ୍ତା ଓ ତା'ର ପରିବାର ପ୍ରଥମବର୍ଷ ପ୍ରାୟ ୨୦୦୦ ଟଙ୍କା ଓ ଦ୍ୱିତୀୟବର୍ଷ ପ୍ରାୟ ୧୦୦୦ ଟଙ୍କା ପାଇଥା'ନ୍ତି । ଲଗାଯାଇଥିବା ଗଛଗୁଡ଼ିକ ୮, ୧୦ ବର୍ଷ ପରେ ଅମଳକ୍ଷମ ହୋଇଥାଏ । ଅମଳ ହେଲା ପରେ ଏହି ଗଛଗୁଡ଼ିକୁ ବିକ୍ରୟ କରି ହିତାଧିକାରୀ ପରିବାର ଅନ୍ତତଃପକ୍ଷେ ୨୦,୦୦୦ ଟଙ୍କା ରୋଜଗାର କରିବାର ସଂଭାବନା ରହିଛି । ଚତୁର୍ଥବର୍ଷଠାରୁ ଅଷ୍ଟମବର୍ଷ ଭିତରେ, ଯେଉଁଠି ଗଛଗୁଡ଼ିକ ଗହଳିଆ ହୋଇ ବଢ଼ିଯାଏ, ସେଠି ମଝିରୁ କିଛି ଗଛ କାଟି (ଏହାକୁ ପାତଳୀକରଣ କୁହାଯାଏ) ବାଡ଼, ତରୁଆ ବା ମେଢ଼ାପାଇଁ ବିକ୍ରୟ କରାଯାଇପାରେ ।

ଯେଉଁ ଗଛଗୁଡ଼ିକ ଶୀଘ୍ର ଶୀଘ୍ର ବଢ଼େ ଓ ସଳଖରେ ଡେଙ୍ଗା ହୋଇ ବଢ଼େ । ସେପରି ଗଛ ଲଗାଯିବାପାଇଁ ବଛାଯାଇଥାଏ । ଡାଳଝିଆ ହୋଇ ବଢୁଥିବା ଗଛକୁ ପ୍ରାୟତଃ ଲଗାଯାଏନାହିଁ । କାରଣ ଏହାର ଛାଇରେ ଫସଲ ଉଧେଇପାରେନାହିଁ । ଏହି କୃଷିଭିତ୍ତିକ ବୃକ୍ଷଚାଷ ପଦ୍ଧତିରେ ଗଛରୁ ଫସଲକୁ ଉପକାରମିଳେ ଓ ସେହିପରି ଫସଲ କରିବାଦ୍ୱାରା ଗଛ ମଧ୍ୟ କିଛି ଉପକାର ପାଇଥାଏ । ଫସଲରେ ସାର ଦେଲେ ଗଛ ତାହା ପାଇଥାଏ । ଚାଷପାଇଁ କୋଡ଼ା ଖୁସା କରିବା ଦ୍ୱାରା ମାଟି ହାଲ୍‌କା ହେବା ଫଳରେ ଗଛର ଚେର ମାଟିର ତଳ ସ୍ତରକୁ ଭେଦକରିପାରେ । ଉପଭୋକ୍ତା ଫସଲକୁ ଜଗାରଖା କରିବାଦ୍ୱାରା ପ୍ରକାରାନ୍ତରେ ଚାରା ଗଛର ରକ୍ଷଣାବେକ୍ଷଣ ମଧ୍ୟ କରିଥାଏ ।

ସେହିପରି ଲଗାଯାଇଥିବା ଗଛଗୁଡ଼ିକର ପତ୍ର ଝଡ଼ି ମାଟିର ଉର୍ବରତା ବୃଦ୍ଧିପାଏ । କେତେକଜାତୀୟ ବୃକ୍ଷ ମାଇକୋରାଇଜା ସଂଯୋଗ କରି ବା ଯବକ୍ଷାରଜାନ ପ୍ରସ୍ତୁତ କରି ମାଟିର ଜୈବିକଶକ୍ତି ବଢ଼ାଇଥା'ନ୍ତି । ଏହାଛଡ଼ା ଧାଡ଼ି ଧାଡ଼ି ହୋଇ ଲଗାଯାଇଥିବା ଗଛ ମୃତ୍ତିକାକ୍ଷୟ ରୋକିବାରେ ଏବଂ ମାଟିର ଜଳଧାରଣଶକ୍ତି ବୃଦ୍ଧି କରିବାରେ ସହାୟକ ହୋଇଥା'ନ୍ତି । ସାଧାରଣତଃ ବର୍ଷା ଛାଡ଼ିଲା ପରେ ଢିପଜମିରୁ ପାଣି ନିଗିଡ଼ିଯାଏ ଓ ମାଟି ଅଳ୍ପ ସମୟ ପରେ ଶୁଖିଲାହୋଇଯାଏ । କିନ୍ତୁ ଏହି ବୃକ୍ଷ ଚାଷ ପଦ୍ଧତିରେ ମଝିରେ ଧାଡ଼ି ଧାଡ଼ି ଗଛଥିବାରୁ ଗଛର ଚେରଗୁଡ଼ିକ ବର୍ଷାଜଳକୁ ମାଟିତଳେ ଧାରଣ କରି ରଖେ; ଗଛର ଛାୟା ମଧ୍ୟ ମାଟିକୁ ଥଣ୍ଡା ରଖିବାରେ ସାହାଯ୍ୟ କରେ । ମାଟିତଳେ ସଂଚିତ ବର୍ଷାଜଳକୁ ସହଜରେ ବାଷ୍ପୀକରଣ ହେବାକୁ ଦିଏନାହିଁ । ଫଳରେ ମରୁଡ଼ି ପରିସ୍ଥିତିକୁ କିଛିଟା ଏଡ଼ାଯାଇପାରେ ଏବଂ ଚାଷୀର ଫସଲ ସଂପୂର୍ଣ୍ଣ ନଷ୍ଟ ହୋଇଯିବାର ଭୟ ରହେନାହିଁ ।

ସାମାଜିକ ବନୀକରଣ ଯୋଜନାର ଦ୍ୱିତୀୟ ପର୍ଯ୍ୟାୟରେ ଏହି ବୃକ୍ଷ ଚାଷ ପଦ୍ଧତିରେ ପୋଡୁଚାଷୀମାନଙ୍କୁ ଥଇଥାନ କରାଯିବାର ଲକ୍ଷ୍ୟ ରଖାଯାଇଛି । କୋରାପୁଟ, କଳାହାଣ୍ଡି, ମୟୂରଭଞ୍ଜ, କେନ୍ଦୁଝର, ସମ୍ବଲପୁର ଓ ସୁନ୍ଦରଗଡ଼ ଆଦି ଛଅଗୋଟି ଜିଲ୍ଲାରେ ଏହି କାର୍ଯ୍ୟକ୍ରମ ହାତକୁ ନିଆଯିବ । ପୋଡୁଚାଷ ଆଦିବାସୀମାନଙ୍କର ଏକ ସାଂସ୍କୃତିକ ପରମ୍ପରା । ଏହି କାରଣରୁ କୃଷିଭିତ୍ତିକ ବୃକ୍ଷ ଚାଷ ପ୍ରଣାଳୀରେ ପୋଡୁଚାଷୀଙ୍କୁ ଥଇଥାନ କରାଗଲେ, ସେମାନଙ୍କର ପରମ୍ପରା ଅକ୍ଷୁଣ୍ଣ ରହିବ ଓ ସେମାନଙ୍କର ନୈତିକ ମୂଲ୍ୟବୋଧ ଓ ଭାବପ୍ରବଣତା ମଧ୍ୟ ବ୍ୟାହତ ହେବନାହିଁ ।

ଏଥିରେ ଗୋଟିଏ ଗୋଟିଏ ଆଦିବାସୀ ଗାଁରୁ ସବୁ ଭୂମିହୀନ ପରିବାରଙ୍କୁ ଉପଭୋକ୍ତା ଭାବରେ ଗ୍ରହଣ କରାଯିବ ଏବଂ ପ୍ରତ୍ୟେକ ପରିବାରକୁ ଅଧହେକ୍ଟର ଜମି ଦିଆଯିବ । ଯୋଗାଇ ଦିଆଯାଇଥିବା ଜମିରେ ବୃକ୍ଷରୋପଣ ଏବଂ କୃଷିକରିବାପାଇଁ ଆବଶ୍ୟକୀୟ ଆର୍ଥିକ ସାହାଯ୍ୟ ଓ ବୈଷୟିକ ସହାୟତା ମଧ୍ୟ ଯୋଗାଇଦିଆଯିବ । ଗୋଟିଏ ଗାଁପାଇଁ ଜଣେ ଗ୍ରାମ୍ୟ ବନ ସେବକ ରହି ଏହି କାର୍ଯ୍ୟ ତଦାରଖ କରିବେ । ଜମିରୁ ମିଳୁଥିବା ଫସଲ ସେମାନେ ପାଇବେ ଏବଂ ଗଛ ଉପରେ ଫଳଭୋଗ ସ୍ୱତ୍ୱ ପାଇବେ । କିନ୍ତୁ ଜମିକୁ ବିକ୍ରି କରିପାରିବେନାହିଁ । ଫଳତଃ ଏକାଧାରରେ ସେମାନେ ଜମିଟିରୁ ନିଜପାଇଁ ଖାଦ୍ୟ, ଗାଈଗୋରୁଙ୍କପାଇଁ ଚାରଣ, ଜାଳେଣିକାଠ ଓ ଘରତିଆରିପାଇଁ ଛୋଟକାଠ ପାଇପାରିବେ । ଏହି ସମନ୍ୱିତ ଚାଷ ଓ ବୃକ୍ଷରୋପଣ ପଦ୍ଧତି ସେମାନଙ୍କୁ ଏକ ସ୍ଥାୟୀ ଆୟର ପନ୍ଥା ଯୋଗାଇଦେବ । ଆସନ୍ତା ପାଞ୍ଚବର୍ଷରେ କେବଳ ଏହି ଉପାୟରେ ୭୫୦୦ ଆଦିବାସୀ ପରିବାର ଉପକୃତ ହୋଇପାରିବେ ବୋଲି ଲକ୍ଷ୍ୟ ରଖାଯାଇଛି । ଏହାଛଡ଼ା ୧୨,୫୦୦ ଦରିଦ୍ରତମ ପରିବାରଙ୍କୁ ମଧ୍ୟ କୃଷିଭିତ୍ତିକ ବୃକ୍ଷ ଚାଷ ବା ସଘନ ବୃକ୍ଷ ଚାଷ ଜରିଆରେ ଥାଇଥାନ କରାଯିବ ।

□□□

# ଜଙ୍ଗଲ ବଂଚିଲେ ଆମେ ବଂଚିବା

ମଣିଷ ବଂଚିରହିବାପାଇଁ ତିନୋଟି ମୌଳିକ ଜିନିଷର ଆବଶ୍ୟକତା ରହିଛି । ସେଗୁଡ଼ିକ ହେଲା– ନିଃଶ୍ୱାସ ନେବାପାଇଁ ପବନ ବା ବିଶୁଦ୍ଧ ଅମ୍ଳଜାନ, ତୃଷା ନିବାରଣପାଇଁ ଜଳ ଏବଂ କ୍ଷୁଧା ନିବାରଣପାଇଁ ଖାଦ୍ୟ ବା ଆହାର । ଏହି ତିନୋଟି ମୌଳିକ ଆବଶ୍ୟକତା; ଯଥା– ପାଣି, ପବନ ଓ ଖାଦ୍ୟ ପ୍ରାଣୀଜଗତକୁ ପ୍ରକାରାନ୍ତରେ ବୃକ୍ଷଜଗତ ବା ଉଦ୍ଭିଦସଂପଦଠାରୁ ମିଳିଥାଏ ।

ମନୁଷ୍ୟ ସମେତ ସମସ୍ତ ଜୀବଜଗତ ବାୟୁମଣ୍ଡଳରେ ଥିବା ଅମ୍ଳଜାନଯୋଗୁହିଁ ବଂଚି ରହିଛି । ପ୍ରାଣୀମାନେ ନିଃଶ୍ୱାସରେ ବିଶୁଦ୍ଧ ଅମ୍ଳଜାନ ଗ୍ରହଣ କରିଥା'ନ୍ତି ଏବଂ ପ୍ରଶ୍ୱାସରେ ଦୂଷିତ ଅଙ୍ଗାରକାମ୍ଳ ତ୍ୟାଗ କରିଥା'ନ୍ତି । କେବଳ ଯଦି ଏହି ପ୍ରକ୍ରିୟା ଏକକଭାବେ ଚାଲୁରହିଥା'ନ୍ତା ତେବେ ବାୟୁମଣ୍ଡଳରୁ ଅମ୍ଳଜାନ ସଂପୂର୍ଣ୍ଣ ଶେଷହୋଇ ଅଙ୍ଗାରକାମ୍ଳ ବାଷ୍ପ ଭରିଯାଆନ୍ତା । କିଂତୁ ଜଙ୍ଗଲ ଓ ବୃକ୍ଷଜଗତ ଏପରି ହେବାକୁ ଦିଅନ୍ତିନାହିଁ । ସେମାନେ ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ବାଷ୍ପ ଗ୍ରହଣକରି ସୂର୍ଯ୍ୟକିରଣ ସାହାଯ୍ୟରେ ନିଜନିଜର ପତ୍ରଦ୍ୱାରା ଖାଦ୍ୟ ପ୍ରସ୍ତୁତକରନ୍ତି ଓ ବଦଳରେ ଅମ୍ଳଜାନ ତ୍ୟାଗକରନ୍ତି । ସମସ୍ତ ପ୍ରାଣୀଗତ ବୃକ୍ଷଠାରୁ ମିଳୁଥିବା ଏହି ଅମ୍ଳଜାନ ଗ୍ରହଣ କରି ତିଷ୍ଠିରହିଛି । ଗୋଟିଏ ବଡ଼ ଓସ୍ତ ଗଛ ଦିନକୁ ପ୍ରାୟ ୧୨୦୦ ପାଉଣ୍ଡ ଅମ୍ଳଜାନ ଦେଇଥାଏ । ସେହିପରି ଗୋଟିଏ ଏକର ଜଙ୍ଗଲ ବର୍ଷକୁ ୩ ଟନ୍ ଅଙ୍ଗାରକାମ୍ଳ ଗ୍ରହଣ କରିନିଏ ଓ ପରିବର୍ତ୍ତେ ୨ ଟନ୍ ବିଶୁଦ୍ଧ ଅମ୍ଳଜାନ ବାୟୁମଣ୍ଡଳକୁ ଛାଡ଼ିଥାଏ । ଅମ୍ଳଜାନଯୁକ୍ତ ବାୟୁମଣ୍ଡଳ ଥରେ ଦୂଷିତ ହୋଇଗଲେ, ତା'ର କୁପ୍ରଭାବ ପାରିପାର୍ଶ୍ୱିକ ପରିବେଶ ଉପରେ ପଡ଼ିଥାଏ । ଜୀବଜଗତ ଓ ଉଦ୍ଭିଦଜଗତ ଭିତରେ ଥିବା ଭାରସାମ୍ୟ ନଷ୍ଟହୋଇ ସୃଷ୍ଟି ଧ୍ୱଂସମୁଖକୁ ଗଣି ହୋଇଯାଏ ।

ବୈଜ୍ଞାନିକମାନଙ୍କ ମତରେ, ପୃଥିବୀର ସବୁଜ ଶ୍ୟାମଳିମାପାଇଁ ତା ଉପରେ ଜୀବଜଗତ ତିଷ୍ଠିରହିଛି । ଅନ୍ୟ କୌଣସି ଗ୍ରହଜଗତରେ ଜୀବନର ସଂଧାନ ଏପର୍ଯ୍ୟନ୍ତ ମିଳିନାହିଁ । କିନ୍ତୁ ସଭ୍ୟତାର ଅଗ୍ରଗତି ସହିତ ତାଳଦେଇ ଜଙ୍ଗଲସମ୍ପଦ ନଷ୍ଟହେବାରେ ଲାଗିଛି । ଭାରତରେ ବର୍ଷକୁ ୧୩ ଲକ୍ଷରୁ ୧୫ ଲକ୍ଷ ହେକ୍ଟର ଜଙ୍ଗଲ ନଷ୍ଟହେଉଛି । ଆମ ରାଜ୍ୟରେ ମଧ ବର୍ଷକୁ ପ୍ରାୟ ୧ ଲକ୍ଷ ହେକ୍ଟର ଜଙ୍ଗଲସମ୍ପଦ ଧ୍ୱଂସପାଇଯାଉଛି । କିନ୍ତୁ ଅନ୍ୟପକ୍ଷରେ ଦେଶରେ କଳକାରଖାନା ବଢ଼ିଚାଲିଛି । ସହର, ବଜାର, ଯାନବାହନ ଓ ଗାଡ଼ିମଟର ସଂଖ୍ୟା ବୃଦ୍ଧିପାଉଛି । କଳକାରଖାନାରୁ ନିର୍ଗତ ବିଷାକ୍ତ ବାଷ୍ପ, ଗାଡ଼ିମଟରରୁ ବାହାରୁଥିବା ଦୂଷିତ ଅଙ୍ଗାରକାମ୍ଳ ପରିବେଶକୁ ଅନବରତ ବିଷାକ୍ତ କରିବାରେ ଲାଗିଛି । ଆମେ ଓ ଆମର ପିଲାମାନେ ପ୍ରତିମୁହୂର୍ତ୍ତରେ ଅଳ୍ପ ଅଳ୍ପ କରି ବିଷାକ୍ତ ବାୟୁ ବା ବିଷ ସେବନ କରିଚାଲିଛେ । ଏହାଫଳରେ ଅଧିକରୁ ଅଧିକ ଲୋକ ଶ୍ୱାସରୋଗ, ହୃଦ୍‌ରୋଗ, ଯକ୍ଷ୍ମା ଓ କ୍ୟାନସର୍ ଆଦିରେ ଆକ୍ରାନ୍ତ

ହୋଇ ପ୍ରାଣହରା ଉଛନ୍ତି । ଜନ୍ମିତ ଶିଶୁ ଉପରେ ମଧ୍ୟ ମାଆ ଗ୍ରହଣକରୁଥିବା ବିଷାକ୍ତ ବାଷ୍ପର କୁପ୍ରଭାବ ପଡ଼ୁଛି । ଶିଳ୍ପାଞ୍ଚଳ ଓ ସହରାଞ୍ଚଳ ଚାରିପଟେ ସବୁଜ ବଳୟ ତଥା ସବୁଜ ପ୍ରାଚୀର ସୃଷ୍ଟି କରିଲେ ଓ ରାସ୍ତାକଡ଼ରେ ଅଧିକରୁ ଅଧିକ ବୃକ୍ଷରୋପଣ କଲେ, ଏହି ପରିସ୍ଥିତିକୁ ଏଡାଯାଇପାରିବ । ପରୀକ୍ଷା କରି ଦେଖାଯାଇଛି, ଗୋଟିଏ ଛୋଟ ମୋଟରଗାଡ଼ି ୧ ମାଇଲ ଚାଲିଲେ ଯେତିକି ଅମ୍ଳଜାନ ବ୍ୟବହାର କରେ, ତାହା ଜଣେଲୋକର ଶ୍ୱାସକ୍ରିୟାପାଇଁ ଯଥେଷ୍ଟ । କିନ୍ତୁ ଗୋଟିଏ ବଡ଼ ଗଛରୁ ବାହାରୁଥିବା ଅମ୍ଳଜାନ କାର୍‌ର ଅମ୍ଳଜାନ ବ୍ୟବହାର ସହିତ ସମାନ । ଅର୍ଥାତ୍ ଗୋଟିଏ ବଡ଼ ଗଛରୁ ମିଳୁଥିବା ଅମ୍ଳଜାନ ଅନେକଲୋକଙ୍କର ଶ୍ୱାସକ୍ରିୟାରେ ସହାୟକ ହୋଇଥାଏ । ଏହାଛଡ଼ା ଗଛର ପତ୍ର, ଫୁସ୍‌ଫୁସ୍ ପରି ବାୟୁମଣ୍ଡଳରୁ ଧୂଳିକଣା, ବିଷାକ୍ତ ପାଉଁଶ ଓ ରାସାୟନିକ ଗୁଣ୍ଡି ଛାଣି ପରିଷ୍କାର କରିଥାଏ । ଯଦି ବ୍ୟାପକ ଭାବରେ ବୃକ୍ଷରୋପଣ କରା ନ ଯାଏ, ତେବେ ଦିନ ଆସିବ, ଆମ ପିଲାମାନଙ୍କୁ ଅମ୍ଳଜାନ ମୁଖାପିନ୍ଧି ସ୍କୁଲକୁ ଯିବାକୁ ପଡ଼ିପାରେ ।

ବଂଚିରହିବାପାଇଁ ଅନ୍ୟ ଏକ ମୌଳିକ ଆବଶ୍ୟକତା– ଜଳ । ସେଥିପାଇଁ କୁହାଯାଏ, 'ଜଳହିଁ ଜୀବନ' । ସମୁଦ୍ର ଜଳର ଭଣ୍ଡାର ହୋଇଥିଲେ ମଧ୍ୟ, ତାହା ଜୀବଜଗତର ତୃଷା ନିବାରଣପାଇଁ ସମର୍ଥନୁହେଁ । ତେଣୁ ଜୀବନଧାରଣପାଇଁ ଜଳର ମୂଳ ଉତ୍ସ ହେଉଛି ବୃଷ୍ଟିଜଳ ବା ବର୍ଷାଜଳ ବା ବର୍ଷାରୁ ମିଳୁଥିବା ଜଳ; ଯାହାକି ନଦୀ, ନାଳ, ଝରଣା, କୂଅ, ପୋଖରୀ ଜଳ ରୂପେ ଆମକୁ ବର୍ଷସାରା ବ୍ୟବହାର କରିବାପାଇଁ ମିଳିଥାଏ । ବର୍ଷାକରେଇବା ରେ ଜଙ୍ଗଲର ନିର୍ଦ୍ଦିଷ୍ଟ ଅବଦାନ ରହିଛି । ଜଙ୍ଗଲ ଉପରିସ୍ଥ ବାୟୁମଣ୍ଡଳର ଆର୍ଦ୍ରତା ମେଘକୁ ଘନୀଭୂତ କରାଇଥାଏ । ଫଳରେ ବର୍ଷା ସଂଭବହୁଏ । ଜଙ୍ଗଲ ଯେପରି ବର୍ଷାକରେଇବା ରେ ସହାୟକ ହୋଇଥାଏ, ସେହିପରି ବର୍ଷାକୁ ମଧ୍ୟ ନିୟନ୍ତ୍ରିତ କରିଥାଏ । ଓଡ଼ିଶାରେ ଗତ ପଚାଶବର୍ଷର ତାପମାତ୍ରା ଓ ଆର୍ଦ୍ରତା ସଂପର୍କରେ ନିକଟରେ ଅନୁଶୀଳନ କରା ଯାଇଥିଲା । ଏଥିରୁ ଜଣାପଡ଼ିଛି, ୧୯୫୦ ମସିହା ପରଠାରୁ ବାର୍ଷିକ ବୃଷ୍ଟିପାତର ପରିମାଣ କମିବାରେ ଲାଗିଛି ଏବଂ ବର୍ଷାଦିନର ସଂଖ୍ୟା ମଧ୍ୟ ବର୍ଷକୁବର୍ଷ କମିଯାଉଛି । ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି–

''ଜଳ ବହୁଳେ ସୃଷ୍ଟି ନାଶ,
ଜଳ ବିହୁନେ ସୃଷ୍ଟି ନାଶ ।''

ବର୍ଷା କମିଯିବାରୁ ମରୁଡ଼ିର ପ୍ରକୋପ କ୍ରମାଗତ ଭାବରେ ବୃଦ୍ଧିପାଇବାରେଲାଗିଛି । ସେହିପରି ପୂର୍ବୋକ୍ତ ବିଶ୍ଳେଷଣରୁ ଏକଥା ମଧ୍ୟ ଲକ୍ଷ୍ୟକରାଯାଇଛି; ପ୍ରତି ତିନିବର୍ଷ ଅନ୍ତରରେ ରାଜ୍ୟରେ ବନ୍ୟା ଦାଉସାଧୁଛି । ଏହାର କାରଣ ହେଉଛି ନଦୀର ଉପରମୁଣ୍ଡରୁ ଜଙ୍ଗଲ କଟିଯିବା ଫଳରେ, ସାମାନ୍ୟ ବର୍ଷାରେ ମଧ୍ୟ ମାଟି, ଗୋଡ଼ି, ପଥର ଧୋଇହୋଇ ଆସି ନଦୀଗର୍ଭକୁ ପୋତିପକଉଛି । ଫଳରେ ଅଳ୍ପବର୍ଷାରେ ମଧ୍ୟ ନଈରୁ ପାଣି ଉଛୁଳି ନଈବଢ଼ି ହେଉଛି । ଜଙ୍ଗଲ ଥିବା ଅଂଚଳରେ ସମସ୍ତ ବର୍ଷାପାଣି ନଈ ବା ସମୁଦ୍ରକୁ ବୋହିଯାଏନାହିଁ । ଅଧିକାଂଶ ଭାଗ ବର୍ଷାଜଳ ଗଛର ଚେର ଜରିଆରେ ମାଟିତଳକୁ ଯାଇ ଭୂଗର୍ଭରେ ସଂଚିତହୋଇ ରହେ । ଏହି ଭୂତଳ ଜଳସଂପଦ କୂଅ, ପୋଖରୀ ଓ ଝରଣାର ଜଳରୂପେ ବର୍ଷସାରା ଆମକୁ ପାଣି ଯୋଗାଇଥାଏ । ଯେଉଁ ଅଂଚଳରେ ଜଙ୍ଗଲ କଟିଯାଇଛି ସେଠି ଖରାଦିନେ କୂଅ, ପୋଖରୀ,

ନାଳ ଶୁଖିଯାଉଛି । ଝରଣାରେ ଆଉ ଆଗଭଳି ଝରପଡୁନାହିଁ । ଦେଶର ୭୦ ଭାଗ ନଦୀ ନାଳର ଜଳ ଆଦି ଦୂଷିତ ହୋଇପଡ଼ିଛି । ତେଣୁ ଜଳସଂରକ୍ଷଣ ନିମନ୍ତେ ଜଳଚକ୍ର ଅବ୍ୟାହତ ରଖିବା ନିହାତି ଦରକାର; ଯାହାକି ପରୋକ୍ଷ ଭାବରେ ଜଙ୍ଗଲ ସଂରକ୍ଷଣ ଓ ବୃକ୍ଷରୋପଣ ଉପରେ ନିର୍ଭର କରେ ।

ପ୍ରାଣୀଜଗତପାଇଁ ଖାଦ୍ୟର ମୂଳ ଉତ୍ସ ଉଦ୍ଭିଦଜଗତ । ବୃକ୍ଷ ଲତା ମୌଳିକ ଉତ୍ପାଦନକାରୀ ହୋଇଥିବାରୁ, ସେହିମାନଙ୍କର କେବଳ ଖାଦ୍ୟ ପ୍ରସ୍ତୁତ କରିବାର କ୍ଷମତା ରହିଛି । ଗଛର ସବୁଜପତ୍ର ମାଟିରୁ ଜଳୀୟଅଂଶ, ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ଗ୍ରହଣ କରି ସୂର୍ଯ୍ୟକିରଣ ସାହାଯ୍ୟରେ ସର୍କରାଜାତୀୟ ଖାଦ୍ୟ ପ୍ରସ୍ତୁତ କରିଥାଏ । ଏହି ଖାଦ୍ୟ ଧାନ, ଗହମ, ବାଜରା, ଫଳମୂଳ ଓ ପନିପରିବା ରୂପରେ ମଣିଷ ସମାଜକୁ ମିଳିଥାଏ ।

ପ୍ରଥମେ ପ୍ରଥମେ ଜଙ୍ଗଲ ଓ କୃଷି ପରସ୍ପରର ଶତ୍ରୁରୂପେ ବିବେଚିତ ହେଉଥିଲେ । ଅର୍ଥାତ୍ ଦେଶର କ୍ରମବର୍ଦ୍ଧିଷ୍ଣୁ ଜନତାକୁ ଖାଦ୍ୟ ଯୋଗାଇବା ନିମନ୍ତେ କୃଷିର ସଂପ୍ରସାରଣ କରିବାକୁ ହେଲେ, ଜଙ୍ଗଲକୁ କାଟି ଚାଷଜମିରେ ପରିଣତ କରିବାକୁପଡ଼ିବ । ଏହି ଭ୍ରାନ୍ତଧାରଣା ଅନେକଦିନ ଧରି ସମସ୍ତଙ୍କ ମନରେ ରହିଥିଲା । କିନ୍ତୁ ବର୍ତ୍ତମାନ ନିର୍ଦ୍ଦିଷ୍ଟ ଭାବରେ ପ୍ରମାଣିତ ହୋଇସାରିଛି; ଜଙ୍ଗଲ ଓ କୃଷି ପରସ୍ପରର ଶତ୍ରୁ ନୁହନ୍ତି ବରଂ ଜଙ୍ଗଲହିଁ କୃଷିର ଜନନୀ । କୃଷିପାଇଁ ମାଟିରୁ ଉର୍ବରତାକୁ ବଜାୟରଖିବା ଦିଗରେ ଗଛମାନଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ । ଗଛର ଚେରଗୁଡ଼ିକ ଜଗାପରି ଛନ୍ଦାଛନ୍ଦି ହୋଇ ମାଟିକୁ ଜାବୁଡ଼ିଧରିଥା'ନ୍ତି । ବୃକ୍ଷବିହୀନ ଅଂଚଳରେ ସାମାନ୍ୟ ବର୍ଷାରେ ମଧ ଉପରମାଟି ଧୋଇହୋଇଯାଏ । ଫଳରେ ମୃତ୍ତିକାକ୍ଷୟ ଘଟିଥାଏ । ପୃଥିବୀପୃଷ୍ଠରେ ଏକଇଞ୍ଚ ବହଳର ଉପରମାଟି ତିଆରି ହେବାକୁ ୧୦୦୦ ବର୍ଷ ସମୟ ଲାଗେ ବୋଲି ବୈଜ୍ଞାନିକମାନଙ୍କର ମତ । ଜଙ୍ଗଲ ନଷ୍ଟହୋଇଯିବା ଫଳରେ ଆମ ଦେଶରେ ୬୦,୦୦୦ ଲକ୍ଷ ଟନ୍ ଉପରମାଟି ପ୍ରତିବର୍ଷ ବର୍ଷାଋତୁରେ ଧୋଇଯାଉଛି । ଏଥିସହିତ ୬୦ ଲକ୍ଷ ଟନ୍ ଉର୍ବର ମାଟି ମଧ ଧୋଇଯାଉଛି । ଏହାଫଳରେ ବାର୍ଷିକ କୃଷି ଉତ୍ପାଦନ ଶତକଡ଼ା ୭ ଭାଗ ହ୍ରାସ ହେଉଛି ଏବଂ ୫୦ ଲକ୍ଷ ଟନ୍ ଖାଦ୍ୟଶସ୍ୟ ଉତ୍ପାଦନ କମିଯାଉଛି । ମୃତ୍ତିକାକ୍ଷୟଜନିତ ନଷ୍ଟ ହେଉଥିବା ମାଟିର ଉର୍ବରତାକୁ ଭରଣାକରିବାପାଇଁ ଆମେ କୋଟି କୋଟି ଟଙ୍କାର ରାସାୟନିକ ସାର ଓ କୀଟନାଶକ ଔଷଧ ଜମିରେ ପ୍ରୟୋଗ କରିଚାଲିଛେ । ଏହା ପରିବେଶକୁ ଅଧିକତର କଳୁଷିତ କରୁଛି । ମୃତ୍ତିକାକ୍ଷୟକୁ ପ୍ରତିହତ କରି ଜମିର ଉତ୍ପାଦିକା ଶକ୍ତି ବଢ଼ାଇବାକୁ ହେଲେ, ବଣ ଜଙ୍ଗଲର ସୁରକ୍ଷା ନିହାତି ଆବଶ୍ୟକ । ଯେଉଁଠି ଗଛନାହିଁ ସେଠି ଅଧିକ ବୃକ୍ଷରୋପଣ କରାଯିବା ଆବଶ୍ୟକ ।

ଜଙ୍ଗଲ ନଷ୍ଟହୋଇଯିବା ଫଳରେ ଅତୀତରେ କେତେ ସଭ୍ୟତା ଲୋପପାଇଯାଇଛି । କେତେ ସହର ମରୁଭୂମି ପାଲଟିଛି । ମହେଞ୍ଜୋଦାରୋ ଓ ମେସୋପଟାମିଆର ସଭ୍ୟତା ଏହାର ଉଦାହରଣ । ଜଙ୍ଗଲ ଧ୍ୱଂସପାଇଯିବାରୁ ଏକଦା ଶସ୍ୟଶ୍ୟାମଳା ଇଥିଓପିଆ ଦେଶ ଆଜି ମରୁଭୂମିର କରାଳ କବଳରେ କବଳିତ । ମାଟି, ପାଣି, ପବନ – ଜୀବନଧାରଣର ଏହି ତିନୋଟି

ମୌଳିକ ଉପାଦାନକୁ ସୁରକ୍ଷିତ ରଖିବାରେ ଗଛର ଅବଦାନ ଅସୀମ । ଏଥିପାଇଁ ହିମାଳୟର ଗଡ଼ୱାଲ ଅଞ୍ଚଳରେ ଜଙ୍ଗଲ କଟାଯିବା ପ୍ରତିବାଦରେ ଯେଉଁ 'ଚିପ୍‌କୋ' ଆନ୍ଦୋଳନର ସୂତ୍ରପାତ ହୋଇଥିଲା, ତା'ର ଆହ୍ୱାନ ଥିଲା –

''ଗଛ ଆମର ଜୀବନଧନ
ଦିଅଇ ମାଟି, ପାଣି, ପବନ ।''

ବୃକ୍ଷସଂପଦହିଁ ପୃଥିବୀପୃଷ୍ଠରେ ଜୀବନର ସଂକେତ । ବାୟୁମଣ୍ଡଳକୁ ବିଶୁଦ୍ଧ ଅମ୍ଳଜାନ ଦେବା ବ୍ୟତୀତ, ବାୟୁକୁ ଛାଣି ପରିଷ୍କାରକରିବା, ଶୁଷ୍କ ମେଘକୁ ଘନୀଭୂତ କରି ବର୍ଷା କରେଇବା, ମୃତ୍ତିକା ସଂରକ୍ଷଣ କରିବା, ପଶୁପକ୍ଷୀଙ୍କୁ ଆଶ୍ରୟଦେବା, ଫଳଛାୟା ପ୍ରଦାନ କରିବା ଆଦି ଯେଉଁ କେତୋଟି ମହନୀୟ ଅବଦାନ ବୃକ୍ଷର ରହିଛି, ତା'ର ଗୁଣାତ୍ମକ ମୂଲ୍ୟାୟନ କଲେ ଗୋଟିଏ ଗଛର ଦାମ୍ ହାରାହାରି ସତରଲକ୍ଷ ଟଙ୍କା ହୋଇପାରେ । ସଭ୍ୟତାର ପ୍ରାକ୍ କାଳରୁ ଜଙ୍ଗଲ ସହିତ ମଣିଷର ରହିଥିବା ନିବିଡ଼ ସଂପର୍କକୁ ଆଜିର ଯନ୍ତ୍ରମଣିଷ ଭୁଲିଯାଇଛି । ଜଙ୍ଗଲ ନିର୍ବିଚାରରେ କଟାଗାଲିଛି । ଦିନ ଆସିବ, ବୃକ୍ଷବିହୀନ ପୃଥିବୀରେ ଅଙ୍ଗାରକାମ୍ଳର ମାତ୍ରା ବଢ଼ିଯିବ ଓ ଫଳରେ ଭୂପୃଷ୍ଠର ତାପମାତ୍ରା ବୃଦ୍ଧିପାଇବ । ପୃଥିବୀର ତାପମାତ୍ରା ବୃଦ୍ଧିପାଇଲେ, ମେରୁ ଅଞ୍ଚଳର ବରଫପାହାଡ଼ ତରଳି, ବରଫ ପ୍ରଳୟ ଦେଖାଦେବାର ଆଶଙ୍କା ରହିଛି । ମାନବ ସମାଜପାଇଁ ବୈଜ୍ଞାନିକମାନଙ୍କର ଏହାହିଁ ଭବିଷ୍ୟତବାଣୀ ।

☐☐☐



ଶ୍ରୀ ବିଜୟ କେତନ ପଟ୍ଟନାୟକ ଭାରତୀୟ ବନସେବାର ଜଣେ ଉଚ୍ଚପଦସ୍ଥ ଅଧିକାରୀ ଓ ସଂପ୍ରତି ଓଡ଼ିଶା ବନଉନ୍ନୟନ ନିଗମର ନିର୍ଦ୍ଦେଶକ ଭାବେ ଅବସ୍ଥାପିତ । ୧୯୪୯ ମସିହାରେ ଖୋର୍ଦ୍ଧା ନିକଟସ୍ଥ ମୁକୁନ୍ଦପ୍ରସାଦ ଗ୍ରାମରେ ୰ ରଘୁନାଥ ପଟ୍ଟନାୟକ ଓ ଶ୍ରୀମତି ହାରାମଣି ପଟ୍ଟନାୟକଙ୍କର ଔରସରୁ, ଭାଦ୍ର ଶୁକ୍ଳ, ଜନ୍ମାଷ୍ଟମୀ ତିଥିରେ ଲେଖକଙ୍କର ଜନ୍ମ । ବାଣୀବିହାରରୁ ପଦାର୍ଥ ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ହାସଲ କଲାପରେ, କିଛିଦିନ ପାଇଁ ଖୋର୍ଦ୍ଧା ପ୍ରାଣନାଥ ମହାବିଦ୍ୟାଳୟରେ ଅଧ୍ୟାପନା କରନ୍ତି ଓ ପରେ ୧୯୭୫ ମସିହାରେ କୃତିତ୍ୱର ସହ ସଫଳ ହୋଇ ଭାରତୀୟ ବନସେବାରେ ଯୋଗଦିଅନ୍ତି । ପ୍ରଶାସନିକ ଦାୟିତ୍ୱର ଅର୍ଗଳି ଭିତରେ ରହି ମଧ, ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କ ସୃଷ୍ଟିର ସ୍ୱାକ୍ଷର ବିଦ୍ୟମାନ । ଯୁଗ୍ମଭାବେ ଲିଖିତ ଲେଖକଙ୍କର ଏକ କୃତି 'ଯନ୍ତପାତି' ଓଡ଼ିଶା ସରକାରଙ୍କର 'ଶିଶୁ ସାହିତ୍ୟ ସମିତି' ଦ୍ୱାରା ପୁରସ୍କୃତ । ଏତଦ୍‌ଭିନ୍ନ କବିତା ସଂକଳନ 'ଛାମୁଙ୍କ ଆଖି ଲୁହ', 'ପରିବେଶ ପରିକ୍ରମା' ଓ 'ଜଂଗଲ, ପରିବେଶ ଓ ମାନବ' ଆଦି ଜଙ୍ଗଲ ଓ ପରିବେଶ ସମ୍ବନ୍ଧୀୟ ପ୍ରବନ୍ଧ ସଂକଳନ ଏବଂ ଶିଶୁସାହିତ୍ୟ 'ଚାଲ ବଣକୁ ଯିବା', 'ଆସ ଗଛ ଲଗାଇବା' 'ଚାଉଳ ଅଛି ଜାଳ ନାହିଁ' ଓ 'ବୃକ୍ଷ ହିଁ ଜୀବନ' ଆଦି ପ୍ରୌଢ଼ସାହିତ୍ୟ ଲେଖକଙ୍କର ଅନ୍ୟତମ ସୃଷ୍ଟି । ସଫଳ ଶିକାରକାହାଣୀ ରଚୟିତା ଭାବରେ 'ଜୀବନରଙ୍ଗ' ରୌପ୍ୟଜୟନ୍ତୀ ଉତ୍ସବରେ ପୁରସ୍କୃତ ।